# ଗୁପ୍ତ ବୃନ୍ଦାବନ
# ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ ଧାମ

ପଣ୍ଡିତ ଶ୍ରୀ କିଶୋରୀ ମୋହନ କାବ୍ୟରତ୍ନ



# ସାଧୁବାଦ

'ଗୁପ୍ତ ବୃନ୍ଦାବନ' (ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ ଧାମ) ପୁସ୍ତକ ଗୋପବନ୍ଧୁ ସାହିତ୍ୟ ମନ୍ଦିରରୁ ଅଶେଷ ଗୁଣଗ୍ରାହୀ 'ସମାଜ' ସମ୍ପାଦକ ଡକ୍‌ଟର ରାଧାନାଥ ରଥ ମହୋଦୟଙ୍କର ସହୃଦୟତାରେ ପ୍ରକାଶିତ ହେଲା । ଶ୍ରୀ ଗୋପୀନାଥ ତାଙ୍କର ଆତ୍ମମଙ୍ଗଳ କରନ୍ତୁ । 'ସମାଜ' ପ୍ରେସର ମୁଦ୍ରଣକାରୀ ସହାୟକବୃନ୍ଦଙ୍କୁ କୃତଜ୍ଞତା ଜ୍ଞାପନ କରୁଅଛି ।

ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ ମନ୍ଦିର କର୍ତ୍ତୃପକ୍ଷଙ୍କ ପକ୍ଷରୁ
ବିନୀତ ପରିଚାଳକ :

**ଶ୍ରୀ ଶିଶିର କୁମାର ପାଣିଗ୍ରାହୀ**
(ରେମୁଣା)

# ଗୁପ୍ତବୃନ୍ଦାବନ

## ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ ଧାମ


ଶ୍ରୀ କିଶୋରୀ ମୋହନ,
କାବ୍ୟ ବ୍ୟାକରଣ ତୀର୍ଥ, କାବ୍ୟନିଧି, କାବ୍ୟରତ୍ନ ସମ୍ପାଦିତ

ଶ୍ରୀ ଯତିଶେଖର ଦାସ, ଭକ୍ତିଶାସ୍ତ୍ରୀ ଅନୂଦିତ


ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ ମନ୍ଦିର
ପରିଚାଳନା କର୍ତ୍ତୃପକ୍ଷ କର୍ତ୍ତୃକ ପରିବେଷିତ


ଶ୍ରୀ ଗୋପୀନାଥାବ୍ଦ-୯୦୪ ଇଂରାଜୀ-୧୯୮୭

ପ୍ରକାଶକ :
ଗୋପବନ୍ଧୁ ସାହିତ୍ୟ ମନ୍ଦିର,
ଗୋପବନ୍ଧୁ ଭବନ, କଟକ-୧

# ଗୁପ୍ତବୃନ୍ଦାବନ

( ଶ୍ରୀ ଶ୍ରୀ କ୍ଷୀରଚୋର ଗୋପୀନାଥ ଧାମ )

ସମ୍ପାଦନା :

**ଶ୍ରୀ କିଶୋରୀମୋହନ**

ଅନୁବାଦ .

**ଶ୍ରୀ ଯତିଶେଖର ଦାସ**

ପ୍ରକାଶକ

**ଗୋପବନ୍ଧୁ ସାହିତ୍ୟ ମନ୍ଦିର**

ଗୋପବନ୍ଧୁ ଭବନ, କଟକ-୭୫୩୦୦୧

ମୁଦ୍ରଣ

**ସତ୍ୟବାଦୀ ପ୍ରେସ**

ଗୋପବନ୍ଧୁ ଭବନ, କଟକ-୭୫୩୦୦୧

ମୂଲ୍ୟ :

**ପଚଶ ଟଙ୍କା**

**GUPTABRUNDABAN**

( The sacred place of
Khirochora Gopinath)

Compiled by :

**Sri KISHORI MOHON**

Translate :

Sri **JATISHEKHAR DAS**

Publisher :

**Gopabandhu Sahitya Mandir**
Cuttack-1

Printer :

**Satyabadi Press,**
Cuttack-1

Price :

**Rupees Twenty Five**

# ଅଭିବନ୍ଦନ

"ରମ ଶରଙ୍କିତ ଲଳିତ ମୂରତି ଯହିଁ ମୁରରି
ଏବେଛନ୍ତି ସପ୍ତସ୍ରୋତା ତୀରେ ଗୋପନେପଥ୍ୟଧାରୀ ।"

କବିବର ରାଧାନାଥ 'ଉଷା' କାବ୍ୟରେ ବାଲେଶ୍ୱର ସନ୍ନିକଟ ରେମୁଣାସ୍ଥିତ ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥଙ୍କର କମନୀୟ ମୋହନ ଶ୍ରୀମୂର୍ତ୍ତିଙ୍କର ବର୍ଣ୍ଣନ କରିଛନ୍ତି । ଇତିହାସରୁ ଜଣାଯାଏ ସପ୍ତମ ଶତାବ୍ଦୀର ମାଧବରାଜ ଏକ ଶିଳାଲେଖରେ ଚତୁର୍ଭୁଜ ମାଧବଙ୍କ ପୂଜା କଥା ଲେଖିଛନ୍ତି । ଓଡ଼ିଶାର ଅନେକ ସ୍ଥାନରେ ନୀଳମାଧବ, ସନ୍ତୋଷ ମାଧବ ଇତ୍ୟାଦି ପ୍ରସିଦ୍ଧ । ଶ୍ରୀବିରଜା କ୍ଷେତ୍ରରେ ଦ୍ୱାଦଶ ମାଧବ ପୂଜା ହେବାର କଥା 'ବିରଜା ମାହାତ୍ମ୍ୟ' ଗ୍ରନ୍ଥରୁ ଜଣାଯାଏ । ରେମୁଣାସ୍ଥିତ ଗୋପୀନାଥ ଦ୍ୱିଭୁଜ ମୁରଲୀଧାରୀ ଓ ସଖାସଖୀ ପରିବୃତ୍ତ ପ୍ରାଚୀନତମ ଶ୍ରୀମୂର୍ତ୍ତି । 'ରେମୁଣା' ଶବ୍ଦ ରମଣବିପିନରୁ ଅପଭ୍ରଂଶ ହେବା କଥା ଶ୍ରୀଭକ୍ତିବିନୋଦଠାକୁର ତାଙ୍କର ରଚିତ "ଶ୍ରୀଗୌରାଙ୍ଗ ଲୀଳା ସ୍ମରଣ ମଙ୍ଗଳସ୍ତୋତ୍ରମ୍"ରେ ପ୍ରକାଶ କରିଛନ୍ତି । ଐଶ୍ୱର୍ଯ୍ୟ ଚତୁର୍ଭୁଜ ମୂର୍ତ୍ତି ଠାରୁ ଦ୍ୱିଭୁଜ ଶ୍ରୀ ଗୋପୀନାଥ ମାଧୁର୍ଯ୍ୟ ମୂର୍ତ୍ତି ବୈଶିଷ୍ଟ୍ୟପୂର୍ଣ୍ଣ ।

ରେମୁଣାକୁ ଶ୍ରୀଚୈତନ୍ୟ ମହାପ୍ରଭୁ ଆଗମନ କଲାପରେ ଶ୍ରୀକ୍ଷୀରଚୋରା ଗୋପୀନାଥଙ୍କ ମହିମା ବିସ୍ତାରିତ ହେବାକୁ ଲାଗିଲା । 'ସମାଜ'ର ସାପ୍ତାହିକୀ ସାହିତ୍ୟ ଆଲୋଚନାରେ ଶ୍ରୀକ୍ଷୀରଚୋରା ଗୋପୀନାଥଙ୍କ ଇତିବୃତ୍ତ ତା୨୬।୬।୮୫ରେ ମନ୍ଦିର ଫଟୋସହ ଏ ଅଧମ ପ୍ରକାଶ କରି ସର୍ବସାଧାରଣଙ୍କୁ ଅବଗତ କରାଇଅଛି । ଏହି "ଗୁପ୍ତ ବୃନ୍ଦାବନ—ଶ୍ରୀକ୍ଷୀରଚୋରା ଗୋପୀନାଥ ଧାମ" ଗ୍ରନ୍ଥଟି ସମ୍ପାଦନ କରିଛନ୍ତି— ପଣ୍ଡିତ କିଶୋରୀ ମୋହନ କାବ୍ୟ ବ୍ୟାକରଣତୀର୍ଥ, କାବ୍ୟନିଧି, କାବ୍ୟରତ୍ନ ମହୋଦୟ । ସେ ଏହା ସଞ୍ଚୟନ କରିବାକୁ ଯାଇ ବହୁ ଗ୍ରନ୍ଥ ମନ୍ଥନ କରିଛନ୍ତି । ଗୋପୀନାଥ ମନ୍ଦିରର ପରିଚାଳକ ଶ୍ରୀ ଶିଶିର କୁମାର ପାଣିଗ୍ରାହୀଙ୍କ ଆଗ୍ରହରେ ଏ ଅଧମ ଏହି ଗ୍ରନ୍ଥର ବଙ୍ଗଳା ପାଣ୍ଡୁଲିପିକୁ ପରିମାର୍ଜନ କରି ଓଡ଼ିଆ ଅନୁବାଦ କଲା । ଏହି ଅନୁବାଦରେ ଶ୍ରୀ ଯତୀଶଚନ୍ଦ୍ର ରାୟ ଭକ୍ତିଶାସ୍ତ୍ରୀ ବିଶେଷ ସାହାଯ୍ୟ କରିଛନ୍ତି । ମନ୍ଦିର କର୍ତ୍ତୃପକ୍ଷଙ୍କର ଏହି ପ୍ରଚେଷ୍ଟା ବନ୍ଦନୀୟ; ଆହୁରି ଶ୍ରୀଗୋବିନ୍ଦ ଭାଷ୍ୟ ରଚୟିତା ଶ୍ରୀ ବଳଦେବ ବିଦ୍ୟାଭୂଷଣ ଓ ଶ୍ରୀମଦ୍ ଭାଗବତମ୍‌ର ପ୍ରସିଦ୍ଧ ଟୀକାକାର ଶ୍ରୀ ଶ୍ରୀଧର ସ୍ୱାମୀଙ୍କ ଆବିର୍ଭାବ ସ୍ଥାନ ସମ୍ବନ୍ଧେ ଏହି ଗ୍ରନ୍ଥରେ ଆଲୋକପାତ ହୋଇଥିବାରୁ ଏହା ଅଭିବନ୍ଦନୀୟ ।

ପ୍ରଣତ

**ଶ୍ରୀ ଯତଶେଖର ଦାସ,** ଭକ୍ତିଶା

ରୁଦ୍ରପୁର, ରେମୁଣା, (ବାଲେଶ୍ୱର)

# ସତ୍ୟଂ ପରଂ ଧୀମହି

## ପ୍ରାକ୍‌କଥନ

ଶ୍ରୀହରି-ଗୁରୁ-ବୈଷ୍ଣବ ଚରଣରେ ପ୍ରପନ୍ନ ହେବାର ସୌଭାଗ୍ୟ ଜୀବ ଯେତେଦିନ ନ ପାଏ, ସେତେଦିନ ସେ ଏ ଜଗତର ବିଦ୍ୟାବୁଦ୍ଧି ଦ୍ୱାରା ଅଧୋକ୍ଷଜ ଭଗବାନଙ୍କର ଓ ଭକ୍ତଗଣଙ୍କର ଅଲୌକିକ ଅଚିନ୍ତ୍ୟଲୀଳା ହୃଦୟଙ୍ଗମ କରିବାକୁ ସକ୍ଷମ ହୁଏ ନାହିଁ । ଶ୍ରୀଭଗବାନଙ୍କର ଯେପରି ଗୁଣର ଓ ଲୀଳାର ଅନ୍ତ ନାହିଁ, ସେହିପରି ତାଙ୍କର ପ୍ରିୟ ଭକ୍ତଗଣଙ୍କର ସଦ୍‌ଗୁଣର ଅନ୍ତ ନାହିଁ । ପାର୍ଥିବ ଜଗତର ବିଦ୍‌ବତ୍ତା ଦ୍ୱାରା ଯେଉଁମାନେ ଭକ୍ତ ଓ ଶ୍ରୀଭଗବାନଙ୍କର ଚରିତ୍ର ସମାଲୋଚନା କରିବାକୁ ଯାଆନ୍ତି, ସେମାନଙ୍କ ନିକଟରେ ଏହି ଚରିତ୍ରଗୁଡ଼ିକ କାଳ୍ପନିକ କାହାଣୀ ଭଳି ମନେ ହୋଇଥାଏ ।

ଐତିହାସିକତା ଓ ଅଚିନ୍ତତ୍ୱ ଶ୍ରୀଭଗବାନଙ୍କର ଓ ଭକ୍ତଗଣଙ୍କର ଜୀବନରେ ପ୍ରକାଶିତ ହୋଇଥାଏ । ଇତିହାସ ଅନୁସନ୍ଧାନ କରିଥାଏ—ସମୟ ଓ ତାରିଖ, ସ୍ଥାନ ଓ ଘଟଣାର ପ୍ରକୃତ ତଥ୍ୟ; ଆଉ ଅଚିନ୍ତତ୍ୱ—ଯାହାକି ମାନବ ଭାବନାର ଅତୀତ ଘଟଣାର ଅଲୌକିକତ୍ୱରେ ସୁଦୃଢ଼ ବିଶ୍ୱାସ ସ୍ଥାପନ ସାଧୁ-ଶାସ୍ତ୍ର ଗୁରୁବାକ୍ୟରେ । ଅନାଦି କୃଷ୍ଣ-ବହିର୍ମୁଖ ଜୀବନିବୟଙ୍କର ଦ୍ୱାର ପ୍ରାନ୍ତରେ ଅଯାଚିତ ଅନାହୂତ ହୋଇ ପରମ କାରୁଣିକ ଶ୍ରୀ ଭଗବଦ୍ ଭକ୍ତଗଣ ଆଗମନ କରି ଯୁଗେ ଯୁଗେ ପରିବେଷଣ କରନ୍ତି ଶ୍ରୀଲୀଳାମୟଙ୍କର ଲୀଳାମୃତ । ଏହା ହିଁ ସେମାନଙ୍କର ସହଜାତ ସ୍ୱଭାବ । ତେଣୁ ଶ୍ରୀ କବିରାଜ ଗୋସ୍ୱାମୀ କହିଛନ୍ତି—

ମହାନ୍ତ ସ୍ୱଭାବ ଏଇ ତାରିତେ ପାମର ।
ନିଜ କାର୍ଯ୍ୟ ନାହିଁ ତବୁ ଯାନ ତାର ଘର ।"

ଏହି ଧରାଧାମରେ ଯାହାଙ୍କୁ କେବେ ଧରାଯାଇ ପାରେନା, ସେ ଧରାଦିଅନ୍ତି ତ୍ରିତାପତପ୍ତ ଜୀବସମୂହଙ୍କ ନିକଟରେ, ଭକ୍ତରୂପେ ସାଧୁ-ଗୁରୁଶାସ୍ତ୍ର ରୂପେ । ଜୀବର କଲ୍ୟାଣ ସାଧନ ଲାଗି ବାଞ୍ଛାକଳ୍ପତରୁ ଭକ୍ତଗଣ ଶ୍ରୀଭଗବାନଙ୍କର ପ୍ରେମଭକ୍ତିରସ ପ୍ଳାବନରେ ପ୍ଳାବିତ ଓ ସଂଜୀବିତ କରନ୍ତି ମରୁମୟ ଜୀବହୃଦୟକୁ । ଭକ୍ତହିଁ ଭଗବାନ, ଆଉ ଭଗବାନ ହିଁ ଭକ୍ତ ।

ପଞ୍ଚତତ୍ତ୍ୱାତ୍ମକଂ କୃଷ୍ଣଂ ଭକ୍ତରୂପସ୍ୱରୂପକମ୍ ।
ଭକ୍ତାବତାରଂ ଭକ୍ତାଖ୍ୟଂ ନମାମି ଭକ୍ତଶକ୍ତିକମ ।।

(ଶ୍ରୀ ଚୈ.ଚ. ଆଦ ୧୪ ଶ୍ଳୋକ)

ଭକ୍ତ ଭଗବଦ୍‌କଥା କୀର୍ତ୍ତନର ଶେଷ ଧାଥେୟ ହେଲା ଶ୍ରୀ ଶ୍ରୀ ନିତାଇଗୌରଙ୍କର କରୁଣା-କଣା । ସସୀମ ମନୁଷ୍ୟର ପ୍ରଧାବନ ଅସୀମ ଦିଗକୁ । ଅସୀମ ଶ୍ରୀଭଗବାନଙ୍କର ଅବତରଣ ସସୀମର ପ୍ରାଣପୁରରେ । ମନୁଷ୍ୟ ଉଠେ, ଆଉ ଭଗବାନ ଓହ୍ଲାନ୍ତି । ପଥ ମଝିରେ ଦେଖା ହୋଇଯାଏ ଦୁଇଜଣଙ୍କର । ମନୁଷ୍ୟ ଦୌଡ଼ି-ଚାଲେ ସାଧନାରେ; ଭଗବାନ ଚାଲନ୍ତି କରୁଣାରେ । ମିଳନ ଘଟେ ସଂସାର-ତଟିନୀର ତଟଦେଶସ୍ଥ ପାରିଘାଟରେ । ମାନବର ପ୍ରୟାସ, ଈଶ୍ୱରଙ୍କର ପ୍ରସାଦ—ଏହି ଦୁଇଟିର ମିଳନରେ ଜୀବେଶ୍ୱରର ସାକ୍ଷାତ୍‌କାର ଘଟିଥାଏ ।

ମନୁଷ୍ୟର ଉନ୍ନୟନର ଚରମତା ଭଗବଦ୍ ତତ୍ତ୍ୱ ଲାଭରେ; ଭଗବାନଙ୍କର ପରମତା ମାନବତ୍ୱ ଲାଭରେ । ଯେଉଁ ମାନବ ଭଗବତ୍‌ତୁଲ୍ୟ, ସେ ମହୀୟାନ ଯେଉଁ ଭଗବାନ ମାନବତୁଲ୍ୟ, ସେ ମନୋହାରୀ । ଭୂଲୋକର ମନୁଷ୍ୟର ଗୋଲୋକପ୍ରାପ୍ତି ତୀବ୍ର ତପସ୍ୟାର ପରମ ପରିଣତି । ଗୋଲୋକ-ଦେବତାଙ୍କର ଭୂଲୋକ ଗତାଗତି ବିଗଳିତ କରୁଣା ଜାହ୍ନବୀ—ଯମୁନାର ଅମୃତ ପ୍ରଗତି । ସାଧନ ବଳରେ ମନୁଷ୍ୟର ଭଗବଦ୍‌ତତ୍ତ୍ୱ ଲାଭର ସମ୍ବାଦ ଦେଇଛନ୍ତି—ବେଦ, ଉପନିଷଦ । "ଜୀବୋ ବ୍ରହ୍ମୈବ ନା ପରଃ ।" ଏହା ବୈଦାନ୍ତିକର ଗବେଷଣା । ଅସୀମ କାରୁଣ୍ୟବଶତଃ ଭଗବାନଙ୍କର ମାନବତ୍ୱ ଲାଭର ସମ୍ବାଦ ଦେଇଛନ୍ତି ନଦୀୟାର ସୁରଧୁନୀ—ତଟ । "ସର୍ବୋତ୍ତମ ନରଲୀଳା, ନରବପୁ ତାଁହାର ସ୍ୱରୂପ ।" ଏହା ଗୌଡ଼ୀୟ ବୈଷ୍ଣବାଚାର୍ଯ୍ୟଗଣଙ୍କର ଉଦାତ୍ତ ଘୋଷଣା । ବେଦର ସମ୍ବାଦ ମନୁଷ୍ୟକୁ କରିଛି ଜ୍ଞାନବାନ୍, ଭକ୍ତ । ଆଉ ଗୌଡ଼ୀୟ ସମ୍ବାଦ ମନୁଷ୍ୟକୁ ଗଢ଼ିଛି ପ୍ରାଣବନ୍ତ ପ୍ରେମିକ ରୂପେ ।

ମାନବ ମଧ୍ୟରେ ଈଶ୍ୱରତ୍ୱ ରହିଛି—ଏହା ମାନବତାର ମହିମା; ଈଶ୍ୱରଙ୍କ ମଧ୍ୟରେ ମାନବତ୍ୱ ଅଛି, ଏହା ଈଶ୍ୱରତ୍ୱର ମାଧୁରିମା । ସାଧକ ଈଶ୍ୱରଙ୍କୁ ଚାହେଁ । ସେହି ପ୍ରମତ୍ତ ଆକାଙ୍କ୍ଷାରେ ଈଶ୍ୱରଙ୍କର ସାଧର୍ମ୍ୟ ଲାଭ କରେ । "ମମ ସାଧର୍ମ୍ୟ-ମାଗତାଃ ।"—ଏହା ଗାନ କରିଛନ୍ତି ଶ୍ରୀମଦ୍ ଭଗବଦ୍ ଗୀତା । ଭଗବାନ ଭକ୍ତଙ୍କୁ ଚାହାନ୍ତି । କ୍ରମେ ଚାହୁଁ ଚାହୁଁ ଭଗବାନ ଭକ୍ତ ହୋଇଯାଆନ୍ତି । ଭକ୍ତ ଭୂମିକାରେ ଭଗବାନ ନୃତ୍ୟ କରି ଚାଲନ୍ତି ନଦୀୟାର ରାଜପଥ ଉପରେ । ଏହି କାହାଣୀ ଶୁଣାଇଛନ୍ତି ଅମୃତମୟ ବୈଷ୍ଣବସାହିତ୍ୟ । ପ୍ରେମମୟଙ୍କର ପ୍ରେମାନନ୍ଦରେ ମନୁଷ୍ୟ ହୁଏ ଆତ୍ମହରା । ଆତ୍ମହରା ଅବସ୍ଥା ହିଁ ଆନନ୍ଦର ସମ୍ପୂର୍ଣ୍ଣ ସମ୍ଭୋଗ । ନିଜକୁ ହଜାଇଦେଇ ପାରିଲେ ହିଁ ଲାଭହୁଏ ଆତ୍ମଦର୍ଶନ । ଆତ୍ମଦର୍ଶନ ହିଁ ଆନନ୍ଦର ନିଦାନ । ଭଗବାନ ମଧ୍ୟ ସମ୍ପୂର୍ଣ୍ଣାନନ୍ଦ ସମ୍ଭୋଗ କରନ୍ତି ଆତ୍ମହରା ହେଲେ । ଭଗବତ୍ତ୍ୱ ହିଁ ଭଗବାନଙ୍କର ଆତ୍ମା । ଭଗବାନ ଯଦି ଭଗବତ୍ତ୍ୱ ହରାଇ ବସନ୍ତି, ତେବେ ଯାଇ ପ୍ରକଟିତ ହୁଏ ତାଙ୍କର ଆନନ୍ଦର ପୂର୍ଣ୍ଣ ସ୍ୱରୂପତ୍ୱ ।

ଭଗବାନଙ୍କର ମଧ୍ୟ ରହିଛି ଗୋଟିଏ ମହତ୍ ସାଧନା । ତାହାଙ୍କର ଲକ୍ଷ୍ୟ ସ୍ୱସ୍ୱରୂପର ଆସ୍ୱାଦନ । ସେ ନିଜକୁ ନିଜେ ଖୋଜି ବୁଲନ୍ତି । ଅନନ୍ତ ମହାବିଶ୍ୱର ପ୍ରକାଶ ହୁଏ ସେହି ଅନୁସନ୍ଧାନର ମହାଫଳ । ତେବେ ବି ଚରମପ୍ରାପ୍ତି ଘଟେନାହିଁ । ବିରାମ ବିହୀନ ଭାବେ ଖୋଜି ଚାଲନ୍ତି । ଖୋଜୁ ଖୋଜୁ ନିଜକୁ ନିଜେ ସୃଷ୍ଟିକରନ୍ତି ନୂତନରୂପେ । "ତଦାତ୍ମାନଂ ସୃଜାମ୍ୟହମ ।" ଭଗବାନ ସ୍ୱ-ସ୍ୱରୂପ ଆସ୍ୱାଦନରେ ସିଦ୍ଧକାମ ହୁଅନ୍ତି ଯେତେବେଳେ, ଯେତେବେଳେ ନିଜର ଭଗବତ୍ତ୍ୱ ହରାଇଥାନ୍ତି; ଯେତେବେଳେ ପୂର୍ଣ୍ଣ ମନୁଷ୍ୟ ହୋଇ ନିଜର ମାଧୁରିମା ଅନୁସନ୍ଧାନରେ ନିମଗ୍ନ ଥାନ୍ତି । ଏ ବାର୍ତ୍ତାର ବାହକ ହେଲେ ଶ୍ରୀ ନବଦ୍ୱୀପଚନ୍ଦ୍ର । ନିଜକୁ ଅନୁସନ୍ଧାନ କରୁ କରୁ ପୂର୍ଣ୍ଣ ମନୁଷ୍ୟ ହୋଇ ନଦୀୟାର ସୌଭାଗ୍ୟାକାଶରେ ଉଦିତ ହେଲେ ସ୍ୱୟଂ ଭଗବାନ । କେଡ଼େ ସୁନ୍ଦର ଶ୍ରୀଗୌରସୁନ୍ଦର । ତାହା ଜାଣିବାଲାଗି ପୁଟଚଟ ସୁନ୍ଦର ଦ୍ୟୁତି ନେଇ ପଥେ ପଥେ ନର୍ତ୍ତନ କରୁଛନ୍ତି, ହସୁଛନ୍ତି, କ୍ରନ୍ଦନ କରୁଛନ୍ତି ସ୍ୱୟଂ ହରି—ଗୌର ହରି ହରି ହରି ବୋଲି । ଏହି ସମ୍ବାଦ ଅଶ୍ରୁତପୂର୍ବ । ଏହି ସନ୍ଦେଶ ତ୍ରିତାପତପ୍ତ କଳିକବଳିତ ମାନବସମାଜର ହସ୍ତରେ ଅଭିନବ ଅବଦାନ ।

ଭଗବାନ ସର୍ବଜ୍ଞ । ସବୁକିଛି ଜାଣନ୍ତି । କେବଳ ଜାଣନ୍ତି ନାହିଁ ସେ କେତେ ସୁନ୍ଦର । ଗୀତାରେ ଅର୍ଜୁନଙ୍କୁ କେତେ କଥା କହିଛନ୍ତି, କିନ୍ତୁ କହିନାହାନ୍ତି ନିଜ ମାଧୁର୍ଯ୍ୟର କଥା । କହିନାହାନ୍ତି ତାଙ୍କ ସ୍ୱରୂପରେ ରହିଛି କେତେ ଆନନ୍ଦର ଘନତା; ତାହାଙ୍କର ରୂପରେ ପ୍ରୀତିର କେତେ ମଧୁରତା । ତାଙ୍କ ବଂଶୀ ସ୍ୱନରେ ମର୍ମସ୍ପର୍ଶୀ କେତେ ମାଦକତା; ତାଙ୍କ ପ୍ରେମରେ ମନମତାଣିଆ କେତେ ଉଦବେଳନତା ।

ସେ କହିନାହାନ୍ତି, କହିପାରି ନାହାନ୍ତି । ତାଙ୍କର ଅନୁଭୂତି ନାହିଁ; ଅଛି କେବଳ ଅନୁମିତି, ତେଣୁ କୁହାହୋଇ ପାରିନି । ଯାହା ନିଜ ହୃଦୟରେ ତାହା ହୁଏ ଅନୁଭୂତି । ଯାହା ପରମୁହଁରେ ତାହା ହୁଏ ଅନୁମିତି । ଶ୍ରୀଭଗବାନଙ୍କର ନିରୂପମ ସୌନ୍ଦର୍ଯ୍ୟ କଥା, ଅନିର୍ବଚନୀୟ ମାଧୁର୍ଯ୍ୟର ବାର୍ତ୍ତା, ଅସମୋର୍ଦ୍ଧ୍ୱ ଲୀଳାତତ୍ତ୍ୱ ଗାଥା, ତଦବିଷୟର ଅନୁଭୂତି ଅଛି ଏକମାତ୍ର ତଦ୍‌ଭକ୍ତଜନଙ୍କର । ତତୋଽଧିକ ଅଛି ବା ସର୍ବାଧିକ ଅଛି ସର୍ବଶ୍ରେଷ୍ଠ ଭକ୍ତ ବ୍ରଜଜନଙ୍କର ।

ଏହି ମଧୁ-ବାସନ୍ତୀ ପୂର୍ଣ୍ଣିମାର ଶୁଭ ସନ୍ଧ୍ୟାରେ ଗଙ୍ଗାତଟଦେଶର ନଦୀୟାର ରଙ୍ଗମଞ୍ଚର ପ୍ରଚ୍ଛଦପଟରେ ପ୍ରକଟ ହୋଇଥିଲେ ଅନର୍ପିତଚରୀ ଉନ୍ନତୋଜ୍ଜ୍ୱଳ ସ୍ୱଭକ୍ତି ଶ୍ରୀଲୀଳାନାଟ୍ୟର ମହାନ ଅଭିନେତା, ମହାନାୟକ ଶ୍ରୀଗୌରଗୁଣମଣି । ସେଦିନ ହୋଲିର ବିଳାସରେ ଆକାଶ ଥିଲା ରଙ୍ଗୀନ । ଚନ୍ଦ୍ରଗ୍ରହଣର ଉଲ୍ଲାସରେ ପବନ ଥିଲା କୀର୍ତ୍ତନମୁଖର । ନ୍ୟାୟଚର୍ଚ୍ଚାର ଶୁଷ୍କତାରେ ମନୁଷ୍ୟ-ଜୀବନ ଥିଲା ତୃଷ୍ଣା-ବ୍ୟାକୁଳ । ଜୀବଜଗତର ଦୁଃଖର ତୀବ୍ରତାରେ ଶ୍ରୀଅଦ୍ୱୈତଠାକୁରଙ୍କର ନୟନ ଥିଲା ଅଶ୍ରୁସଜଳ ।

ଗୋଲୋକର ଭଲପାଇବା ବିତରଣ କରିବାକୁ, ମର୍ତ୍ତ୍ୟର ଭଲପାଇବା ଗୋଟାଇ ନେବାକୁ ଶ୍ରୁତିର "ରସୋ ବୈ ସଃ" ମୂର୍ତ୍ତିଧାରଣ କରି ଆସିଥିଲେ ଶ୍ରୀଶଚୀମାତାଙ୍କର ଅଙ୍କଦେଶ ଆଲୋକିତ କରି । ତାଙ୍କର ରୂପରେ ପ୍ରଲୁବ୍ଧ ହୋଇ ଉଠିଥିଲେ ନରନାରୀ । ତାହାଙ୍କର ଶ୍ରୀହରିନାମଗାନରେ ଅରଣ୍ୟର ହିଂସ୍ରୋନ୍ମତ୍ତ ପ୍ରାଣୀକୂଳ ହୋଇଥିଲେ ସମ୍ମୋହିତ ମୁଗ୍ଧ । ତାଙ୍କର ଅମିତ ଶୌର୍ଯ୍ୟରେ ବିଧର୍ମୀଗଣ ହୋଇ ଉଠିଥିଲେ ତ୍ରସ୍ତ । ଔଦାର୍ଯ୍ୟରେ ବିରୋଧୀମାନେ ହୋଇଥିଲେ କ୍ରୋଡ଼ଗତ । ତାଙ୍କର ବିଦ୍ୟାବତ୍ତାରେ ଦିଗବିଜୟୀ ହୋଇଥିଲା ପ୍ରକମ୍ପିତ । ସ୍ୱରୂପ ଦର୍ଶନରେ ସାର୍ବଭୌମ ହୋଇଥିଲେ ପଦାନତ । ତାଙ୍କର ଦୈନ୍ୟ ବିନୟରେ ପ୍ରକାଶାନନ୍ଦ ହୋଇଥିଲେ ବିମୋହିତ । ସେହି ପ୍ରେମମୟଙ୍କର ପ୍ରେମ କ୍ରନ୍ଦନରେ ଶୈଳଶିଳା ହେଲା ବିଗଳିତ । ତାଙ୍କର ବ୍ୟକ୍ତିତ୍ୱ ଥିଲା ଅସୀମ ଆକାଶସ୍ପର୍ଶୀ ହିମାଚଳ ପରି । ତାଙ୍କର ପଦପ୍ରାନ୍ତରେ ହୋଇଥିଲେ ସମାଶ୍ରିତ-ହୀନ, ପତିତ, ଦୀନ-କଙ୍କାଳ ଶତ ଶତ ଅଗଣିତ । ତାଙ୍କୁ ଭଲ ପାଇବାକୁ ନ ଥିଲେ ଏପରି ମନୁଷ୍ୟଟିଏ ନ ଥିଲା ଅପ୍ରତୀତ । ସେହି ଯୁଗରେ ସାରା ଦେଶରେ ଦାତା-ଶିରୋମଣିଙ୍କର ଅକୁଣ୍ଠ ବଦାନ୍ୟତାରେ ଧନ୍ୟ ହୋଇଥିଲେ ନିଖିଳ ବିଶ୍ୱର ପରମ ସୌଭାଗ୍ୟଶାଳୀ ନରନାରୀଗଣ । ସେହି ଅଖିଳଦାତା, ପ୍ରେମଭକ୍ତିଦାତା ଶ୍ରୀମନ୍ମହାପ୍ରଭୁ ଓ ତାଙ୍କ ଆଶ୍ରିତ ଭକ୍ତଗଣଙ୍କର ଶ୍ରୀଚରଣ-ସରୋଜରେ କରେ ସଶ୍ରଦ୍ଧ ଭକ୍ତିନତ ସାଷ୍ଟାଙ୍ଗ ଦଣ୍ଡବତ ପ୍ରଣିପାତ ।

ହଁ, ଆଉ ଗୋଟିଏ କଥା ନ କହିଲେ ପ୍ରକାଶିତ ହୁଏ ମୋର ଅକୃତଜ୍ଞତା । ଯେଉଁ ବ୍ୟକ୍ତିଙ୍କର ସ୍ୱତଃସ୍ଫୂର୍ତ୍ତ ପ୍ରେରଣା ମାଦୃଶ ଜ୍ଞାନଭକ୍ତିବିହୀନ ଅଯୋଗ୍ୟକୁ ଲେଖକର ମିଥ୍ୟାଭିମାନରେ କରିଛି ଗୌରବାନ୍ୱିତ ଓ ଗର୍ବିତ; ତାହାଙ୍କର କଥା କେବେହେଲେ ବିସ୍ମୃତ ହୋଇପାରିବି ନାହିଁ । ସେମାନେ ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ ଶ୍ରୀମନ୍ଦିରର ପରିଚାଳନା ସମିତିର ସଭ୍ୟବୃନ୍ଦ ତଥା ମନ୍ଦିର ପରିଚାଳକ ଶ୍ରୀଯୁକ୍ତ ଶିଶିର କୁମାର ପାଣିଗ୍ରାହୀ ମହାଶୟ । ତାହାଙ୍କ ନିକଟରେ ମୁଁ ସର୍ବଶେଷରେ ସର୍ବାନ୍ତଃକରଣରେ କୃତଜ୍ଞତାବଦ୍ଧ । ଶ୍ରୀ ଶ୍ରୀ ଗୋପୀନାଥ ତାହାଙ୍କୁ ସୁସ୍ଥସବଳ ସୁଦୀର୍ଘ ଜୀବନଦାନ ଓ ଶ୍ରୀଭଗବତ ସେବାନୁକୂଲ୍ୟ ଦାନ କରନ୍ତୁ । ଇତି ।

ଶ୍ରୀ ଭଗବଦ୍‌ଭକ୍ତପଦ ରଜଃ ପ୍ରାର୍ଥୀ

**ପଣ୍ଡିତ ଶ୍ରୀ କିଶୋରୀ ମୋହନ**, କାବ୍ୟ-ବ୍ୟାକରଣ ତୀର୍ଥ

କାବ୍ୟନିଧି-କାବ୍ୟରତ୍ନ ।

ବୀରନଗର, ନଦୀୟା (ପଶ୍ଚିମବଙ୍ଗ)

ଶ୍ରୀରଥଯାତ୍ରା

୧୯୮୫

# ସୂଚୀପତ୍ର

**ବିଷୟ** **ପୃଷ୍ଠା**



———



ଗୁପ୍ତବୃନ୍ଦାବନ ବା ଶ୍ରୀ ଶ୍ରୀ କ୍ଷୀରଚୋର ଗୋପୀନାଥଙ୍କ ମନ୍ଦିର, ରେମୁଣା

ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥାୟ ନମଃ

# ଗୁପ୍ତ ବୃନ୍ଦାବନ

## ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ ଧାମ

### ପ୍ରଥମ ବୈଭବ

ଶ୍ରୀରାମଚନ୍ଦ୍ର ପିତୃସତ୍ୟ ପାଳନ ଲାଗି ପତିବ୍ରତା ଶ୍ରୀସୀତାଦେବୀ ଓ ଅଗ୍ରଜାନୁଗତ ଅନୁଜ ଶ୍ରୀଲକ୍ଷ୍ମଣଙ୍କ ସହିତ ବନବାସ ଗମନ କରନ୍ତି । ସେତେବେଳେ ତ୍ରେତାଯୁଗ ଚାଲିଥିଲା । ମହାନଗରୀ ଅଯୋଧ୍ୟାରୁ ବହିର୍ଗତ ହୋଇ ସର୍ବପ୍ରଥମେ ପରମ ମନୋରମ ଚିତ୍ରକୂଟ ପର୍ବତଠାରେ ଉପସ୍ଥିତ ହୁଅନ୍ତି । ଋତୁରାଜ ବସନ୍ତର ସମାଗମରେ ନିରୁପମ ରୂପେ ସର୍ବଜନ ଚିତ୍ତାକର୍ଷକ ହୋଇ ଉଠିଥିଲା ଚିତ୍ରକୂଟ ପର୍ବତ । ଶୈଳରାଜର ଅନନ୍ୟ ସୁନ୍ଦର ରୂପ-ମାଧୁର୍ଯ୍ୟରେ ବିମୁଗ୍ଧ ହୋଇ ସେଠାରେ ଗ୍ରୀଷ୍ମ ଓ ବର୍ଷାକାଳ ଶେଷ ପର୍ଯ୍ୟନ୍ତ ବାସ କରିବାର ସଂକଳ୍ପ କରନ୍ତି । ଏକଦା ବର୍ଷାକାଳରେ କୌଣସି ଏକ ସମୟରେ ନୀଳାକାଶ ନବ ଘନଘଟାରେ ସମାଚ୍ଛନ୍ନ ହୋଇ ପ୍ରଚଣ୍ଡ ଝଡ଼ ଓ ପୁନଃ ପୁନଃ ଅଶନିସଙ୍କେତ ଦେଖାଦେବାକୁ ଲାଗିଲା । ତଦ୍‌ଦର୍ଶନରେ ଭୀତା ଓ ଚମକିତା ଦେବୀ ସୀତା କୁଳିଶଭୟ ନିର୍ବାଶକ ଜୈମିନିମୁନିଙ୍କର ନାମ ଉଚ୍ଚସ୍ୱରରେ ସ୍ମରଣ କରିବାକୁ ଲାଗିଲେ । ତତ୍‌ଶ୍ରବଣରେ ରଘୁକୁଳତିଳକ ଶ୍ରୀରାମ ସ୍ମିତହାସ୍ୟ ସହକାରେ ଜନକନନ୍ଦିନୀଙ୍କୁ ନିଜ କ୍ରୋଡ଼ଦେଶରେ ବସାଇ କହିଲେ—ଦେବି ! ସାମାନ୍ୟ ବଜ୍ରଗର୍ଜନରେ ଏତେ ଅସ୍ଥିର ହେଉଛ କାହିଁକି ? ତୁମେ କ'ଣ ବୈକୁଣ୍ଠଲୀଳା ବିସ୍ମୃତ ହୋଇଛ ? କିଛିକ୍ଷଣ ପରେ ଆକାଶ ମେଘମୁକ୍ତ ହେବାପରେ ତତ୍ରତ୍ୟ ମୁନିଗଣଙ୍କର ଆଶ୍ରମରୁ କତିପୟ ପୟସ୍ୱିନୀ ଗାଭୀ ନବୀନ ତୃଣଲୋଭରେ ଇତସ୍ତତଃ ବିଚରଣ କରୁ କରୁ ସେମାନଙ୍କର ସମୀପବର୍ତ୍ତୀ ହୁଅନ୍ତି । ତାହା ଲକ୍ଷ୍ୟ କରି ଶ୍ରୀରାମ ବାରମ୍ବାର ହାସ୍ୟ କରିବାକୁ ଲାଗିଲେ । ସେତେବେଳେ ଜାନକୀ ଜୀବନଦୟିତଙ୍କର ମଧୁର ହାସ୍ୟର କୌଣସି ହେତୁ ବୁଝି ନ ପାରି ଜିଜ୍ଞାସା କଲେ—ଆପଣଙ୍କର ଏ ପ୍ରକାର ହାସ୍ୟର କାରଣ କ'ଣ ? ସେତେବେଳେ ଶ୍ରୀରାମ ଶ୍ରୀସୀତାଦେବୀଙ୍କୁ ସକୌତୁକ ବଚନରେ କହିଲେ,—ଏହା ହିଁ ଆମର ଭବୀ ଦ୍ୱାପରଲୀଳାର ପୂର୍ବ ସୂଚନା । ମୁଁ

ଦ୍ୱାପର ଯୁଗରେ ନିତ୍ୟଗୋଲୋକଧାମ ତୁଲ୍ୟ ଶ୍ରୀବ୍ରଜଧାମରେ , ଗୋପକୁଳରେ ନନ୍ଦ-ଯଶୋଦାଳୟରେ ସମ୍ଭୂତୀର୍ଣ୍ଣ ହେବି ଏବଂ ତୁମେ ମଧ୍ୟ ବୃଷଭାନୁ-କୀର୍ତ୍ତିଦାଦେବୀଙ୍କର ଗୃହରେ ଆବିର୍ଭୂତା ହେବ । ସେହି ସମୟରେ ଏହି ଧେନୁଗଣ ହିଁ ମୋର ବ୍ରଜଲୀଳାର ପ୍ରଧାନ ସହାୟକ ହେବେ । ଏହି ଚିତ୍ରକୂଟ ପର୍ବତ ପରିବର୍ତ୍ତେ ଗୋବର୍ଦ୍ଧନ-ଗିରିରାଜ ସେତେବେଳେ ଆମର ଅତୀବ ପ୍ରିୟବସ୍ତୁ ହେବ । ଆଉ ଆମର ସମ୍ମୁଖରେ ଯେଉଁ କଦମ୍ବ ତରୁଟି ଦେଖୁଛ, ଦ୍ୱାପରରେ ଏହା ପରିବର୍ତ୍ତେ କେଳିକଦମ୍ବ ମୋର ଆଶ୍ରୟ-ତରୁ ହେବ । ମୁଁ ସେ ସମୟରେ ଏକ ଅପୂର୍ବମୂର୍ତ୍ତି ଧାରଣ କରିବି ।

ଶ୍ରୀସୀତାଦେବୀ ପ୍ରଭୁଙ୍କର ଭବୀଲୀଳାର ଭୂମିକା ଶ୍ରବଣରେ ଭବୀଯୁଗର ମଧୁରମୂର୍ତ୍ତି ଦର୍ଶନ ଲାଳସାରେ ସବିନୟ ଅନୁରୋଧ କରିଥିଲେ । ସେହି ଲୀଳାରେ ଆପଣଙ୍କର କି ପ୍ରକାର ଅପରୂପ ରୂପ ହେବ ଓ ଲୀଳାନୁସଙ୍ଗୀଗଣ କିପରି ହେବେ, ତାହା ଜାଣିବାକୁ ମୋର ମନ ଅତ୍ୟନ୍ତ ବ୍ୟାକୁଳ । ସେହି ନବରୂପର ସଂକ୍ଷିପ୍ତ ସୂଚନାର ସୂତ୍ରପାତ କରନ୍ତୁ । ଶ୍ରୀସୀତାଦେବୀଙ୍କର ସାତିଶୟ କୌତୂହଳ ବଶବର୍ତ୍ତୀ ହୋଇ ସପ୍ତାହକାଳ ସମୟ ପ୍ରାର୍ଥନା କରି ସେହି ନବକିଶୋର ନଟବର ଗୋପବେଶ ବେଣୁକର ପ୍ରତିମୂର୍ତ୍ତି ଦର୍ଶନ କରାଇବେ ବୋଲି ସ୍ୱୀକୃତ ହେଲେ ।

ତତ୍‌ପରଦିବସ ଶ୍ରୀରାମଚନ୍ଦ୍ର ପ୍ରାତଃକୃତ୍ୟ ସମାପନାନ୍ତେ ପ୍ରତିମୂର୍ତ୍ତି ଅଙ୍କନର ଖଣ୍ଡଏ ଉପଯୁକ୍ତ ପ୍ରସ୍ତର-ଫଳକ ଅନୁସନ୍ଧାନ କରି ଧନୁର୍ବାଣ ସାହାଯ୍ୟରେ ସେହି ପ୍ରସ୍ତର-ଫଳକର ମଧ୍ୟସ୍ଥାନରେ ସୀତାଦେବୀଙ୍କର ଆକାଙ୍‌କ୍ଷିତ ଦ୍ୱିଭୁଜ ମୁରଲୀଧର ମାଧୁର୍ଯ୍ୟମୟ ଶ୍ରୀକୃଷ୍ଣ ମୂର୍ତ୍ତି ଅଙ୍କନ କରନ୍ତି । ତତ୍‌ବାମଦେଶରେ ତାମ୍ବୁଲସେବିକା ଶ୍ରୀଲଳିତାଦେବୀ, ଭକ୍ଷ୍ୟସାମଗ୍ରୀ ଓ ପାନୀୟ ଜଳପାତ୍ରଧାରିଣୀ ଶ୍ରୀ ବିଶାଖାଦେବୀ, ପୁଷ୍ପମାଲ୍ୟଧାରିଣୀ ଶ୍ରୀସୁଚିତ୍ରାଦେବୀ ଓ ପାଦସମ୍ବାହନରତା ଶ୍ରୀଇନ୍ଦୁରେଖାଙ୍କୁ ଅଙ୍କିତ କରନ୍ତି । ଦକ୍ଷିଣରେ ଚାମର-ବ୍ୟଜନରତା ଶ୍ରୀଚମ୍ପକଲତାଦେବୀ, ଚନ୍ଦନଦାନପାତ୍ରହସ୍ତା ଶ୍ରୀରଙ୍ଗଦେବୀ, ପରିଧେୟ ବସନସେବିକା ଶ୍ରୀମତୀ ତୁଙ୍ଗବିଦ୍ୟାଦେବୀ ଏବଂ ଶଯ୍ୟୋତ୍‌ଥାନ ଓ ଦନ୍ତଧାବନାଦି ପରିବେଷଣପରା ଶ୍ରୀମତୀ ସୁଦେବୀ—ଏହି ଅଷ୍ଟସଖୀ ମୂର୍ତ୍ତି ଅଙ୍କିତ କଲେ । କଟିଦେଶରେ ଉଭୟପାର୍ଶ୍ୱରେ ଶ୍ରୀ ସୁବଳ, ଶ୍ରୀ ମଧୁମଙ୍ଗଳ, ଶ୍ରୀ ସନନ୍ଦନ ଓ ଶ୍ରୀ ବିଦଗ୍‌ଧ—ଏହି ପ୍ରିୟନର୍ମ ସଖା ଚତୁଷ୍ଟୟଙ୍କ ହସ୍ତରେ ପାଞ୍ଚଣ-ଯଷ୍ଟି ଦେଇ ପ୍ରତ୍ୟେକଙ୍କ ନିକଟରେ ତିନୋଟି କରି ଧେନ ଚିହ୍ନିତ କଲେ । ମୁରଲୀଧର ଶ୍ରୀବିଗ୍ରହର ମସ୍ତକଦେଶରେ ତିନୋଟି ଜମ୍ବୁଫଳ ଓ ତତ୍‌ପାର୍ଶ୍ୱଦ୍ୱୟରେ କଂସାନୁଚର ଚାଣୁର-ମୁଷ୍ଟିକାଦି ନିପାତର ଚିତ୍ର ଅଙ୍କିତ କଲେ ।

ପ୍ରତିମା ଗଠନରେ ଏ ପ୍ରକାର ତିନିଦିନ ଅତିବାହିତ ହେଲା । ଚତୁର୍ଥ ଦିବସରେ ସେହି ମୂର୍ତ୍ତି ସନ୍ଦର୍ଶନରେ ସମୁତ୍ସୁକା ଜନକ-ଦୁହିତା ଶ୍ରୀରଘୁନାଥଙ୍କୁ ଅତ୍ୟନ୍ତ

ବ୍ୟତିବ୍ୟସ୍ତ କରୁଥାନ୍ତି । ଭ୍ରାତୃଭକ୍ତି ପରାୟଣ ଅନୁଗତ ଅନୁଜ ଲକ୍ଷ୍ମଣ ଏ ନିଗୂଢ଼ ତତ୍ତ୍ୱ ସମ୍ବନ୍ଧରେ କିଛିମାତ୍ର ଜାଣି ନ ଥିଲେ । କାରଣ ସେ ଆହାର ସମୟ ବ୍ୟତୀତ ଅନ୍ୟାବସରରେ ଆହାର୍ଯ୍ୟ ଫଳମୂଳାଦି ଅନ୍ୱେଷଣରେ ବ୍ୟାପୃତ ଫଳରେ ପ୍ରାୟତଃ ଅନୁପସ୍ଥିତ ରହୁଥିଲେ । ସେତେବେଳେ ଶ୍ରୀରାମଚନ୍ଦ୍ର ଶ୍ରୀସୀତା ସମଭିବ୍ୟାହାରରେ ତରୁପଲ୍ଲବାଚ୍ଛାଦିତ ସେହି ଶ୍ରୀବିଗ୍ରହ ଅଙ୍କିତ ପ୍ରସ୍ତର ଫଳକର ସନ୍ନିଧାନରେ ଉପସ୍ଥିତ ହୋଇ ଆବରଣ ଉନ୍ମୋଚନ କରି, ଗୋଟିକ ପରେ ଗୋଟିଏ ଅଷ୍ଟସଖୀ ସହ ବେଣୁବାଦନରତ ଅସ୍ପଷ୍ଟମୂର୍ତ୍ତି ଅଙ୍ଗୁଳି ନିର୍ଦ୍ଦେଶ ସହକାରେ ଦେଖାଉଥାନ୍ତି; ଏହି ସମୟରେ ହ୍ଲାଦିନୀଶକ୍ତିସ୍ୱରୂପା ଶ୍ରୀସୀତାଦେବୀ ତତ୍‌ପରୋନାସ୍ତି ପ୍ରଫୁଲ୍ଲିତା ହୋଇ କୋମଳକରରେ ମୁରଲୀଧରଙ୍କୁ ସ୍ପର୍ଶ କରି କହିଲେ, ଆପଣ ଏହିଁ ଚିତ୍ର କିପ୍ରକାରେ ଖୋଦିତ କଲେ, ତାହା ମୋର ପ୍ରତ୍ୟକ୍ଷ କରିବାର ଏକାନ୍ତ ବାସନା ଚିତ୍ତରେ ଜାଗୁଛି ।

ସେତେବେଳେ ଧନୁର୍ଦ୍ଧର ଶ୍ରୀରାମ ଧନୁକର ଶାଣିତ ଶରାଗ୍ରରେ ସେହି ପ୍ରସ୍ତର ଫଳକକୁ ସଂସ୍ପର୍ଶ କରିବା ମାତ୍ରେ ତତ୍‌କ୍ଷଣାତ୍ ତହିଁରୁ ରୁଧିରର ଧାର ପ୍ରବାହିତ ହେବାକୁ ଲାଗିଲା । କାରଣ ସର୍ବଶକ୍ତିର ଆଧାରଭୂତା ହ୍ଲାଦିନୀଶକ୍ତିସ୍ୱରୂପା ଶ୍ରୀସୀତା-ଦେବୀଙ୍କର ସଞ୍ଜୀବନୀ ସ୍ପର୍ଶରେ ଶ୍ରୀବିଗ୍ରହଙ୍କର ଜୀବନ୍ୟାସ ଓ ପ୍ରାଣପ୍ରତିଷ୍ଠା ସମ୍ପନ୍ନ ହେଲା । ସେତେବେଳେ ସର୍ବଶକ୍ତିମାନ୍ ଶ୍ରୀରାମ ପ୍ରାଣପ୍ରିୟା ସୀତାଙ୍କୁ କହିଲେ,—ଏ ବିଗ୍ରହ ଆଉ ସୁସ୍ପଷ୍ଟ ଭାବେ ଖୋଦିତ ହେବାର ନୁହେଁ । ଏ ମୂର୍ତ୍ତି ଏବେ ସଜୀବଭାବେ ପ୍ରକଟିତ ହୋଇଛନ୍ତି । ଏହାଙ୍କର ଆନୁଷ୍ଠାନିକ ଅଭିଷେକାଦି ପରେ ନିତ୍ୟ ପୂଜାର୍ଚ୍ଚନାର ସୁବ୍ୟବସ୍ଥା ବିଧେୟ । ଶ୍ରୀସୀତାଦେବୀ ତହିଁରେ ସାଗ୍ରହସମ୍ମତା ହୋଇ କହିଲେ, ପ୍ରଭୋ ! ମୁଁ ଶ୍ରୀବିଗ୍ରହଙ୍କର ପୂଜାର୍ଚ୍ଚନା କରିବି ଓ ଆମର ବନବାସାନ୍ତେ ଏହାଙ୍କୁ ଅଯୋଧ୍ୟା ନଗରୀକୁ ନେଇ ରାଜକୀୟ ସେବାର ପ୍ରତିଷ୍ଠା କରାଯିବ ।

ଏହା କହି ଉଭୟେ ଚିତ୍ରକୂଟ ପର୍ବତସ୍ଥ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କଲେ । କିଛିଦିନ ପରେ ରାକ୍ଷସାଦି କର୍ତ୍ତୃକ ଉପଦ୍ରୁତ ଓ ବିଧ୍ୱସ୍ତ ଅତ୍ରିମୁନିଙ୍କର ଆଶ୍ରମରେ ଉପନୀତ ହୋଇ ଅତ୍ରିମୁନିଙ୍କର ଆଶ୍ରମକୁ ରାକ୍ଷସ କବଳରୁ ମୁକ୍ତ କରି ରାକ୍ଷସଗଣଙ୍କୁ ବିନାଶ କରିବାକୁ ଲାଗିଲେ । ଶ୍ରୀସୀତା ଓ ଶ୍ରୀରାମଚନ୍ଦ୍ରଙ୍କର ଅତ୍ରିମୁନିଙ୍କର ଆଶ୍ରମକୁ ଗମନାବଧି ସ୍ୱୟଂ ବ୍ରହ୍ମା ଉକ୍ତ ଶ୍ରୀବିଗ୍ରହଙ୍କର ନିତ୍ୟସେବା କାର୍ଯ୍ୟରେ ନିଯୁକ୍ତ ହେଲେ । ଅନନ୍ତର ଅନିବାର୍ଯ୍ୟ କାରଣପ୍ରସୂତ ଲଙ୍କେଶ୍ୱର ରାବଣ କର୍ତ୍ତୃକ ଶ୍ରୀସୀତା ଅପହରଣାଦି ବ୍ୟାପାର ସଂଘଟିତ ହୁଏ । ସେଥିଲାଗି ପ୍ରାଣପ୍ରିୟା ଶ୍ରୀସୀତାଙ୍କ ବିରହରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଶ୍ରୀରାମ ସାଗରବନ୍ଧନାଦି କରି ରାବଣହୃତ ଶ୍ରୀସୀତାଙ୍କର ଉଦ୍ଧାରସାଧନ କରି ଅଯୋଧ୍ୟାନଗରୀକୁ ପ୍ରତ୍ୟାବର୍ତ୍ତନ କାଳରେ ପଥମଧ୍ୟରେ ଏକ ରମଣୀୟ ସ୍ଥାନକୁ ଆସି ରାତ୍ରିଯାପନ କଲେ । ସେଠାରେ ସେହି ରାତ୍ରିରେ ଶ୍ରୀସୀତାଦେବୀ ରଜଃସ୍ୱଳା

ହେଲେ । ସୁତରାଂ ଶ୍ରୀରାମଚନ୍ଦ୍ର ନିରୁପାୟ ହୋଇ ରାତ୍ରିଦିନ ସେହି ସ୍ଥାନରେ ବାସ କରିବାର ଇଚ୍ଛା ପ୍ରକାଶ କଲେ । ଚତୁର୍ଥ ଦିନ ପ୍ରଭାତରେ ଜନକନନ୍ଦିନୀଙ୍କର ନଦୀରେ ଅବଗାହନର ବାସନା ଜାଗ୍ରତ ହେଲା । କିନ୍ତୁ ସେହି ସ୍ଥାନର ସନ୍ନିକଟବର୍ତ୍ତୀ କୌଣସି ନଦୀ ନ ଥିବାରୁ ଚିନ୍ତିତ ଶ୍ରୀରାମଚନ୍ଦ୍ର ନିଜ ଧନୁକରୁ ନିକ୍ଷିପ୍ତ ସପ୍ତଶର ସାହାଯ୍ୟରେ ଗୋଟିଏ ସମତଳ ଭୂମିକୁ ସ୍ରୋତସ୍ୱିନୀ ନଦୀରେ ପରିଣତ କରିବାରୁ ଭୂଗର୍ଭସ୍ଥ ଜଳପ୍ରବାହ ସର୍ବସମକ୍ଷରେ ପ୍ରତ୍ୟକ୍ଷୀଭୂତ ହେଲା । ସେହିଦିନଠାରୁ ସେହି ନଦୀର ନାମ ସପ୍ତଶର ରଖାଗଲା । କାଳକ୍ରମେ ଉଚ୍ଚାରଣ ପରିବର୍ତ୍ତନ ଫଳରେ ଏବେ ତାର ନାମ ସାତଶୋୟାଁ ହୋଇଛି । ସେହି ସମୟରୁ ଉକ୍ତ ରମଣୀୟ ସ୍ଥାନର ନାମ ପାରିଭାଷିକ ଅର୍ଥରେ 'ରମନା' ବା 'ରେମୁଣା'—ଏହି ନାମରେ ପ୍ରସିଦ୍ଧି ଲାଭ କଲା । କିନ୍ତୁ ଉତ୍କଳ ଭାଷାର ତାଳପତ୍ର ପୋଥି ଆକାରରେ ହସ୍ତଲିଖିତ ଗ୍ରନ୍ଥାନୁସାରେ ଜଣାଯାଏ ଯେ, ଏଠାରେ ଶ୍ରୀସୀତାଦେବୀ ରଜଃସ୍ୱଳା ହେବା ପରେ ଚତୁର୍ଥ ଦିବସରେ ସପ୍ତଶରନଦୀରେ ଅବଗାହନାନ୍ତେ ଦେବାର୍ଚ୍ଚନା ସମାପନାନ୍ତେ ଦିବାବସାନରେ ରାତ୍ରି ଯାପନ କରିଥିଲେ । ସେହି ରାତ୍ରିରେ ଶ୍ରୀରାମ ସମ୍ଭୋଗରସମୟୀ ଶ୍ରୀସୀତାଦେବୀଙ୍କୁ ସମ୍ଭୋଗ ବା ରମଣ କରିଥିଲେ ବୋଲି ଏହିଁ ସ୍ଥାନର ନାମ "ରେମୁଣା" ହୋଇଛି । ଏହି ଗ୍ରାମର 'ରେମୁଣା' ନାମକରଣ ପୂର୍ବେ ଗୋପାଳ ବସତିପୂର୍ଣ୍ଣ ଥିଲା ବୋଲି 'ଗୌଡ଼ଦାଣ୍ଡ' ନାମରେ ଖ୍ୟାତିଲାଭ କରିଥିଲା । ଓଡ଼ିଆଭାଷାରେ 'ଗୌଡ଼' ଶବ୍ଦର ଅର୍ଥ 'ଗୋପାଳ' ବା 'ଗଉଡ଼' ଓ 'ଦାଣ୍ଡ' ଶବ୍ଦର ଅର୍ଥ ରାସ୍ତା ବା ପଥକୁ ବୁଝାଏ । ଏହି ସ୍ଥାନର ଗ୍ରାମଦେବତୀ ଭଗବତୀ ଶ୍ରୀଚଣ୍ଡୀଙ୍କୁ ଶ୍ରୀରାମଚନ୍ଦ୍ର ପୂଜା କରିଥିଲେ ବୋଲି ସେହି ସ୍ମରଣାତୀତ ତ୍ରେତ ଯୁଗରୁ 'ଶ୍ରୀରାମଚଣ୍ଡୀ' ନାମରେ ପୂଜିତା ଓ ଆରାଧିତା ହୋଇ ଆସୁଛନ୍ତି ।

ରେମୁଣାରୁ ଶ୍ରୀରାମଚନ୍ଦ୍ର ଯେତେବେଳେ ଅଯୋଧ୍ୟାଭିମୁଖରେ ପ୍ରସ୍ଥାନୋଦ୍ୟତ, ସେତେବେଳେ ପଥମଧ୍ୟରେ ସୁବର୍ଣ୍ଣରେଖା ନଦୀ ସମୀପବର୍ତ୍ତୀ 'ରୟଣୀ' ନଗରରେ ଉପସ୍ଥିତ ହେଲେ ଏବଂ ତଥାକାର ଦ୍ୱାଦଶ ଶିବଲିଙ୍ଗ ଶ୍ରୀରାମଚନ୍ଦ୍ର ପୂଜା କରିଥିଲେ ବୋଲି ସେହି ଦ୍ୱାଦଶ ଶିବଲିଙ୍ଗଙ୍କର ନାମ 'ରାମେଶ୍ୱର' ରୂପେ ଅଦ୍ୟାବଧି ଆରାଧିତ ହୋଇ ବିରାଜିତ ଅଛନ୍ତି । ଅନନ୍ତର ଶ୍ରୀରାମଚନ୍ଦ୍ର ନିଜ ଜନ୍ମଭୂମି ଅଯୋଧ୍ୟାରେ ଉପନୀତ ହେଲେ । କିନ୍ତୁ ଚିତ୍ରକୂଟ ପର୍ବତରେ ଅଙ୍କିତ ସେହି ବିଗ୍ରହଙ୍କୁ ତ୍ରେତାଯୁଗର ଅବଶିଷ୍ଟ ସମସ୍ତ ଶତାବ୍ଦୀ, ସମ୍ପୂର୍ଣ୍ଣ ଦ୍ୱାପର ଯୁଗ ଓ କଳିଯୁଗର ବିଗତ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରଜାପତି ବ୍ରହ୍ମା ଅର୍ଚ୍ଚନା କରିଥିଲେ । ଅନନ୍ତର ବର୍ତ୍ତମାନ କଳିଯୁଗରେ ଓଡ଼ିଶା ରାଜ୍ୟର ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଅଧସ୍ତନ ଗଙ୍ଗବଂଶୀୟ ରାଜା ଅନଙ୍ଗଭୀମଦେବଙ୍କର ୧୦୨୫ ଶକାବ୍ଦରେ ମୃତ୍ୟୁର କେତେବର୍ଷ ପରେ ଶ୍ରୀଲାଙ୍ଗୁଡ଼ା ନରସିଂହଦେବ ନାମକ ଜନେକ ପୂତଚରିତ୍ର ଧର୍ମାତ୍ମା ରାଜା ହୋଇଥିଲେ । ସେ ପରମ ବୈଷ୍ଣବ ଓ ବଦାନ୍ୟ

ଶିରୋମଣି ଥିଲେ । ତାଙ୍କର ଏକମାତ୍ର କନ୍ୟା ବ୍ୟତୀତ ଅନ୍ୟ କୌଣସି ପୁତ୍ରସନ୍ତାନ ନ ଥିଲା । ବହୁ ମହତ୍‌କର୍ମ ଓ ଦାନଧର୍ମର ଅନୁଶୀଳନ କରି ମଧ୍ୟ ପୁତ୍ରସନ୍ତାନ ନ ହେବାରୁ ଗୌଡ଼ାଧିପତି ଶୂରସେନଙ୍କର ପୁତ୍ର ସହିତ ସ୍ୱୀୟ କନ୍ୟାର ପରିଣୟ ସୂତ୍ରେ ଆବଦ୍ଧ କରି, ବହୁ ଲୋକ ସମଭିବ୍ୟାହାରରେ ସସ୍ତ୍ରୀକ ତୀର୍ଥ ପର୍ଯ୍ୟଟନ ବ୍ୟପଦେଶରେ ଶୁଭଯାତ୍ରା କଲେ ।

କ୍ରମେ ନାନାତୀର୍ଥ ପରିବ୍ରାଜନ କରୁ କରୁ ଜମ୍ବୁଦ୍ୱୀପର ମଧ୍ୟଦେଶ ଅଯୋଧ୍ୟା ରାଜ୍ୟର ଦକ୍ଷିଣରେ ଚିତ୍ରକୂଟ ନାମକ ଶୈଳ ସମୀପରେ ସମୁପନୀତ ହେଲେ । ସର୍ବଜନଚିତ୍ତାକର୍ଷକ ମନୋରମ ଚିତ୍ରକୂଟ ଶୈଳର ଶୋଭସମ୍ପଦ ଏବଂ ତତ୍ରସ୍ଥ ସାଧୁ-ସଜ୍ଜନଗଣଙ୍କୁ ସନ୍ଦର୍ଶନ କରି ସସ୍ତ୍ରୀକ ରାଜା କେତେଦିନ ସେଠାରେ ବସବାସ କରିବାର ବାସନା ପ୍ରକାଶ କଲେ । ଦିନେ ରାଜଦମ୍ପତି ପ୍ରାତଃସ୍ନାନ ପରେ ଭ୍ରମଣରେ ବହିର୍ଗତ ହୋଇ, ବ୍ରହ୍ମାଙ୍କ ଅର୍ଚ୍ଚିତ ଉପର୍ଯ୍ୟୁକ୍ତ ଶ୍ରୀବିଗ୍ରହଙ୍କୁ ଦର୍ଶନ କରି ପରମାନନ୍ଦିତ ହେଲେ ।

ଉଭୟେ ପରାମର୍ଶ କରି ସେହି ଶ୍ରୀମୂର୍ତ୍ତିଙ୍କୁ ଶ୍ରୀଧାମ ଶ୍ରୀକ୍ଷେତ୍ରକୁ ଆନୟନ ନିମିତ୍ତ ଏକାନ୍ତ ସଂକଳ୍ପ କଲେ । ସେଦିନ ସେମାନେ ସେମାନଙ୍କର ବିଶ୍ରାମସ୍ଥାନକୁ ଫେରିଆସିଲେ । ରାତ୍ରିରେ ସେହି ଶ୍ରୀବିଗ୍ରହ ରାଜାଙ୍କୁ ସ୍ୱପ୍ନାଦେଶ କଲେ—ମୋର ନାମ ମଦନଗୋପାଳ । ମୋତେ ତ୍ରେତାଯୁଗରୁ ପ୍ରଜାପତି ବ୍ରହ୍ମା ଏହି ସ୍ଥାନରେ ପୂଜା କରୁଛନ୍ତି । କିନ୍ତୁ ବର୍ତ୍ତମାନ ମୋର ଅନ୍ୟ କୌଣସି ରମଣୀୟ ସ୍ଥାନକୁ ଯିବାର ବାସନା ଅଛି । ତୁମ୍ଭେମାନେ ମୋତେ ସେପରି କୌଣସି ରମଣୀୟ ସ୍ଥାନକୁ ନେଇ ଚାଲ । ରାଜା ସ୍ୱପ୍ନାବସ୍ଥାରେ ହିଁ ଶ୍ରୀ ମଦନଗୋପାଳଙ୍କର ନବନୀରଦକାନ୍ତି-ମଣ୍ଡିତ ଅତୁଳନୀୟ ମନୋହର ଅପରୂପ ରୂପମାଧୁର୍ଯ୍ୟ ନିରୀକ୍ଷଣ କରି ଏବଂ ଆଦେଶ-ବାଣୀ ଶ୍ରବଣ କରି ଅତୀବ ଅଧୈର୍ଯ୍ୟ ହେଲେ । ସହସା ନିଦ୍ରାଭଙ୍ଗ ହେଲା । ତନ୍ମୁହୂର୍ତ୍ତରେ ସ୍ୱପ୍ନବୃତ୍ତାନ୍ତ ସହଧର୍ମିଣୀଙ୍କୁ ଜଣାଇଲେ । ରାଜା ତତ୍‌ପରଦିନ ହିଁ ପ୍ରାତଃକୃତ୍ୟ ଶେଷରେ, ଶ୍ରୀମଦନଗୋପାଳଙ୍କର ଜୟଧ୍ୱନି ସହକାରେ ଶ୍ରୀଜୟଗୋପାଳ ଆଖ୍ୟା ଦେଇ ପ୍ରେମଭକ୍ତି ପୁରଃସର ପରମାନନ୍ଦରେ ସ୍ୱ-ରାଜ୍ୟାଭିମୁଖରେ ଯାତ୍ରା କଲେ ।

ଦୀର୍ଘପଥ ଅତିକ୍ରମଣରେ କେତେ ମାସ ଅତିବାହିତ ହେଲା ପରେ ନିଜ ରାଜ୍ୟର ଉତ୍ତର ପ୍ରାନ୍ତରେ ବାଲେଶ୍ୱର ଜିଲ୍ଲାନ୍ତର୍ଗତ ଶ୍ରୀରେମୁଣାରେ ଉପନୀତ ହୋଇ ସେଠାରେ ରାତ୍ରି ଯାପନ କଲେ । ସେହି ରାତ୍ରିରେ ନରପତି ଲାଙ୍ଗୁଡ଼ା ନରସିଂହଦେବଙ୍କର ତନ୍ଦ୍ରାବେଶରେ ଶ୍ରୀ ଜୟଗୋପାଳ ପୁନର୍ବାର ଆଦେଶ କଲେ ଯେ, ଏହି 'ରେମୁଣା" ପରମ ରମଣୀୟ ସ୍ଥାନ । ଏଠାରେ ଅସଂଖ୍ୟ ଗୋପାଳ ବା ଗଉଡ଼ମାନଙ୍କର ନିବାସ ରହିଛି ଏବଂ ସେମାନଙ୍କର ଧେନୁଗଣ କାମଧେନୁ ପରି ଦୁଗ୍ଧବତୀ । ସେଠାରେ ହିଁ ମୋର ନିତ୍ୟସେବା ପ୍ରକାଶ କର ।

ନିଦ୍ରାଭଙ୍ଗ ହେବାରୁ ପରମ ଭଗବତ ରାଜା ଲାଙ୍ଗୁଡ଼ା ନରସିଂହ ଦେବ ପରମ ପ୍ରେମାବିଷ୍ଟ ହୋଇ ସହଧର୍ମିଣୀଙ୍କୁ ସ୍ୱପ୍ନାଦେଶରେ ଶ୍ରୀଜୟଗୋପାଳଙ୍କର ପୁନରାଦେଶ ବିବରଣୀ ଜଣାଇଲେ । ପରଦିନ ରାଜ୍ୟ ମଧ୍ୟରେ ଈଶ୍ୱରେଚ୍ଛାରେ ଏହି ଶୁଭ ସମ୍ବାଦ ଘୋଷଣା କରି ଯଥାରୀତି ରାଜକୀୟ ସେବାର ସୁବ୍ୟବସ୍ଥା କଲେ । ରାଜମହିଷୀ ଶ୍ରୀଜୟଗୋପାଳଙ୍କୁ ଅଷ୍ଟସଖୀ, ସଖାଗଣ ପରିବେଷ୍ଟିତ ଦେଖି ଶ୍ରୀଗୋପୀନାଥ ନାମରେ ଅଭିହିତ କଲେ ।

ଏହି ସମସ୍ତ କାର୍ଯ୍ୟ ବ୍ୟପଦେଶରେ ଶ୍ରୀରେମୁଣାରେ କେଇ ମାସ ବାସ କରି ସେମାନେ ଦୁଇଟି ସରୋବରୋପମ ଜଳାଧାର ଖନନ କରନ୍ତି । ରାଜାଙ୍କର ଖନନ କରାହୋଇଥିବା ପୁଷ୍କରିଣୀର ନାମ ହେଲା—'ବ୍ରଜପୁଷ୍କରିଣୀ'; ଆଉ ରାଣୀଙ୍କର ଖନନ କରାହୋଇଥିବା ପୁଷ୍କରିଣୀର ନାମ ହେଲା—"କୋଟ ପୁଷ୍କରିଣୀ ।" ଏହି ପୁଷ୍କରିଣୀଦ୍ୱୟ ଅଦ୍ୟାବଧି ବିଦ୍ୟମାନ । ଓଡ଼ିଶା ଇତିହାସ ପାଠ କଲେ ଜଣାଯାଏ ଯେ, ଶ୍ରୀ ଲାଙ୍ଗୁଡ଼ା ନରସିଂହ ଦେବ ୧୨୦୬ ଶକାବ୍ଦରେ ପରଲୋକ ଗମନ କରନ୍ତି । ତା'ପରେ ରାଜପ୍ରବର୍ତ୍ତିତ ଓ ପ୍ରତିଷ୍ଠିତ ଶ୍ରୀବିଗ୍ରହଙ୍କର ରାଜକୀୟ ପୂଜାର୍ଚ୍ଚନା ମହାସମାରୋହରେ ଚାଲୁଥିଲା ।

ଏହିଭଳି ଦୀର୍ଘଦିନ ଅତିକ୍ରାନ୍ତ ହେବା ପରେ ସହସା ଏକ ଅଶୁଭ-ଶକ୍ତିର ଆବିର୍ଭାବ ଘଟେ, ଯାର ପରିଣତି "କଳାପାହାଡ଼" ନାମରେ ଜଣେ ହିନ୍ଦୁଧର୍ମବିଦ୍ୱେଷୀ ଓ ହିନ୍ଦୁ ଦେବଦେବୀଗଣଙ୍କର ଧ୍ୱଂସସାଧକ ବିଧର୍ମୀ ଯବନର ଅଭ୍ୟୁଦୟ; ଯାର ଫଳଶ୍ରୁତି ଦେବଦେବୀଙ୍କର ମନ୍ଦିର ଧ୍ୱଂସସାଧନ ଓ ହିନ୍ଦୁମାନଙ୍କର ପ୍ରତିଷ୍ଠିତ ଦେବଦେବୀ ବିଗ୍ରହର ବିଲୁପ୍ତିସାଧନ । ସେହି କଳାପାହାଡ଼ର ପ୍ରବଳ ପ୍ରତାପରେ ଓ ଉତ୍ପୀଡ଼ନରେ ଲୋକଚକ୍ଷୁ ଅନ୍ତରାଳରେ ଶ୍ରୀଗୋପୀନାଥ ଗଭୀର ରାତ୍ରିରେ ଏଠାରୁ ପ୍ରାୟ ତିନି ବା ଚାରିକ୍ରୋଶ ଦୂରବର୍ତ୍ତୀ 'ଆରମଳା' ଗ୍ରାମର ଏକ ପୁଷ୍କରିଣୀରେ ନିଜକୁ ଲୁକ୍କାୟିତ ରଖନ୍ତି । ଏଣେ ମନ୍ଦିରର ପରିଚାଳକ ଓ ସେବକଗଣ ଶ୍ରୀବିଗ୍ରହଙ୍କୁ ଦେଖିବାକୁ ନ ପାଇ ଏବଂ ନାନାପ୍ରକାର ତତ୍ପରତା ପ୍ରକାଶପୂର୍ବକ ଓ ଶେଷରେ ବ୍ୟର୍ଥ ମନୋରଥ ହୋଇ ବିମର୍ଷ ଓ ବିଷଣ୍ଣ ଅବସ୍ଥାରେ କାଳାତିପାତ କରିବାକୁ ଲାଗିଲେ । ଘଟଣା ଚକ୍ରରେ ସେହି ପୁଷ୍କରିଣୀ ପଙ୍କଭରରେ ପୂର୍ଣ୍ଣ ହୋଇଯିବାରୁ ଏବଂ ସ୍ଥାନୀୟ ଜନଗଣଙ୍କର ବ୍ୟବହାରର ଅନୁପଯୁକ୍ତ ହେବାରୁ ସେହି ଗ୍ରାମର ଲୋକେ ପୁଷ୍କରିଣୀଟିର ସଂସ୍କାର-ସାଧନ ସଂକଳ୍ପ କରନ୍ତି । ତଦନୁଯାୟୀ ଗ୍ରାମୀଣ ବ୍ୟକ୍ତିମାନେ ଯେତେବେଳେ ସଂସ୍କାର-କାର୍ଯ୍ୟରତ, ସେତେବେଳେ ସହସା ଜନୈକ ଶ୍ରମିକର କୋଦାଳ ଆଘାତ ଶ୍ରୀ ବିଗ୍ରହଙ୍କର ପୃଷ୍ଠଦେଶରେ ଲାଗେ; ଫଳରେ ପୃଷ୍ଠଦେଶରୁ କିଞ୍ଚିତ୍ ଅଂଶ ବିଚ୍ୟୁତ ହୋଇ ସର୍ବସମକ୍ଷରେ ପ୍ରକାଶମାନ ହେବାରୁ ସମସ୍ତେ ସାବଧାନ ଓ

ସଯତ୍ନରେ ପୂର୍ଣ୍ଣାବୟବ ଉତ୍ତୋଳନ କରି ଦେଖନ୍ତି ଯେ, ତାହା ହେଉଛି ଆମ୍ଭର ଶ୍ରୀରେମୁଣାର ପ୍ରପୂଜିତ ଶ୍ରୀଗୋପୀନାଥ-ବିଗ୍ରହ ।

ଏହି ଶୁଭସମ୍ବାଦ ସର୍ବତ୍ର ପ୍ରଘଟ ହୋଇପଡ଼େ । ତତ୍‌ପରେ ଶ୍ରୀମନ୍ଦିରର ସେବକଗଣ ପରମୋତ୍ସାହରେ ଶ୍ରୀବିଗ୍ରହଙ୍କୁ ସେଠାରୁ ଖୋଳ-କରତାଳ ସହଯୋଗେ ଜଗନ୍ମଙ୍ଗଳ ଶ୍ରୀହରିନାମ ସଂକୀର୍ତ୍ତନ ପୂର୍ବକ ଶ୍ରୀମନ୍ଦିରରେ ସଂସ୍ଥାପିତ କଲେ । ଅନନ୍ତର ମହାସ୍ନାନାଦି ବୈଦିକ ପ୍ରକ୍ରିୟାରେ ଅଭିଷେକାନ୍ତେ ମହାମହୋତ୍ସବର ମାଧ୍ୟମେ ପୂର୍ବସେବା ପୁନରନୁଷ୍ଠିତ ହୋଇଆସୁଅଛି । ଶ୍ରୀ ଗୋପୀନାଥଙ୍କର ଶ୍ରୀରେମୁଣା ଆଗମନ କିଞ୍ଚିଦଧିକ ସାତଶହ ବର୍ଷ ହେଲଣି ।

ପୌରାଣିକ ପ୍ରମାଣାନୁସାରେ ଜଣାଯାଏ ଯେ, 'ବାଣାସୁର' ନାମକ ମହୀପତି ଶ୍ରୀରାମଚନ୍ଦ୍ରଙ୍କ କର୍ତ୍ତୃକ ଖୋଦିତ ସପ୍ତଶର ନଦୀତୀରରେ ଗର୍ଗମୁନି କର୍ତ୍ତୃକ ଆବିଷ୍କୃତ ଶିବଲିଙ୍ଗଙ୍କର ପୂଜା ପ୍ରତିଷ୍ଠା କରିଥିଲେ । ସେ ମଧ୍ୟ ଅଦ୍ୟାପି ପ୍ରପୂଜିତ ହେଉଛନ୍ତି । ପରବର୍ତ୍ତୀ ବୈଭବଗୁଡ଼ିକରେ ଏ ସମ୍ପର୍କରେ ବିସ୍ତୃତ ଆଲୋଚନା କରିବାର ବାସନା ରହିଲା ।

ଦୁଇ ଶତବର୍ଷ ପୂର୍ବେ ଶ୍ରୀ କୃଷ୍ଣଚରଣ ଦାସ ରଚିତ ଶ୍ରୀଶ୍ରୀ ଶ୍ୟାମାନନ୍ଦ ପ୍ରକାଶ ଗ୍ରନ୍ଥରେ ବର୍ଣ୍ଣିତ ସଂକ୍ଷିପ୍ତ ଶ୍ରୀଶ୍ରୀ ଗୋପୀନାଥଙ୍କର ଇତିବୃତ୍ତ—

ତ୍ରେତୟା ଯୁଗେତେ ରାମ ବନବାସେ ଗେଲ ।
ସୀତାଦେବୀ ସଙ୍ଗେ ଆର ଲକ୍ଷ୍ମଣକେ ନିଲ ।।
ବୁଲିତେ ବୁଲିତେ ଚିତ୍ରକୂଟେ ପ୍ରବେଶିଲ ।
ସୀତାଦେବୀ ଲୈୟା ବଟମୂଲେତେ ରହିଲ ।।
ତବେ ରାମ ସୀତା କାଛେ କହେନ ବଚନ ।
ଏଇ ଏକ ସ୍ଥାନ ଆମାର ଶୁନ ପ୍ରିୟୋତ୍ତମ ।।
ଦ୍ୱାପରେର ରୂପ କଲିଯୁଗେ ଏଥା ହବେ ।
ଗୋପୀନାଥ ନାମ ଆମାର ଅବଶ୍ୟ ହଇବେ ।।
ଶୁନି ସୀତା ଠାକୁରାନୀ ବଲେନ ବଚନେ ।
କେମନ ସ୍ୱରୂପ ଆମି ଦେଖିବ ନୟନେ ।।
ଶୁନି ରଘୁନାଥ ଅତି ଆନନ୍ଦିତ ହୈଲ ।
ଏକଟି ପାଷାଣ ପ୍ରଭୁ ତାହାଇ ଆନିଲ ।।
ସୀତାକେ ନୟନ ବୁଜିତେ ଆଜ୍ଞା କୈଲ ।
ପ୍ରଭୁ ଆଜ୍ଞା ପାୟା ସୀତା ନୟନ ବୁଜିଲ ।।

ତବେ ଶରମୁଖେ ଲିଖେନ ଶ୍ରୀରଘୁନନ୍ଦନ ।
ବୃନ୍ଦାବନେ ଫିରେ ଯେନ ଶ୍ରୀନନ୍ଦନନ୍ଦନ ।।
ବଲେ ଦେଖ ପ୍ରାଣପ୍ରିୟେ ! ନୟନ ଫେଡ଼ିୟା ।
ବ୍ରଜେନ୍ଦ୍ରନନ୍ଦନ ଏଇ ଆଛେନ ବସିୟା ।।
ରାମ ଆଜ୍ଞା ପାଇୟା ସୀତା ନୟନ ଫେଡ଼ିଲ ।
ଗୋପୀନାଥ ମୂର୍ତ୍ତି ଦେଖି ମୂର୍ଚ୍ଛିତ ପଡ଼ିଲ ।।
କତକ୍ଷଣେ ଜ୍ଞାନ ପାୟା ରହିଲ ନିରୂପି ।
କୋଟି କୋଟି ଚନ୍ଦ୍ର ଜିନି ମୁଖ ଅଛେ ବ୍ୟାପି ।।
ଶ୍ୟାମମେଘ କାନ୍ତି ବିଶେ ଅତି ମନୋହର ।
ଦେଖି ସୀତା ଅଙ୍ଗ କାମବାଣେ ଥରଥର ।।
ରାମ କହେ ଶୁନ ପ୍ରିୟେ ଜନକ ନନ୍ଦିନୀ ।
ସର୍ବାଙ୍ଗ ଲିଖିନୁ ଆମି ନେତ୍ର ଲିଖ ତୁମି ।।
ରାମ ଆଜ୍ଞା ଶୁନି ସୀତା ଧୈର୍ଯ୍ୟ ଧରିଲ ।
ଅତି ଆନନ୍ଦେତେ ବେନି ନେତ୍ର ବାନାଇଲ ।।
ତବେ ଗୋପୀନାଥେ ବଟମୂଲେତେ ଥାପିଲ ।
ସେଖାନ ହଇତେ ତିନିଜନା ଚଲି ଗେଲ ।।
ଏକଦିନେ ବଶିଷ୍ଠମୁନି ସେଖାନେ ମିଲିଲ ।
ବଟମୂଲେ ମୂର୍ତ୍ତି ଦେଖି ଆଚମ୍ବିତ ହେଲ ।।
ଧ୍ୟାନେତେ ଜାନଲ ରଘୁନାଥେର ନିର୍ମାଣ ।
ଦ୍ୱାପରେତେ ଏଇରୂପ ହବେ ଭଗବାନ ।।
ଏ ତ ବିଗ୍ରହିୟା ମୁନି ଶିଷ୍ୟେ ଆଜ୍ଞା କୈଲ ।
ଏଇ ସେବା ତୋମାରେ ସମର୍ପଣ କରଗେଲ ।।
ମନ୍ଦିର ବାନାଇୟା ତାହାତେ ଥାପିଲ ।
ଶିଷ୍ୟେ ଆଜ୍ଞା କରି ମୁନି ଅନ୍ତର୍ଦ୍ଧାନ ହୈଲ ।।
ରେମୁଣାତେ ଖ୍ୟାତି ଶ୍ରୀଗୋପୀନାଥ ନାମ ।
ମହାମହୋତ୍ସବ ସେଥା ହୈଲ ସେଇ ସ୍ଥାନ ।।

ମୂକଂ କରୋତି ବାଚାଳଂ ପଙ୍ଗୁମ୍ ଲଂଘୟତେ ଗିରିମ୍ ।
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦ ମାଧବମ୍ ।।

।। ଇତି ଶ୍ରୀ ପ୍ରଥମ ବୈଭବ ।।

———

# ଦ୍ୱିତୀୟ ବୈଭବ

## ଗ୍ରାମ୍ୟଦେବୀ-ଶ୍ରୀରାମଚଣ୍ଡୀ ତତ୍ତ୍ୱ

''ଏକୈବାହଂ ଜଗତ୍ୟତ୍ର ଦ୍ୱିତୀୟା କା ମମାପରା ।
ଏଷା ସଂପୂଜିତା ଭକ୍ତ୍ୟା ସର୍ବଜ୍ଞତ୍ୱଂ ପ୍ରଯଚ୍ଛତି ।।''

ବେଦାନ୍ତ ଦର୍ଶନର ପ୍ରଥମ ଅଧ୍ୟାୟରେ ଗୋଟିଏ ସୂତ୍ର ଅଛି । ''କମ୍ପନାତ'' । ପରଂବ୍ରହ୍ମଙ୍କ ଭୟରେ ବିଶ୍ୱଜଗତ ପ୍ରକମ୍ପିତ । କଠୋପନିଷଦରେ ଉକ୍ତ ହୋଇଛି– 'ମହଦ୍‌ଭୟଂ ବଜ୍ରମୁଦ୍ୟତମ ।' ଉଦ୍ୟତ ବଜ୍ରନ୍ୟାୟ ସେ ମହାଭୟଙ୍କର । ତାହାଙ୍କ ଭୟରେ ସୂର୍ଯ୍ୟ ଉଦିତ ହୁଅନ୍ତି, ଅଗ୍ନି ପ୍ରଜ୍ୱଳିତ ହୁଏ, ବାୟୁ ପ୍ରବାହିତ ହୁଏ, ଯମ ପର୍ଯ୍ୟନ୍ତ କମ୍ପିତ ହୁଅନ୍ତି । ବ୍ରହ୍ମର ଏହି ଭୟଙ୍କରୀ ଶକ୍ତି ହିଁ ଚଣ୍ଡୀ । 'ଚଡ଼ି' ଧାତୁର ଅର୍ଥ କୋପ କରିବା । ଚଣ୍ଡୀ ଅର୍ଥ କୋପମୟୀ । ଶରଣାଗତ ଭକ୍ତଙ୍କୁ ଆସୁରିକ ଆଘାତରୁ ରକ୍ଷା ପାଇଁ ବ୍ରହ୍ମଶକ୍ତି ଯେତେବେଳେ ଭୟଙ୍କରୀ ମୂର୍ତ୍ତି ଧାରଣ କରନ୍ତି, ସେତେବେଳେ ସେ 'ଚଣ୍ଡିକା' ।

ଗୁପ୍ତବତୀ ଟୀକାରେ ଚଣ୍ଡୀ ଶବ୍ଦର ଅର୍ଥ ଅନ୍ୟ ପ୍ରକାର ଦେଖାଯାଏ । ''ଚଣ୍ଡୀ ନାମ ପରବ୍ରହ୍ମଣଃ ପଟ୍ଟମହିଷୀ ଦେବତା । ଚଣ୍ଡୀ ପରବ୍ରହ୍ମଙ୍କର ପଟ୍ଟମହିଷୀ ଦେବୀ । ଦେବୀ କହିଲେ ପରମଦେବଙ୍କର ପ୍ରଧାନାଶକ୍ତି ଉଦ୍ଦିଷ୍ଟ । ବ୍ରହ୍ମ ଶକ୍ତିମାନ, ଚଣ୍ଡୀଶକ୍ତି । ସୃଷ୍ଟିର ପ୍ରାରମ୍ଭରେ ଏକ ଅଦ୍ୱିତୀୟ ବ୍ରହ୍ମ ଦୁଇ ରୂପ ହୋଇଛନ୍ତି– ବ୍ରହ୍ମଧର୍ମୀ ଓ ଚଣ୍ଡୀଧର୍ମୀ । ବ୍ରହ୍ମଙ୍କର ସ୍ୱାଭାବିକ ଶକ୍ତି ପ୍ରଧାନତଃ ତିନୋଟି । ଶ୍ୱେତାଶ୍ୱରୋପନିଷଦ୍ କହନ୍ତି–''ପରସ୍ୟ ଶକ୍ତିଃ ବିବିଧୈବ ଶ୍ରୂୟତେ ସ୍ୱାଭାବିକୀ ଜ୍ଞାନ-ବଳ-କ୍ରିୟା ଚ ।'' ଜ୍ଞାନଶକ୍ତି, ଇଚ୍ଛାଶକ୍ତି ଓ କ୍ରିୟାଶକ୍ତି–ଏହି ପ୍ରକାଶ ଗୋଟିଏ ଅଖଣ୍ଡ ଶକ୍ତିର । ସେହି ଅଖଣ୍ଡିତା ଶକ୍ତିର ନାମ ହିଁ ଚଣ୍ଡୀ । ଆଉ ଏହି ତ୍ରିବିଧ ପ୍ରକାଶମୟୀ ମୂର୍ତ୍ତିର ନାମ ମହାକାଳିକା, ମହାଲକ୍ଷ୍ମୀ ଓ ମହାସରସ୍ୱତୀ ।

ତନ୍ତ୍ରଶାସ୍ତ୍ରଜ୍ଞ ସାଧକମାନେ କହନ୍ତି, ମହାସରସ୍ୱତୀ ଚିଦ୍‌ରୂପା; ମହାଲକ୍ଷ୍ମୀ ସଦ୍‌ରୂପା ଓ ମହାକାଳିକା ଆନନ୍ଦରୂପା । ଏହି ତ୍ରୟର ସମଷ୍ଟି ଶକ୍ତିଭୂତା ସଚ୍ଚିଦାନନ୍ଦ-ମୟୀ ଚଣ୍ଡିକା । ସେଥିପାଇଁ ଭାରତର ମହାଯୋଗୀଗଣ– ଅଧ୍ୟାତ୍ମବିଦ୍ୟାରେ ସିଦ୍ଧ ସାଧକଗଣ ପ୍ରାଗୈତିହାସିକ ଯୁଗରୁ ବିଶ୍ୱ ପ୍ରପଞ୍ଚରେ ବିଚିତ୍ର ରୂପେ ଅଭିବ୍ୟକ୍ତ ଓ ସର୍ବାନୁସ୍ୟୂତ ଏହି ଚୈତନ୍ୟମୟୀ ମହାଶକ୍ତିଙ୍କୁ ନିଜର ଅନ୍ତରର ଅନ୍ତରତମ ପ୍ରଦେଶରେ ଏବଂ ପରିଦୃଶ୍ୟମାନ ଜଗତର ଯାବତୀୟ ବ୍ୟାପାର ମଧ୍ୟରେ ଧ୍ୟାନଯୋଗରେ ପ୍ରତ୍ୟକ୍ଷ ଦର୍ଶନ କରିଛନ୍ତି । ପ୍ରଜ୍ଞା ଦୃଷ୍ଟିରେ ଅନ୍ତରରେ, ବାହାରେ ସର୍ବତ୍ର ତାଙ୍କର

ଆତ୍ମପ୍ରକାଶ ଓ ଲୀଳାବିଳାସ ଆସ୍ୱାଦନ କରିଛନ୍ତି, ତାଙ୍କ ସହିତ ଆତ୍ମୀୟତାବୋଧ ଅନୁଭବ କରିଛନ୍ତି ଓ ଐକାନ୍ତିକତା ଉପଲବ୍ଧି କରିଛନ୍ତି ।

ଭାରତର ବେଦ ଓ ଉପନିଷଦ, ଆଗମ ଓ ତନ୍ତ୍ର, ପୁରାଣ ଓ ଇତିହାସ, କାବ୍ୟ ଓ ଉପନ୍ୟାସ ଏହି ଅସଂଖ୍ୟ ତତ୍ତ୍ୱଦର୍ଶୀ ମହାଯୋଗୀଙ୍କର କାହାଣୀ ବର୍ଣ୍ଣନ କରିଛନ୍ତି । ଯେଉଁମାନେ ବୈଜ୍ଞାନିକ ଗବେଷଣା ଓ ଦାର୍ଶନିକ ଯୁକ୍ତି ବିଚାରର ଅନୁସନ୍ଧେୟ ଚରମ ତତ୍ତ୍ୱକୁ କେବଳ ମାତ୍ର ଧ୍ୟାନରେ ଓ ସମାଧିଯୋଗରେ ସାକ୍ଷାତ୍ ଉପଲବ୍ଧି କରିନାହାନ୍ତି, ତାହାଙ୍କୁ ପ୍ରେମଭକ୍ତି ଯୋଗରେ ବାସ୍ତବ ଜୀବନର ବ୍ୟାବହାରିକ କ୍ଷେତ୍ରକୁ ଓହ୍ଲାଇ ଆଣି ତାଙ୍କ ସହିତ ଏକାନ୍ତ ଅନ୍ତରଙ୍ଗ ସମ୍ବନ୍ଧ ମଧ୍ୟ ଅନୁଭବ ଓ ଆସ୍ୱାଦନ କରିଛନ୍ତି । ବିଶ୍ୱ ପ୍ରପଞ୍ଚର ମୂଳତତ୍ତ୍ୱ ସେହି ଚୈତନ୍ୟମୟୀ ମହାଶକ୍ତି ବା ମହାଶକ୍ତିମୟ ପୁରୁଷୋତ୍ତମଙ୍କୁ ସେମାନେ ସକଳ ଶ୍ରେଣୀର ନରନାରୀର ହୃଦୟ, ମନ ଓ ବୁଦ୍ଧି ସମ୍ମୁଖରେ ନିତାନ୍ତ ନିଜଜନ ରୂପେ ସମୁପସ୍ଥିତ କରି ସାରା ଭାରତର ଚିନ୍ତାଧାରା, ଭାବଧାରା ଓ ଜୀବନଧାରାକୁ ଜଡ଼ର ଓ ବହୁତ୍ୱର ମୋହରୁ ଉଦ୍ଧାର କରି ଉନ୍ନତ ଆଧ୍ୟାତ୍ମିକ ସ୍ତରରେ ପ୍ରବାହିତ କରିଛନ୍ତି ।

ଶ୍ରୀଗୀତାର ଭାଷାରେ ଜଗତର ମୂଳତତ୍ତ୍ୱକୁ ସେମାନେ କେବଳ—

"ଗତିର୍ଭର୍ତ୍ତା ପ୍ରଭୁଃ ସାକ୍ଷୀ ନିବାସଃ ଶରଣଂ ସୁହୃତ୍ ।
ପ୍ରଭବ ପ୍ରଳୟଃ ସ୍ଥାନଂ ନିଧାନଂ ବୀଜମବ୍ୟୟମ ।।"

—ରୂପରେ ହିଁ ଦେଖିନାହାନ୍ତି, ଦେଖାଇ ନାହାନ୍ତି । ସେମାନେ ତାହାଙ୍କୁ ସ୍ନେହମୟ ଜନନୀ, ପ୍ରେମମୟ ସ୍ୱାମୀ, କରୁଣାମୟ ପ୍ରଭୁ, ହୃଦୟରଞ୍ଜନ ପୁତ୍ର, ହୃଦୟନନ୍ଦନୀ କନ୍ୟା, ଖେଳସାଥୀ, ରାଜରାଜେଶ୍ୱର, ବିପଦର ତ୍ରାଣକର୍ତ୍ତା ପ୍ରଭୃତି ନାନାଭାବେ ଦେଖିଛନ୍ତି ଓ ବିବିଧଭାବେ ଭାବିଛନ୍ତି, ଅସଂଖ୍ୟ ପ୍ରକାରରେ ଆସ୍ୱାଦନ କରିଛନ୍ତି ଏବଂ ଜନସମାଜକୁ ବିଚିତ୍ରଭାବେ ତାଙ୍କ ସଙ୍ଗେ ନିବିଡ଼ ସମ୍ପର୍କ ସ୍ଥାପନ ଓ ପରମାତ୍ମୀୟତା ଅନୁଭବ କରିବାକୁ ଶିକ୍ଷା ଦେଇଛନ୍ତି । ସେହି ସମସ୍ତ ଜ୍ଞାନୀ, ଯୋଗୀ, ଭକ୍ତ ଓ ପ୍ରେମିକ ମହାସାଧକଗଣଙ୍କର ସାଧନା, ଉପଲବ୍ଧି ଓ ପ୍ରଚାର ପ୍ରଭାବରେ ବିଶ୍ୱପ୍ରପଞ୍ଚର ମୂଳ କାରଣ ସାଧାରଣ ସାଧକଗଣଙ୍କ ପକ୍ଷରେ ମଧ୍ୟ "ଦୂରାତ୍ ସୁଦୂରମ୍" ନୁହେ । ତଦିହ ଗୁହିକେ ଚ । ସମସ୍ତେ ତାହାଙ୍କୁ ନିଜର ବାସ୍ତବ ଜୀବନରେ ଉପଲବ୍ଧି କରିବାର ଅଧିକାରୀ ।

ଶ୍ୱେତାଶ୍ୱତରୋପନିଷଦର ଋଷି ଦ୍ୱିଧାହୀନ କଣ୍ଠରେ ଘୋଷଣା କରିଛନ୍ତି—
"ତେ ଧ୍ୟାନଯୋଗାନୁଗତା ଅପଶ୍ୟନ ଦେବାତ୍ମଶକ୍ତିଂ ସ୍ୱଗୁଣୈର୍ନିଗୂଢ଼ାମ୍ ।"

ଚୈତନ୍ୟମୟ ପରମଦେବରେ ସ୍ୱରୂପଭୂତା ଯେଉଁ ମହାଶକ୍ତି ନିଜର ଅନନ୍ତଗୁଣଦ୍ୱାରା ନିଜର ବିଚିତ୍ର ଆତ୍ମପ୍ରକାଶ, ବିଚିତ୍ର ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ବିଚିତ୍ର ଜ୍ଞାନ, ବଳ, କ୍ରିୟା, ବିଚିତ୍ର ଲୀଳାବିଳାସଦ୍ୱାରା ସ୍ୱପ୍ରସୂତ ଅଶେଷ ବୈଚିତ୍ର୍ୟ ସମାକୀର୍ଣ୍ଣ ବିଶ୍ୱବ୍ରହ୍ମାଣ୍ଡ ମଧ୍ୟରେ ନିଜର ତାତ୍ତ୍ୱିକ ସ୍ୱରୂପକୁ ଚିରକାଳ ନିଜେ ହିଁ ରହସ୍ୟାବୃତ କରି ରଖିଛନ୍ତି, ସେହି ରହସ୍ୟାବୃତ ମହାଶକ୍ତିଙ୍କୁ ମହାଯୋଗୀଗଣ ଯୋଗ ବଳରେ ଅନୁସନ୍ଧାନରତ ଓ ତତ୍ପର ହୋଇ ପ୍ରତ୍ୟକ୍ଷ ଦର୍ଶନ କରିଛନ୍ତି, ଧ୍ୟାନଯୋଗରେ ବିକ୍ଷିପ୍ତ ଚିତ୍ତକୁ ଅବରୋଧ କରି ଏବଂ ମଳବିକ୍ଷାପାବରଣ ମୁକ୍ତ କରି ସେମାନେ ନିଜର ଅଖଣ୍ଡ ଚେତନା ମଧ୍ୟରେ ସେହି ଚୈତନ୍ୟମୟୀ ମହାଶକ୍ତିଙ୍କର ପାରମାର୍ଥିକ ସ୍ୱରୂପର ଉପଲବ୍ଧି କରିଛନ୍ତି ।

ଭାରତର ଏକ ଚିରସ୍ମରଣୀୟା ମହାଯୋଗିନୀ ନାରୀ—ଅମ୍ଭୃନ ଋଷିଙ୍କ କନ୍ୟା ବାଗ୍‌ଦେବୀ, ଏହିପ୍ରକାରେ ଧ୍ୟାନଯୋଗରେ ସମଗ୍ର ବିଶ୍ୱପ୍ରକୃତିର ସହ ଏକାତ୍ମତା ଅନୁଭବ କରି ସ୍ୱତଃସ୍ଫୂର୍ତ୍ତ ଅପୂର୍ବ କବିତ୍ୱପୂର୍ଣ୍ଣ ଭାଷାରେ ସେହି ଅନୁଭୂତିର ଯେଉଁ ବର୍ଣ୍ଣନା ଦେଇଛନ୍ତି, ତାହାହିଁ ଋଗ୍‌ବେଦର 'ଦେବୀସୂକ୍ତ" ବା "ବାକ୍‌ସୂକ୍ତ" ନାମରେ ପ୍ରସିଦ୍ଧ ।

ଯେକୌଣସି ପ୍ରାକୃତିକ ବା ଅପ୍ରାକୃତିକ ଅଭୀଷ୍ଟଲାଭର ସହଜତମ ଉପାୟ ଶକ୍ତିସାଧନାରେ ସୁସିଦ୍ଧି ଲାଭ କରିବା । ତ୍ରେତାଯୁଗରେ ଶ୍ରୀରାମଚନ୍ଦ୍ର ଶକ୍ତିସାଧନାର ପ୍ରବର୍ତ୍ତକ । ମହାଭାରତରେ ମଧ୍ୟ ସର୍ବଶକ୍ତିମାନ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ—

ପରାଜୟାୟ ଶତ୍ରୁଣାଂ
ଦୁର୍ଗାସ୍ତୋତ୍ରମୁଦୀରୟ ।"
(ମହାଭାରତ ଭୀଷ୍ମପର୍ବ—୨୩।୨)

ଶତ୍ରୁଗଣଙ୍କର ପରାଜୟ ଲାଗି ଶ୍ରୀଦୁର୍ଗାସ୍ତୋତ୍ର ନିତ୍ୟପାଠ୍ୟ । ସମାଧିବୈଶ୍ୟ ଓ ଶକ୍ତି-ସାଧନାରେ ସିଦ୍ଧିଲାଭ କରି ଆତ୍ମସାକ୍ଷାତକାର ଓ ବ୍ରହ୍ମଜ୍ଞାନ ପ୍ରାର୍ଥନା କଲେ—

"ସୋଽପି ବୈଶ୍ୟସ୍ତତୋ ଜ୍ଞାନଂ
ବବ୍ରେ ନିର୍ବିଣ୍ଣମାନସଃ ।"

ବିଷୟସୁଖ ଓ ମୋକ୍ଷସୁଖ ଛଡ଼ା ଆହୁରି ଗୋଟିଏ ପରମ ସଂପଦ ମହାଶକ୍ତି ଚଣ୍ଡୀ ପ୍ରଦାନ କରିପାରନ୍ତି । ତାହା ଦାନକରନ୍ତି ଅନ୍ତରଙ୍ଗାଶକ୍ତି ଯୋଗମାୟା ରୂପରେ । ସଂପ୍ରେମ ସଂପଦଟି ହେଲା—ଶ୍ରୀକୃଷ୍ଣ ଚରଣରେ ପ୍ରେମଭକ୍ତି । ଏହାର ଉତ୍କୃଷ୍ଟ ଦୃଷ୍ଟାନ୍ତ ଶ୍ରୀବୃନ୍ଦାବନରେ ଶ୍ରୀଗୋପୀଗଣ ଶ୍ରୀକୃଷ୍ଣଙ୍କୁ ପତିରୂପରେ ଲାଭକରିବା ପାଇଁ ଯୋଗମାୟା ଦେବୀଙ୍କର ଅର୍ଚ୍ଚନାରେ ବ୍ରତୀ ହୋଇଥିଲେ !

"ହେମନ୍ତେ ପ୍ରଥମେ ମାସି
ନନ୍ଦବ୍ରଜ କୁମାରିକାଃ ।
ଚେରୁହ ବିଷ୍ୟଂ ଭୁଞ୍ଜାନାଃ
କାତ୍ୟାୟନ୍ୟର୍ଚ୍ଚନବ୍ରତମ୍ ।।

(ଶ୍ରୀମଦ୍ ଭଗବତ ୧୦।୨୨।୧)

ହେମନ୍ତ ଋତୁରେ ପ୍ରଥମ ମାସରେ ନନ୍ଦ ବ୍ରଜବାସିନୀ ଗୋପବାଳାଗଣ ହବିଷ୍ୟାନ୍ନ ଭୋଜନାଦି ନିୟମପାଳନ ପୂର୍ବକ ଶ୍ରୀକାତ୍ୟାୟନୀ ବ୍ରତ ଅନୁଷ୍ଠାନ କରିଥିଲେ । ସେମାନେ କି ମନ୍ତ୍ରରେ ନିତ୍ୟ ପୂଜା କରୁଥିଲେ, ତାହା ଶ୍ରୀମଦ୍ ଭଗବତ ଉଲ୍ଲେଖ କରିଛନ୍ତି–

କାତ୍ୟାୟନି ମହାମାୟେ ମହାଯୋଗିନ୍ୟଧୀଶ୍ୱରି ।
ନନ୍ଦଗୋପସୁତଂ ଦେବି ପତିଂ ମେ କୁରୁତେ ନମ ।।

ଅର୍ଥାତ୍–ହେ ଦେବି କାତ୍ୟାୟନି ! ହେ ମହାମାୟେ ! ହେ ମହାଯୋଗଶକ୍ତିଶାଳିନି ! ହେ ସମଗ୍ର ଲୀଳାର ଅଧୀଶ୍ୱରି ! ଆପଣ ନନ୍ଦଗୋପସୁତ ଶ୍ରୀକୃଷ୍ଣଙ୍କୁ ଆମ୍ଭମାନଙ୍କର ପତି କରିଦିଅନ୍ତୁ । ଆପଣଙ୍କୁ ପ୍ରଣାମ ।

ଏହି ମନ୍ତ୍ର ଜପ କରି ସେମାନେ ଯୋଗମାୟା ଦେବୀଙ୍କର ଅର୍ଚ୍ଚନା କରିଥିଲେ ମାସବ୍ୟାପୀ । ଏହି ଅର୍ଚ୍ଚନା ସେମାନଙ୍କର ଗଭୀର କୃଷ୍ଣପ୍ରେମର ପରିଚାୟକ । ଏହି ପ୍ରେମଭକ୍ତି ବଳରେ ଓ ଯୋଗମାୟାଦେବୀଙ୍କର ଅଶେଷ କରୁଣାବଳରେ ସେମାନେ ଶ୍ରୀକୃଷ୍ଣଙ୍କର ସାକ୍ଷାତକାର ଲଭ କରିଥିଲେ ଏବଂ ଜଗତ୍‌ପତିଙ୍କୁ ପ୍ରାଣପତି ରୂପେ ନିଜଜନ କରିନେଇ ପାରିଥିଲେ । ଏହି ମହାମାୟା ଶ୍ରୀହରିଙ୍କ ଚରଣକମଳରେ ପ୍ରେମଭକ୍ତି ଧନର ମଧ୍ୟ ପ୍ରଦାତ୍ରୀ । ଯେଉଁ ସ୍ୱରୂପରେ ପ୍ରେମଭକ୍ତିଦାନ କରନ୍ତି, ଶ୍ରୀକୃଷ୍ଣ ଇଚ୍ଛାରେ ଶ୍ରୀବୃନ୍ଦାବନରେ ନନ୍ଦାଳୟରେ ଯଶୋଦାଙ୍କ ପାର୍ଶ୍ୱେ ପ୍ରକଟିତ ହୋଇଥିଲେ । ତାଙ୍କର ଏହି ଅବତାରର କଥା ମୂଳ ଶ୍ରୀଚଣ୍ଡୀ ଗ୍ରନ୍ଥରେ ଉକ୍ତ ଅଛି । "ନନ୍ଦଗୋପ ଗୃହେ ଜାତା ଯଶୋଦାଗର୍ଭସମ୍ଭୂତା ।" ଏହି ସ୍ୱରୂପକୁ ଶ୍ରୀମଦ୍ ଭଗବତ "ଏକାନଂଶା" "କୃଷ୍ଣାନୁଜା" ନାନା ପରିଚୟରେ ପ୍ରକାଶ କରିଅଛନ୍ତି ।

ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀପାଦ କହନ୍ତି, ଏ ଅନ୍ତରଙ୍ଗା ଶକ୍ତି- ଚିଚ୍ଛକ୍ତିବୃତ୍ତି ସ୍ୱରୂପଭୂତା ଯେଉଁ ଶକ୍ତି ଦେହାଭିମାନୀ ଜୀବକୁ ଆବୃତ କରନ୍ତି, ସେହି ବହିରଙ୍ଗାଶକ୍ତି ଏ ନୁହନ୍ତି ।

ଶ୍ରୀଳ କବିରାଜ ଗୋସ୍ୱାମୀଙ୍କ ଭାଷାରେ—

"ଯୋଗମାୟା ଚିଚ୍ଛକ୍ତି ବିଶୁଦ୍ଧ ସତ୍ତ୍ୱ ପରିଣତି,
ତାର ଶକ୍ତି ଲୋକେ ଦେଖାଇତେ ।
ଏଇ ରୂପରତନ, ଭକ୍ତଗଣେର ଗୂଢ଼ଧନ,
ପ୍ରକଟ କୈଲ ନିତ୍ୟଲୀଲା ହୈତେ ।।

ନିତ୍ୟଲୋକରୁ ଲୀଳାକୁ ପ୍ରପଞ୍ଚରେ ପ୍ରକଟ କରିବାରେ ଏ ହେଲେ ମହା-ସାମର୍ଥ୍ୟଶାଳିନୀ । ଏହି ସ୍ୱରୂପରେ ସେ ଭକ୍ତିଦାତ୍ରୀ ।

ଶ୍ରୀଚଣ୍ଡୀରେ ଦେବଗଣ ସ୍ତବ ମାଧ୍ୟମରେ ଜଗନ୍ମାତାଙ୍କୁ "ସର୍ବସ୍ୟାର୍ତ୍ତିହରେ" ବୋଲି ସମ୍ବୋଧନ କରିଛନ୍ତି । ସମସ୍ତଙ୍କର ସକଳ ପ୍ରକାର ଆର୍ତ୍ତିକୁ ସେ ହରଣ କରନ୍ତି । ଭୋଗୀ ଭୋଗ୍ୟବସ୍ତୁ ପାଇବା ପାଇଁ ନିୟତ ଭୋଗକାମନାର ଆର୍ତ୍ତି, ମୁକ୍ତିକାମୀର ମୁକ୍ତିପ୍ରାପ୍ତି ଲାଗି ସତତ ଆର୍ତ୍ତି, ଜ୍ଞାନୀର ଜ୍ଞେୟବସ୍ତୁ ଲାଭର ବିରାମବିହୀନ ଆର୍ତ୍ତି ଜ୍ଞାପନ ଜଗଜ୍ଜନନୀ ଯୋଗମାୟା ତତ୍‌ତତ୍ ଆର୍ତ୍ତି ଦୂର କରନ୍ତି ।

ଯେଉଁମାନେ ସତ୍ୟ ସତ୍ୟ ଭବରେ ଭୁକ୍ତି ବା ମୁକ୍ତି କିଛିମାତ୍ର ଚାହାନ୍ତି ନାହିଁ, କେବଳ ଶୁଦ୍ଧଭକ୍ତିଯୋଗୀ; ସେମାନଙ୍କର ପ୍ରାର୍ଥନା ହେଲା—ଶ୍ରୀକୃଷ୍ଣଚରଣରେ ନିର୍ମଳା ଶୁଦ୍ଧଭକ୍ତି । ତତ୍‌ପ୍ରାପ୍ତି ଲାଗି ଅପ୍ରାପ୍ତିଜନିତ ଆର୍ତ୍ତି ସେମାନଙ୍କ ଅନ୍ତରରେ ସତତ ପ୍ରବାହିତ । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଭାଷାରେ—

"ଯେନ, ତୋମାର ଘରେ ହୟନି ଆନା
ସେ କଥା ରୟ ମନେ ।
ଯେନ, ଭୁଲେ ନା ଯାଇ ବେଦନା ପାଇ
ଶୟନେ ସ୍ୱପନେ ।"

—ଏହି ପ୍ରପନ୍ନାର୍ତ୍ତି ଦୂର କରି ମହାଦେବୀ ସେମାନଙ୍କର ହୃଦୟରେ ସୁଦୁର୍ଲଭ ପ୍ରେମଭକ୍ତି ମହାସମ୍ପଦ ଦାନ କରିଥାନ୍ତି ।

ଆଦ୍ୟାସ୍ତବରେ ମଧ୍ୟ ଦେଖାଯାଏ—"ସୁଖଦା ମୋକ୍ଷଦା ଦେବୀ ବିଷ୍ଣୁଭକ୍ତି ପ୍ରଦାୟିନୀ ।" ସର୍ବାର୍ତ୍ତିସଂହାରିଣୀ, ସର୍ବବିଧବର ପ୍ରଦାୟିନୀ, ହରିକୃପାସ୍ୱରୂପିଣୀ ଜଗଜ୍ଜନନୀ ମହାଦେବୀ ଜୟଯୁକ୍ତା ହେଉନ୍ତୁ । ମାତୃକରୁଣାର ପ୍ରବଳ ପ୍ଲାବନରେ ବିଶ୍ୱଚରାଚର ଧନ୍ୟ ହେଉ, ପୂର୍ଣ୍ଣମନସ୍କାମ ହେଉ; ଆମ୍ଭେମାନେ ତାହାଙ୍କର ରକ୍ତିସମ୍ପଦ ପଙ୍କଜରେ ଭକ୍ତ ପରିପୂର୍ଣ୍ଣ ପ୍ରଣତି ଜଣାଉଛୁ ।

ଏ ପ୍ରସଙ୍ଗରେ ଶ୍ରୀମନ୍ମହାପ୍ରଭୁଙ୍କର ଚୂଡ଼ାନ୍ତ ମତବାଦ ଉଲ୍ଲେଖ ନ କଲେ ଆଲୋଚନାଟି ଅସମ୍ପୂର୍ଣ୍ଣ ରହିଯିବ । ସେଥିଲାଗି ତାଙ୍କର ସଂକ୍ଷିପ୍ତ ଓ ସାରଗର୍ଭକ ଶକ୍ତିବାଦର ଅବତାରଣା ।

ଶକ୍ତିବାଦ ହେଉଛି ଭାରତୀୟ ତନ୍ତ୍ରଶାସ୍ତ୍ରର ଭିତ୍ତି । "ଯାଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସଂସ୍ଥିତା ।" ଏହା ଶକ୍ତିବାଦର ମୂଳମନ୍ତ୍ର । ବେଦର ଭିତ୍ତି ପୁରୁଷବାଦରେ । "ପୁରୁଷ ଏବେଦଂ ସର୍ବ ଯଦ୍‌ଭୂତଂ ଯଚ୍ଚ ଭବ୍ୟମ୍ " ଏହା ପୁରୁଷବାଦର ମୂଳମନ୍ତ୍ର । ଭାରତୀୟ ଆଧ୍ୟାତ୍ମିକ ସମ୍ପଦକୁ ଅଖଣ୍ଡ ଭାବେ ଗ୍ରହଣ କରିବାକୁ ହେଲେ ଶକ୍ତିବାଦ ଓ ପୁରୁଷବାଦର ସୁଷ୍ଠୁ ସମାଧାନ ଓ ସୁସାମଞ୍ଜସ୍ୟ ଏକାନ୍ତ ଅପରିହାର୍ଯ୍ୟ । ଭାରତୀୟ ପ୍ରଧାନ ଦର୍ଶନଶାସ୍ତ୍ର ସମୂହରେ ଏହି ସମାଧାନ ପ୍ରତିଷ୍ଠାର ପ୍ରଚେଷ୍ଟା ହିଁ ପରିସ୍ଫୁଟ । ପୁରୁଷ ଶକ୍ତିମାନ, ପ୍ରକୃତି ଶକ୍ତିଙ୍କର ହିଁ ନାମାନ୍ତର । ଅଦ୍ୱୈତ ବେଦାନ୍ତରେ—"ଏକମେବ-ଦ୍ୱିତୀୟଂ" ବ୍ରହ୍ମଙ୍କର ପ୍ରତିଷ୍ଠା ।

ସାଂଖ୍ୟଦର୍ଶନରେ ପ୍ରକୃତି ଓ ପୁରୁଷ ଉଭୟଙ୍କର ହିଁ ପ୍ରାଧାନ୍ୟ ପରିଦୃଷ୍ଟ ହୁଏ । ବିଶିଷ୍ଟାଦ୍ୱୈତବାଦରେ ପ୍ରକୃତିସମ୍ପର୍କିତ ପୁରୁଷୋତ୍ତମ ଚରମତତ୍ତ୍ୱ । ଶ୍ରୀଗୀତାରେ ମଧ୍ୟ ପୁରୁଷୋତ୍ତମବାଦର ପ୍ରାଧାନ୍ୟ । ସୁତରାଂ ପ୍ରକୃତି ଓ ପୁରୁଷ ଉଭୟଙ୍କର ସ୍ୱାଧୀନତା ସମାନ ସ୍ୱୀକୃତ ନ ହେଲେ ଉଭୟଙ୍କର ମିଳନର ଆସ୍ୱାଦନ ସୁଷ୍ଠୁ ସୁଖାବହ ହୁଏନାହିଁ । ଶ୍ରୀଗୀତାରେ ଶ୍ରୀଭଗବାନଙ୍କର ଆଉ ଗୋଟିଏ ସ୍ୱକୀୟା ପ୍ରକୃତିର (ସ୍ୱାଂ ପ୍ରକୃତିମ୍) କଥା ଉଲ୍ଲିଖିତ । କିନ୍ତୁ ଶ୍ରୀଗୀତା ତାହାଙ୍କ ସଙ୍ଗେ ପୁରୁଷର କୌଣସି ବିଶେଷ ମିଳନର ଆସ୍ୱାଦନ କରି ନାହାନ୍ତି । କରିଥିଲେ ହୁଏତ ଏ ପଥରେ ସମାଧାନର ସନ୍ଧାନ ମିଳଥାନ୍ତା । କିନ୍ତୁ କେହିହେଲେ ଉଭୟଙ୍କୁ ସମମୂଲ୍ୟ ଦେଇନାହାନ୍ତି । ପ୍ରକୃତି-ପୁରୁଷ ଦୁଇ ହିଁ ସ୍ୱାଧୀନ ଓ ସମସାମର୍ଥ୍ୟ ବିଶିଷ୍ଟ ନ ହେଲେ ରସଶାସ୍ତ୍ର କ୍ଷୁର୍ଣ୍ଣ ହୁଏ । ପ୍ରକତ ସମାଧାନରେ ରସ ଓ ତତ୍ତ୍ୱ ଉଭୟଙ୍କୁ ହିଁ ଅକ୍ଷୁର୍ଣ୍ଣ ରଖିବାକୁ ହେବ । ଏହି ବିରୋଧର ସମାଧାନ ହୋଇପାରେ ଯଦି ଶକ୍ତି ଓ ଶକ୍ତିମାନ୍ ଦୁଇ ହୋଇ ମଧ୍ୟ ଏକ ହୁଅନ୍ତି । ଏକ ହୋଇ ମଧ୍ୟ ଦୁଇ ହୁଅନ୍ତି—ଏ କଥାର ତାତ୍ପର୍ଯ୍ୟ ଏହା ହିଁ ଯେ, ଏକ ବସ୍ତୁ ଦୁଇଭାଗ ହେବ ଏବଂ ଦୁଇ ମିଳି ସେମାନଙ୍କର ଅଖଣ୍ଡତା ଅକ୍ଷୁର୍ଣ୍ଣ ରହିବ, ସେମାନଙ୍କର ଗୋଟିକର ସତ୍ତା ସାର୍ଥକ ହେବ ଅପର ମାଧ୍ୟମରେ । ଆଲୋକର ସତ୍ତା ଯେପରି ସାର୍ଥକ ହୁଏ ଚକ୍ଷୁ ମାଧ୍ୟମରେ, ଚକ୍ଷୁର ସତ୍ତା ଯେପରି ସାର୍ଥକତା ଲାଭ କରେ ଆଲୋକ ମାଧ୍ୟମରେ ସେହିପରି ଆଲୋଚ୍ୟ ସମସ୍ୟାର ସୁଷ୍ଠୁ ସମାଧାନ ଅନୁଧ୍ୟାନ କରିଛନ୍ତି ଶ୍ରୀମନ୍ମହାପ୍ରଭୁ ଓ ତଦନୁଗାମୀ ଗୌଡ଼ୀୟ ବୈଷ୍ଣବାଚାର୍ଯ୍ୟଗଣ । ଶ୍ରୀଶ୍ରୀ ରାଧା-କୃଷ୍ଣ ତତ୍ତ୍ୱରେ ହିଁ ଶକ୍ତି ଓ ଶକ୍ତିମାନଙ୍କର ସମସ୍ୟାର ସମ୍ୟକ ସମାଧାନ ହୋଇଛି ।

ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଶକ୍ତି ; କିନ୍ତୁ ରାଧାଭିନ୍ନ କିଛି ହିଁ ନୁହନ୍ତି । ଶ୍ରୀକୃଷ୍ଣ ଶ୍ରୀରାଧାଶକ୍ତିରେ ଶକ୍ତିମାନ । ପୁଣି ଶ୍ରୀକୃଷ୍ଣ ବ୍ୟତିରେକେ ରାଧା କିଛି ନୁହନ୍ତି । ଯେପରି ରସନା ମାଧ୍ୟମରେ ଶର୍କରାର ମାଧୁର୍ଯ୍ୟର ପ୍ରକାଶ; ଶର୍କରା ମାଧ୍ୟମରେ ରସନାର ମଧୁର ରସାନୁଭୂତି—ଶକ୍ତିର ବିଳାସ, ଠିକ୍ ସେହିପରି ତତ୍ତ୍ୱର ଅଖଣ୍ଡତା ମଧ୍ୟରେ ରସର ଅଖଣ୍ଡତା । ଗୌଡ଼ୀୟ-ଆଚାର୍ଯ୍ୟଗଣ ଅନୁଭବ କରିଛନ୍ତି ଶକ୍ତିର ମୂଳ ସ୍ୱରୂପ ବା ସ୍ୱରୂପାଶକ୍ତିହ୍ଲାଦିନୀ ଶ୍ରୀରାଧାଙ୍କୁ । ଏଇଟି ହିଁ ଶକ୍ତିର ଅନ୍ତରଙ୍ଗା ସ୍ୱରୂପ ।

ସୃଜନୀ-ପାଳନୀ ବୃତ୍ତି ଏହି ଶକ୍ତିର ବହିରଙ୍ଗା ସ୍ୱରୂପ । ସୃଜନୀ-ପାଳନୀ ଶକ୍ତି ମୂର୍ତ୍ତି ହେଲେ ଶ୍ରୀ ଚଣ୍ଡିକା ଏବଂ ହ୍ଲାଦିନୀ-ଶକ୍ତିର ମୂର୍ତ୍ତି ହେଉଛନ୍ତି ଶ୍ରୀରାଧିକା । ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ସମସ୍ତ ଇଛାର ଆଧାର—"କୃଷ୍ଣେର ଯତେକ ଇଛା ରାଧାତେ ଇ ରହେ" (ଶ୍ରୀ ଚୈ.ଚ.); ପୁଣି ଶ୍ରୀରାଧାଙ୍କର ଆରାଧନା ହେଲା—କୃଷ୍ଣବାଞ୍ଛାପୂର୍ତ୍ତି—"କୃଷ୍ଣ-ବାଞ୍ଛା ପୂର୍ତ୍ତି ରୂପ କରେ ଆରାଧନେ ।" (ଶ୍ରୀ ଚୈ. ଚ) । ଗୋଟିକର ଦ୍ୱାରା ଅପରର ପୂର୍ଣ୍ଣତା, ଦୁଇଟି ମିଳିତ ହୋଇ ଅଦ୍ୱୟତତ୍ତ୍ୱର ଅଖଣ୍ଡତା । ଶ୍ରୀରାଧାଙ୍କର ସ୍ୱାଧୀନତା ଶ୍ରୀକୃଷ୍ଣଙ୍କଠାରେ । ଶ୍ରୀରାଧା ଶ୍ରୀକୃଷ୍ଣର ଧନ, ଶ୍ରୀକୃଷ୍ଣଙ୍କର ଆନନ୍ଦସ୍ୱରୂପତା ଶ୍ରୀରାଧାଙ୍କଠାରେ, ରାଧା-ଧନରେ ଧନୀ ଶ୍ରୀକୃଷ୍ଣ, କୃଷ୍ଣଧନରେ ଶ୍ରୀରାଧା ଧନୀ—ଏହାହିଁ ପ୍ରେମରସର ସର୍ବୋତ୍ତମ ଭୂମିକା । ଏହି ଭୂମିକାରେ ଶକ୍ତି ଓ ଶକ୍ତିମାନ ସମସ୍ୟାର ସୁସମାଧାନ । ପୁରୁଷ-ପ୍ରକୃତି-ରହସ୍ୟର ଅର୍ଗଳ ଉଦ୍‌ଘାଟନ । ଶ୍ରୀକୃଷ୍ଣ ରସସ୍ୱରୂପ, ଶ୍ରୀରାଧା ରସଶକ୍ତି । ରସ ଦୁଇ ହୋଇ ମଧ୍ୟ ବସ୍ତୁତଃ ଏକ । ତତ୍ତ୍ୱତଃ ଏକ ହୋଇ ବି ଆସ୍ୱାଦନରେ ଦୁଇ । ଏହି ଦ୍ୱୈତରେ ଏକତ୍ୱ; ଏକତ୍ୱରେ ଦ୍ୱୈତ, ଭେଦରେ ଅଭେଦ, ଅଭେଦରେ ଭେଦ ସର୍ବତୋଭାବେ ପୂର୍ଣ୍ଣତମ ।

ଯଦି ଏହା ରୂପାୟିତ ହୋଇଛି ଏପରି ଗୋଟିଏ ସ୍ୱରୂପ ବିଗ୍ରହରେ, ଯାହାଙ୍କି ଦୃଶ୍ୟତଃ ଏକକ ସତ୍ତା-ବିଶିଷ୍ଟ ଅଥଚ ତାଙ୍କ ମଧ୍ୟରେ ରହିଛି ଦ୍ୱୈତର ବିଳାସ; ତେବେ ଏହି ଏକାୟିତ ଘନୀଭୂତ ବିଗ୍ରହ ହିଁ ହେଲେ ଶ୍ରୀମନ୍ମହାପ୍ରଭୁ ଶ୍ରୀଗୌରହରି । ସେ ଏକାଧାରରେ ଶକ୍ତି ଓ ଶକ୍ତିମାନ, ସେ ଶକ୍ତି କବଳିତ ଶକ୍ତିମାନ, କେବଳ ଶକ୍ତି-ବିଶେଷିତ ଶକ୍ତିମାନ ନୁହନ୍ତି । ଶକ୍ତି ସ୍ୱାୟତ୍ତୀକୃତ ଶକ୍ତିମାନ । ଶକ୍ତିର ମହତ୍ତ୍ୱବଶତଃ ଶକ୍ତିମାନଗ୍ରସ୍ତ । ସୁତରାଂ ଶ୍ରୀଗୌରସୁନ୍ଦରଙ୍କ ମଧ୍ୟରେ ତାଙ୍କର ଶକ୍ତିତତ୍ତ୍ୱ ପୂର୍ଣ୍ଣରୂପେ ସ୍ୱୀକୃତ । ହ୍ଲାଦିନୀଶକ୍ତି ଶକ୍ତିମାନଙ୍କଠାରୁ ନିବିଡ଼ତର ଓ ବ୍ୟାପକତର ତତ୍ତ୍ୱ । ଶ୍ରୀରାଧାଙ୍କ ଦ୍ୱାରା ଶ୍ରୀକୃଷ୍ଣ ଆବରିତ । କୌଣସି ଅଂଶରେ ଭୂମାତ୍ୱ ନ ଥିଲେ ସମ୍ପୂର୍ଣ୍ଣ ଆବରିକା ହେବାର ସମ୍ଭାବନା କେଉଁଠି ?

ଅଦ୍ୱୈତବାଦର "ବ୍ରହ୍ମବିଦ ବ୍ରହ୍ମୈବ ଭବତି ।" ବାଣୀର ମୌଳିକ ସତ୍ୟଟି ମଧ୍ୟ ଶ୍ରୀଗୌରସୁନ୍ଦରଙ୍କର ସ୍ୱରୂପରେ ପ୍ରକଟିତ । ସାଧକ ବ୍ରହ୍ମଭାବନା କରୁ କରୁ

ବ୍ରହ୍ମ ହୋଇଯାଏ । ଏହି ଅଦ୍ୱୈତବାଦର ମୂଳ ସତ୍ୟଟି ହେଲା—ଯେ ଯାହାକୁ ଐକାନ୍ତିକଭାବେ ଚିନ୍ତାକରେ, ସେ ତଦ୍ରୂପ ହି ହୋଇଯାଏ । ଶକ୍ତିମାନ ଶ୍ରୀକୃଷ୍ଣ ସ୍ୱରୂପଶକ୍ତି ଶ୍ରୀରାଧାଙ୍କୁ ଧ୍ୟାନ କରୁ କରୁ ରାଧା ରାଧା ଭାବୁ ଭାବୁ ରାଧା ହୋଇଯାଇଛନ୍ତି । "କିଶୋରୀ ସ୍ମରି ସ୍ମରି" କିଶୋର କିଶୋରୀ ହୋଇଯାଇଛନ୍ତି । ସୁତରାଂ ଅଦ୍ୱୈତଉପାସନାର ମୂଳତତ୍ତ୍ୱଟି ମଧ୍ୟ ଗୃହୀତ ହୋଇଯାଇଛି-ତତ୍ତ୍ୱବାଦର ମୂଳତତ୍ତ୍ୱଟି ମଧ୍ୟ ଗୃହୀତ । ପୁଣି ବେଦର ପୁରୁଷବାଦର ଚରମ ସିଦ୍ଧାନ୍ତ ମଧ୍ୟ ସ୍ୱୀକୃତ ହେଉଛି । କାରଣ ପ୍ରେମ-ପୁରୁଷୋତ୍ତମ ଶ୍ରୀଗୌରସୁନ୍ଦର ଶକ୍ତିମାନ୍ ଶ୍ରୀକୃଷ୍ଣ ଯିଏ ସ୍ୱରୂପରେ ଶ୍ରୀକୃଷ୍ଣଶକ୍ତିକୁ ନିଜ ମଧ୍ୟରେ ପୂର୍ଣ୍ଣଭାବେ ବିଲୀନ କରି ନେଇଛନ୍ତି, ସେହି ସ୍ୱରୂପଟି ହିଁ ଶ୍ରୀଗୌରସୁନ୍ଦର । ପରମା ପ୍ରକୃତି ପରମ ପୁରୁଷବରଙ୍କର ପ୍ରୀତିବିଧାନ କରିବାକୁ ଆସି ଅଙ୍ଗରେ ଅଙ୍ଗ ଏକୀଭୂତ କରି ସର୍ବାଙ୍ଗୀନ ଭାବରେ ନିଜକୁ ହଜାଇ ଦେଇଛନ୍ତି । ସେହି ଶକ୍ତିମାନ ଶ୍ରୀକୃଷ୍ଣ ହିଁ ଶ୍ରୀ ଗୌରସୁନ୍ଦର । ସୁତରାଂ ସର୍ବଶକ୍ତି କ୍ରୋଡ଼ୀକୃତ ପୁରୁଷୋତ୍ତମ ହିଁ ଶ୍ରୀଗୌରରାୟ । ଅତଏବ ତନ୍ତ୍ରର ଶକ୍ତିବାଦ ଓ ବେଦର ପୁରୁଷବାଦ, ଏହି ଦୁହିଁଙ୍କର ଚରମ ଓ ପରମ ସାର୍ଥକତା ଲାଭ କରିଛି ଶ୍ରୀଗୌରସୁନ୍ଦରଙ୍କଠାରେ । ଶ୍ରୀ ଅଦ୍ୱୈତ ବ୍ରହ୍ମତତ୍ତ୍ୱ; ପୁରୁଷ ଓ ପ୍ରକୃତିର ଉର୍ଦ୍ଧ୍ୱ । ପରଂବ୍ରହ୍ମ ପୁରୁଷ ନୁହନ୍ତି କି ପ୍ରକୃତି ନୁହନ୍ତି । ଶ୍ରୀ ଗୌରସୁନ୍ଦର ମଧ୍ୟ ପୁରୁଷ ଓ ପ୍ରକୃତିର ଉର୍ଦ୍ଧ୍ୱରେ । ତେବେ ସେ ପୁରୁଷ-ପ୍ରକୃତି ଦୁଇ । ଅଦ୍ୱୈତ ବ୍ରହ୍ମ ସର୍ବଭାବଗ୍ରାସୀ, ଶ୍ରୀଗୌରସୁନ୍ଦର ସର୍ବଭାବୋଲ୍ଲାସୀ । ଭାବ ନିର୍ବାଣରେ ବ୍ରହ୍ମ, ଭାବରସାୟନରେ ଶ୍ରୀ ଗୌରାଙ୍ଗ । ବିଳାସବିହୀନ ଚରମ ତତ୍ତ୍ୱ ବ୍ରହ୍ମ, ରସବିଳାସୀ ପରମତତ୍ତ୍ୱ ଶ୍ରୀଗୌରସୁନ୍ଦର । ପରଂବ୍ରହ୍ମରେ ଶକ୍ତି ଓ ଶକ୍ତିମାନଙ୍କର ବହୁବ୍ରୀହି ସମାସ । ଶ୍ରୀ ଗୌରସୁନ୍ଦରଙ୍କ ଠାରେ ଦ୍ୱନ୍ଦ୍ୱ ସମାସ । ପରଂବ୍ରହ୍ମଙ୍କ ଠାରେ ଶକ୍ତି ଓ ଶକ୍ତିମାନ୍ ଦୁଇ ହିଁ ନିଜକୁ ହଜାଇ ଦେଇଛନ୍ତି । ପ୍ରାଧାନ୍ୟ ରହିଛି—"କେବଳାନୁଭବାନନ୍ଦର ।" ଶ୍ରୀ ଗୌରସୁନ୍ଦରଙ୍କ ଠାରେ ଦ୍ୱନ୍ଦ୍ୱସମାସ—ଶକ୍ତି ଓ ଶକ୍ତିମାନଙ୍କର । ଦ୍ୱୈତତ୍ତ୍ୱ ଅକ୍ଷୁର୍ଣ୍ଣ ରହିଛି । ଶ୍ରୀଗୀତାର ଭାଷାରେ—"ଦ୍ୱନ୍ଦ୍ୱ ସାମାସିକସ୍ୟ ଚ ।" ଦ୍ୱନ୍ଦ୍ୱ ସମାସ ହିଁ ସର୍ବଶ୍ରେଷ୍ଠ ।

ତେବେ ବ୍ୟାକରଣର ଦ୍ୱନ୍ଦ୍ୱ ସମାସ ଅପେକ୍ଷା ଶ୍ରୀଗୌର-ଦ୍ୱନ୍ଦ୍ୱ ସମାସ ମଧ୍ୟରେ କିଛି ବୈଶିଷ୍ଟାଧିକ ପରିଲକ୍ଷିତ ହୁଏ । ବ୍ୟାକରଣର ଦ୍ୱନ୍ଦ୍ୱ ସମାସରେ ପ୍ରତ୍ୟେକ ପଦର ପ୍ରାଧାନ୍ୟ ଥାଏ ପୃଥକ ପୃଥକ ଭାବରେ; କିନ୍ତୁ ଶ୍ରୀଗୌରଙ୍କ ଠାରେ ତାହା ନାହିଁ । ଏଠାରେ ଦୁଇ ବସ୍ତୁର ପ୍ରାଧାନ୍ୟ ରହିଛି । ଗୋଟିକ ମଧ୍ୟ ଦେଇ ଅନ୍ୟର, ପୃଥକ୍ ଭାବେ ନୁହେଁ । କୃଷ୍ଣମୟୀ ବୋଲି ରାଧାର ପ୍ରଧାନତା; ରାଧାମୟ ବୋଲି କୃଷ୍ଣଙ୍କର ସର୍ବୋତ୍ତମତା । ରସରୁ ହିଁ ରସନା— ରସନାରେ ହିଁ ରସ ଆସ୍ୱାଦିତ । ଏହି ଅଭିନବ ଶ୍ରୀଗୌର ଦ୍ୱନ୍ଦ୍ୱ ସମାସରେ ସର୍ବଶାସ୍ତ୍ରର ଦ୍ୱନ୍ଦ୍ୱ ନିରସନ ହୋଇଛି । "ସାମ୍ୟଚ୍ଛାସ୍ତ୍ର ବିନ୍ଦାଦୟା"—ସର୍ବ ଦ୍ୱନ୍ଦ୍ୱନାଶୀ ଅପ୍ରାକୃତ ଦ୍ୱନ୍ଦ୍ୱସମାସ ଶ୍ରୀଗୌରସୁନ୍ଦର ଜୟଯୁକ୍ତ ହେଉନ୍ତୁ ।

"ଶକ୍ତି ଶକ୍ତିମତୋରଭେଦଃ"–

ଉପରିଉକ୍ତ ମୂଳମନ୍ତ୍ର ଅବଲମ୍ବନରେ ଶ୍ରୀରାମଚନ୍ଦ୍ର ପ୍ରପୂଜିତ ଶ୍ରୀରେମୁଣାର ଗ୍ରାମଦେବତୀ ଶ୍ରୀରାମଚଣ୍ଡୀଙ୍କ ପ୍ରସଙ୍ଗ ଆଲୋଚନାରେ ପ୍ରୟାସୀ ହେଲି । ଏ କେଉଁ ସ୍ମରଣାତୀତ କାଳରୁ ଏଠାରେ ଅବସ୍ଥିତା ଓ କାହା କର୍ତ୍ତୃକ ପ୍ରତିଷ୍ଠିତା, ତାର ଐତିହାସିକ ତଥ୍ୟ ଓ ତତ୍ତ୍ୱ ସମ୍ୟକ୍ ଅଜ୍ଞାତ । ଶ୍ରୀରାମଚନ୍ଦ୍ର ତ୍ରେତାଯୁଗରେ ଏଠାକୁ ଆସିଥିଲେ । ତାର ବହୁ ପୂର୍ବରୁ ବା ତାର ପୂର୍ବଯୁଗ ଅର୍ଥାତ୍ ସତ୍ୟଯୁଗରୁ ଏ ଅବସ୍ଥିତା ଓ ଗ୍ରାମଦେବତୀ ରୂପେ ବିଖ୍ୟାତା । କିନ୍ତୁ ସେ ଅତ୍ୟନ୍ତ ଉଗ୍ରଚଣ୍ଡା, ବଳିପ୍ରିୟା ଓ ରକ୍ତଲୋଲୁପା । ତାଙ୍କ ସମ୍ମୁଖରେ କୌଣସି ଗର୍ଭବତୀ ନାରୀ ଗର୍ଭବତୀ ଗୋରୁ-ମହିଷାଦି ଗମନାଗମନର ଉପାୟ ନ ଥିଲା । ତତ୍‌କ୍ଷଣାତ୍ ସେମାନଙ୍କର ଜୀବନାବସାନ ଘଟୁଥିଲା । ସେଠାର ଲୋକମାନଙ୍କର ଆକୁଳ ପ୍ରାର୍ଥନାରେ ପରମ ଦୟାଳ ଶ୍ରୀଗୋପୀନାଥଙ୍କର ଭକ୍ତାନୁଗ୍ରହକାରିଣୀ କରୁଣାର ଉଦ୍ରେକ ହୁଏ । ଦିନେ ଗଭୀର ରାତ୍ରିକାଳରେ ଶ୍ରୀ ଚଣ୍ଡୀଦେବୀଙ୍କର ନିତ୍ୟପୂଜକ ବ୍ରାହ୍ମଣଙ୍କୁ ଶ୍ରୀଗୋପୀନାଥ ସ୍ୱପ୍ନରେ ଆଦେଶ କଲେ–ହେ ବ୍ରାହ୍ମଣ ! ତୁମେ କାଲି ଅତି ପ୍ରତ୍ୟୁଷରେ ଶଯ୍ୟା ତ୍ୟାଗ କରି ସ୍ନାନାଦି ନିତ୍ୟକ୍ରିୟା ସମାପନାନ୍ତେ ମୋର ଶ୍ରୀମନ୍ଦିରକୁ ଆସି "ମୋର ନିବେଦିତ ପୁଷ୍ପମାଲ୍ୟ ଓ ପ୍ରସାଦ ନେଇ ଶ୍ରୀଚଣ୍ଡୀଦେବୀଙ୍କୁ ସମର୍ପଣ କରିବ ।" ଶ୍ରୀଗୋପୀନାଥଙ୍କର ଆଦେଶାନୁସାରେ ଶ୍ରୀଚଣ୍ଡୀଦେବୀଙ୍କର ପୂଜକ ଅତୀବ ବିସ୍ମୟାବିଷ୍ଟ ହୋଇ ଓ ନିଜକୁ ପରମ ସୌଭାଗ୍ୟବାନ ମନେକରି ଈଶ୍ୱରାଦେଶ ଶିରୋଧାର୍ଯ୍ୟ ପୂର୍ବକ ଈଶ୍ୱରାନୁଗ୍ରହସ୍ୱରୂପ ନିବେଦିତ ପୁଷ୍ପମାଲ୍ୟ ଓ ପ୍ରସାଦୀ ନୈବେଦ୍ୟ ଶ୍ରୀଚଣ୍ଡୀମାତାଙ୍କୁ ଅର୍ପଣ କଲେ । ତଦବଧି ରକ୍ତଲୋଲୁପା ଶ୍ରୀଚଣ୍ଡୀମାତା ପରମା ବୈଷ୍ଣବୀ ହେଲେ । ସେହିଦିନଠାରୁ ଅଦ୍ୟାବଧି ପ୍ରତ୍ୟହ ଶ୍ରୀଗୋପୀନାଥଙ୍କର ନିବେଦିତ ପ୍ରସାଦାନ୍ନର କିୟଦଂଶ ଶ୍ରୀଚଣ୍ଡୀମାତାଙ୍କ ଉଦ୍ଦେଶ୍ୟରେ ନିବେଦନ କରାହୋଇଥାଏ ।

ଦୀର୍ଘ ଅତୀତର ଏହି ଘଟଣା ହୁଏତ କୌଣସି କୌଣସି ଅବିଶ୍ୱାସୀ ମନୁଷ୍ୟର ଅବିଶ୍ୱାସ୍ୟ ହୋଇପାରେ । କିନ୍ତୁ ଏହି ସେଦିନ ଅର୍ଥାତ୍ ଇଂରାଜୀ ୧୩-୩-୧୯୮୪ ଖ୍ରୀ.ର ବିସ୍ମୟକର ଘଟଣାର ପ୍ରତ୍ୟକ୍ଷଦର୍ଶୀ ମୁଁ ଯାହା ଦେଖିଲି ଓ ଶୁଣିଲି, ତାର ବିବରଣୀ ନ ଦେଲେ ଶ୍ରୀଚଣ୍ଡୀ ଚରିତ୍ରର ଅଲୌକିକତା ଅସମ୍ପୂର୍ଣ୍ଣ ରହିଯାଏ ।

ସେଦିନ ପରମ ବିରକ୍ତ ସନ୍ନ୍ୟାସୀ ଜଗଦ୍‌ଗୁରୁ ଶ୍ରୀମନ୍ମହାପ୍ରଭୁଙ୍କର ପରମଗୁରୁ ଶ୍ରୀଳ ମାଧବେନ୍ଦ୍ରପୁରୀ ଗୋସ୍ୱାମୀଙ୍କର ପବିତ୍ର ଅପ୍ରକଟ ତିଥି ଥିଲା । ତଦୁପଲକ୍ଷେ ସିଦ୍ଧବାବା ଶ୍ରୀ ରାଧାରମଣ ଦାସ ବାବାଜୀ ମହାରାଜଙ୍କର ଆଶ୍ରିତ ସିଦ୍ଧ ନାମାଗ୍ରହୀ ଶ୍ରୀ ରାମଦାସ ବାବାଜୀ ମହାରାଜଙ୍କର ପ୍ରଶିଷ୍ୟ କଲିକତା ନିବାସୀ ଶ୍ରୀ ରବୀନ୍ଦ୍ରନାଥ

ରହୀ) ଜନୈକ ପରମଭକ୍ତ କର୍ତ୍ତୃକ ଟ୭୩୦୦୦.୦୦ ଅର୍ଥାନୁକୂଲ୍ୟରେ ଶ୍ରୀପୁରୀପାଦଙ୍କର ଜୀର୍ଣ୍ଣ ସ୍ଥଳ ସମାଧି ମନ୍ଦିର ସୁସଂସ୍କାର ଓ ଦଢଗୀଭୂତ ଅଷ୍ଟପ୍ରହର ବ୍ୟାପୀ ଶ୍ରୀନାମଯଜ୍ଞ ମହାମହୋତ୍ସବ ମହାସମାରୋହରେ ଚାଲୁଛି, ଶ୍ରୀ ଚଣ୍ଡୀଦେବୀଙ୍କର ଶ୍ରୀମନ୍ଦିର ସଂଲଗ୍ନ ଶ୍ରୀ ପୁରୀପାଦଙ୍କର ଚତ୍ୱରରେ । ସେହି ସମୟରେ ଶ୍ରୀଚଣ୍ଡୀଦେବୀଙ୍କ ଶ୍ରୀମନ୍ଦିରର କବାଟ ବନ୍ଦ ଥିଲା । ତନ୍ମୁହୂର୍ତ୍ତରେ ଶ୍ରୀପୁରୀପାଦଙ୍କର ତିରୋଭାବ ମହୋତ୍ସବ ଉପଲକ୍ଷେ ବଙ୍ଗଦେଶାଗତା ଜନୈକା ଭାଗ୍ୟବତୀ ସ୍ତ୍ରୀଲୋକର ଅନ୍ତରରେ ଆବିର୍ଭୂତା ହୋଇ (ପ୍ରତ୍ୟାଦେଶ) ତାଙ୍କ ମୁଖରେ ଶ୍ରୀରାମଚଣ୍ଡୀଦେବୀ ଏକାଧିକବାର କହିବାକୁ ଲାଗିଲେ ଯେ, ଏହି ଶ୍ରୀନାମଯଜ୍ଞ ମୁହୂର୍ତ୍ତରେ ମୋର ଶ୍ରୀମନ୍ଦିରର କବାଟ ରୁଦ୍ଧ କାହିଁକି ? ମୁଁ (ଶ୍ରୀରାମଚଣ୍ଡୀଦେବୀ) ଭୁବନମଙ୍ଗଳ ଶ୍ରୀହରିନାମ ଶ୍ରବଣରେ ବଞ୍ଚିତା କାହିଁକି ? ପୁନଃ ପୁନଃ ଏ ପ୍ରକାର ପ୍ରତ୍ୟାଦେଶ ଫଳରେ ଶ୍ରୀରାମଚଣ୍ଡୀଦେବୀଙ୍କର ନିତ୍ୟ ସେବକକୁ ଆଣି ଶ୍ରୀମନ୍ଦିରର ରୁଦ୍ଧଦ୍ୱାର ଉନ୍ମୋଚନ କରିଦେବାରୁ ଶ୍ରୀଦେବୀଙ୍କର ପ୍ରତ୍ୟାଦେଶ ବନ୍ଦ ହୋଇଥିଲା ।

ତା'ପରେ ଶ୍ରୀଦେବୀଙ୍କର ଏ ପ୍ରକାର ଦୈବୀଲୀଳା ପ୍ରତ୍ୟକ୍ଷ କରି ସେହି ପରମଭକ୍ତ ବିସ୍ମୟବିମୂଢ଼ ହୋଇ ନିଜକୁ ପରମ ସୌଭାଗ୍ୟବାନ୍ ମନେକରି ବିବିଧୋପହାରରେ ଓ ଉପଚାରରେ ଶ୍ରୀରାମଚଣ୍ଡୀଦେବୀଙ୍କର ଆରାଧନାର ଆୟୋଜନ କଲେ । ଏହି ଅତିଲୌକିକ ଦେବୀଲୀଳାର ପ୍ରତ୍ୟକ୍ଷଦର୍ଶୀ ପ୍ରତ୍ୟେକ ନରନାରୀ ବିସ୍ମୟରେ ବିମୁଗ୍ଧ ହୋଇଥିଲେ । ବୈଷ୍ଣବ କବିଙ୍କ ଭାଷାରେ କୁହାଯାଏ—

"ଅଦ୍ୟାବଧି ସେଇ ଲୀଳା କରେ ଗୋରା ରାୟ ।
କୋନ କୋନ ଭାଗ୍ୟବାନେ ଦେଖିବାରେ ପାୟ ।"

"ଈଶ୍ୱରାଣାଂ ବଚଃ ସତ୍ୟଂ ତଥୈବାଚରିତଂ କ୍ୱଚିତ ।" ଶ୍ରୀମଦ୍ ଭାଗବତର ବାଣୀ ମଧ୍ୟ ଏପ୍ରକାର ଅଲୌକିକ ଅପ୍ରାକୃତ ଐଶ୍ୱରିକ ଲୀଳାର ଜୀବନ୍ତ ସାକ୍ଷ୍ୟ ବହନ କରେ ।

ଅବଶେଷରେ 'ରମଚଣ୍ଡୀ' ନାମର କାରଣ ବିବୃତ କରି ପ୍ରସଙ୍ଗର ପରିସମାପ୍ତି ସାଧନ କରୁଛି—ତ୍ରେତାଯୁଗରେ ଚିତ୍ରକୂଟ ପର୍ବତରେ ଭାବୀ ଦ୍ୱାପରଯୁଗର ଲୀଳାବିଗ୍ରହ ନିର୍ମାଣ ପରେ ହ୍ଲାଦିନୀଶକ୍ତି ସ୍ୱୟଂ ସୀତାଦେବୀ କର୍ତ୍ତୃକ ମଦନଗୋପାଳ ବିଗ୍ରହ ପୂଜିତ ହୁଅନ୍ତି । ବନବାସାନ୍ତେ ଅଯୋଧ୍ୟା ନଗରୀକୁ ସଯତ୍ନେ ନେଇଯିବେ, ଏପ୍ରକାର ବାସନା ପ୍ରକାଶ କଲେ ସୀତାଦେବୀ । କିଛିଦିନ ପରେ ଅତ୍ରି ମୁନିଙ୍କ ଆଶ୍ରମରେ ଉପସ୍ଥିତ ହୋଇ ରାକ୍ଷସାଦିଙ୍କର ବିନାଶ ସାଧନ କଲେ । ଅତ୍ରି ମୁନିଙ୍କ ଆଶ୍ରମ ଗମନାବଧି ସ୍ୱୟଂ ପ୍ରଜାପିତା ବ୍ରହ୍ମା ଉକ୍ତ ବିଗ୍ରହଙ୍କର ନିତ୍ୟସେବାରେ ନିଯୁକ୍ତ ହୁଅନ୍ତି

ଦଣ୍ଡକାରଣ୍ୟାଭିମୁଖେ ଯାତ୍ରା ସମୟରେ । ତଦନନ୍ତର ସୀତାହରଣ, ସାଗର ବନ୍ଧନ ଓ ସୀତା ଉଦ୍ଧାରସାଧନ କରି ଅଯୋଧ୍ୟା ଅଭିମୁଖରେ ପ୍ରତ୍ୟାବର୍ତ୍ତନ କାଳରେ ଗୋଟିଏ ରମଣୀୟ ସ୍ଥାନରେ ଅର୍ଥାତ ଶ୍ରୀରେମୁଣାକୁ ଆସି ରାତ୍ରିଯାପନ କଲେ ।

ସେଠାରେ ସେହି ରାତ୍ରିରେ ସୀତାଦେବୀ ରଜଃସ୍ୱଳା ହୁଅନ୍ତି । ସୁତରାଂ ଶ୍ରୀରାମଚନ୍ଦ୍ର ବାଧ୍ୟହୋଇ ଚାରିଦିନ ବାସକରନ୍ତି । ଚତୁର୍ଥଦିନ ପ୍ରଭାତରେ ଜାନକୀଙ୍କର ସରିତ୍‌-ସଲିଳରେ ସ୍ନାନ ବାସନା ଜାଗିଲା, କିନ୍ତୁ ସେହି ସ୍ଥାନରେ କୌଣସି ନଦୀ ନ ଥିବାରୁ ଶ୍ରୀରାମଚନ୍ଦ୍ର ଧନୁରେ ସପ୍ତବାର ଶରଯୋଜନା କରି କୌଣସି ଗୋଟିଏ ସ୍ଥାନରେ ଭୂମି ଭେଦକରି ତତକ୍ଷଣାତ୍ ସପ୍ତଶର ନାମରେ ଗୋଟିଏ ନଦୀ ନିର୍ମାଣ କଲେ । ସେହି ସପ୍ତଶର ସଲିଳରେ ଶ୍ରୀ ସୀତାଦେବୀ ଅବଗାହନ ସ୍ନାନ ସମାପନ କରି ସଦାଶୁଦ୍ଧା ଶ୍ରୀ ସୀତା ନୈମିତ୍ତିକ ଶୁଦ୍ଧା ହେଲେ ।

ଶ୍ରୀରାମଚନ୍ଦ୍ର ଉକ୍ତ ରମଣୀୟ ସ୍ଥାନର ଗ୍ରାମ୍ୟଦେବୀ ଶ୍ରୀଚଣ୍ଡୀମାତାଙ୍କର ସଶ୍ରଦ୍ଧ ପୂଜାର୍ଚ୍ଚନା କରନ୍ତି । ତଦବଧି ଶ୍ରୀ ଚଣ୍ଡୀଦେବୀଙ୍କ ନାମ "ଶ୍ରୀରାମଚଣ୍ଡୀ" ନାମରେ ପ୍ରସିଦ୍ଧିଲାଭ କଲା । ଏବେ ମଧ୍ୟ ଉକ୍ତ ନାମରେ ସେ ସୁପୂଜିତା ଓ ପ୍ରସିଦ୍ଧା । ଏହା ହିଁ ଶ୍ରୀରେମୁଣାର ଗ୍ରାମ୍ୟଦେବୀ ଶ୍ରୀଚଣ୍ଡୀମାତାଙ୍କର "ଶ୍ରୀରାମଚଣ୍ଡୀ" ନାମକରଣର ଓ ନାମାନ୍ତରର ପଟ୍ଟଭୂମିକା । ଶ୍ରୀଚଣ୍ଡୀଦେବୀଙ୍କ ନାମାନୁସାରେ ଶ୍ରୀଚଣ୍ଡୀମନ୍ଦିର ସଂଲଗ୍ନ ଗ୍ରାମର ନାମ ଚଣ୍ଡୀସାହି ବା ଚଣ୍ଡୀମଣ୍ଡଳ ଏବଂ ଉକ୍ତ ଗ୍ରାମର ହାଟଟିର ନାଁ ଚଣ୍ଡୀହାଟ ଅଦ୍ୟାପି ସ୍ୱ-ମହିମାରେ ବିରାଜମାନ ରହିଛି । ପୂର୍ବୋକ୍ତ ବ୍ୟକ୍ତି ଶ୍ରୀଶ୍ରୀ ସିଦ୍ଧବାବା ଶ୍ରୀ ରାଧାରମଣ ଚରଣ ଦାସ ବାବାଜୀ ମହାରାଜଙ୍କର ସୁଯୋଗ୍ୟ ଶିଷ୍ୟ ନାମାଗ୍ରଣୀ ଶ୍ରୀରାମଦାସ ବାବାଜୀ ମହାରାଜଙ୍କ ଶିଷ୍ୟାନୁଶିଷ୍ୟ (ଶ୍ରୀ ରବୀନ ଶାହା) କଲିକତା ନିବାସୀ ଭକ୍ତ ଶ୍ରୀଶ୍ରୀ ଚଣ୍ଡୀମାତାଙ୍କର ଜୀର୍ଣ୍ଣ ନାଟମନ୍ଦିର ସଂପୂର୍ଣ୍ଣ ସଂସ୍କାର ସହ ଶ୍ରୀମନ୍ଦିରର କିୟଦଂଶ ମଧ୍ୟ ସଂସ୍କାର ସାଧନ କରନ୍ତି ଇଂରାଜୀ ୨୩-୧୦-୧୯୮୪ରେ । ଶ୍ରୀଶ୍ରୀ ଚଣ୍ଡୀଦେବୀ ସେହି ଭକ୍ତଙ୍କ ପ୍ରତି ଅନୁଗ୍ରହ ମାଧ୍ୟମରେ ପରମ ପବିତ୍ର ଜୀର୍ଣ୍ଣ ମନ୍ଦିର ସଂସ୍କାର କାର୍ଯ୍ୟଟି ମଧ୍ୟ କରାଇନେଲେ । ଇଚ୍ଛାମୟୀଙ୍କ ଇଚ୍ଛାର ଏହା ପରି-ପ୍ରକାଶ । ଉକ୍ତ ଭକ୍ତପ୍ରବର ଶ୍ରୀରାମଚଣ୍ଡୀମାତାଙ୍କର ନାଟମନ୍ଦିର ସଂସ୍କାର ଉତ୍ସବ ମହାସମାରୋହ ସହ ପୂଜାର୍ଚ୍ଚନା, ଶ୍ରୀଚଣ୍ଡୀପାଠ ଓ ହୋମାଦି ଅନୁଷ୍ଠାନ ମଧ୍ୟରେ ସୁସମ୍ପନ୍ନ କରନ୍ତି ।

॥ ଇତି ଦ୍ୱିତୀୟ ବୈଭବ ॥

---

# ତୃତୀୟ ବୈଭବ

## (ଶ୍ରୀଲ ମାଧବେନ୍ଦ୍ର ପୁରୀ ଚରିତ୍ର ମାଧୁର୍ଯ୍ୟାମୃତାସ୍ୱାଦନ)

### ଶ୍ରୀମାଧବେନ୍ଦ୍ରସ୍ୟ ଧ୍ୟାନମ୍ :

ଦୀର୍ଘତରଲୋଚନଂ ସୁକମନୀୟ ଶ୍ୱେତାମ୍ବରମ୍ ।
ପ୍ରଫୁଲ୍ଲ କମଲାନନେ ମଧୁରଂ କୃଷ୍ଣସଂକୀର୍ତ୍ତନମ୍ ।।
ସ୍ମରାମି ଯତିଶେଖରଂ ନିଖିଳ ବୈଷ୍ଣବାନାଂ ଗୁରୁମ୍
ଶଚୀହୃଦୟନନ୍ଦ ନ ପ୍ରବର କଳ୍ପବୃକ୍ଷାଙ୍କୁରମ୍ ।।
(ପଦ୍ଧତି ପ୍ରଦୀପ)

### ପୁରୀପାଦସ୍ୟ ବନ୍ଦନମ୍ :

ମାଧବେନ୍ଦ୍ର ପୁରୀଂ ବନ୍ଦେ ପ୍ରେମବୃକ୍ଷସ୍ୟ ମୂଳକମ୍ ।
ଆଦ୍ୟାଧିକାରିଣଂ ଭକ୍ତେଃ ଶ୍ରୀଲଗଧାମାଧବୟୋଃ ।।

### ପ୍ରଣାମଃ :

ଯସ୍ମୈ ଦାତୁଂ ଚୋରୟନ କ୍ଷୀରଭାଣ୍ଡଂ–
ଗୋପୀନାଥଃ କ୍ଷୀରଚୋରାଭିଧୋଽଭୂତ୍ ।
ଶ୍ରୀଗୋପାଳଃ ପ୍ରାଦୁରାସୀଦ୍ ବଶଃସନ୍–
ଯତ୍ପ୍ରେମ୍ନା ତଂ ମାଧବେନ୍ଦ୍ରଂ ନତୋଽସ୍ମି ।।

### ପୁରୀ ଗୋସ୍ୱାମୀଙ୍କର ଗୁଣାବଳୀ :

ଭକ୍ତିରସେ ଆଦି ମାଧବେନ୍ଦ୍ର ସୂତ୍ରଧର ।
ଗୌରଚନ୍ଦ୍ର ଇହା କହିୟାଛେନ ବାର ବାର ।।
ଭକ୍ତିରସ ବିନୁ ଆର ନାହିକ ଆହାର ।
ମାଧବେନ୍ଦ୍ରପୁରୀ ଦେହେ କୃଷ୍ଣେର ବିହାର ।।
(ଶ୍ରୀଚୈତନ୍ୟ ଭଗବତ ଆଦ ୬ଷ୍ଠ ଅଧ୍ୟାୟ)

ମାଧବେନ୍ଦ୍ର ପୁରୀର ଦେହେ ଶ୍ରୀଗୌରସୁନ୍ଦର ।
ସତ୍ୟ ସତ୍ୟ ସତ୍ୟ ବିହରୟେ ନିରନ୍ତର ।।
ମାଧବପୁରୀର ପ୍ରେମ ଅକଥ୍ୟ କଥନ ।
ମେଘ ଦରଶନେ ମୂର୍ଚ୍ଛା ହୟ ସେଇକ୍ଷଣ ।।
(ଶ୍ରୀଚୈତନ୍ୟ ଚରିତାମୃତ ଆଦି ୯ମ ପରିଃ)

ଜୟ ଶ୍ରୀମାଧବପୁରୀ କୃଷ୍ଣପ୍ରେମପୁର ।
ପ୍ରେମଭକ୍ତି କଳ୍ପତରୁ ପ୍ରଥମ ଅଙ୍କୁର ।।
(ଶ୍ରୀଚୈତନ୍ୟ ଚରିତାମୃତ ୯ମ ପରିଚ୍ଛେଦ)

## ଶ୍ରୀମନ୍ମହାପ୍ରଭୁଙ୍କ ଶ୍ରୀମୁଖୋକ୍ତ :

ପ୍ରଭୁ କହେ ନିତ୍ୟାନନ୍ଦ କରହ ବିସ୍ତର ।
ପୁରୀ ସମ ଭଗ୍ୟବାନ ଜଗତେ ନାହିଁ ଆର ।।
ଦୁଗ୍ଧଦାନ ଛଲେ କୃଷ୍ଣ ଯାଁରେ ଦେଖାଦିଲ ।
ତିନିବାର ସ୍ୱପ୍ନେ ଆସି ଯାଁରେ ଆଜ୍ଞା କୈଲ ।।
ଯାଁର ପ୍ରେମେ ବଶ ହୈୟା ପ୍ରକଟ ହୈଲ ।
ସେବା ଅଙ୍ଗୀକାର କରି ଜଗତ୍ ତାରିଲ ।।
ଯାଁର ଲାଗି ଗୋପୀନାଥ କ୍ଷୀର ଚୁରି କୈଲ ।
କର୍ପୂର ଚନ୍ଦନ ଯାଁର ଅଙ୍ଗେ ଚଢ଼ାଇଲ ।।
ଗୋପାଲ ଗୋପୀନାଥ ପୁରୀ ଗୋସାଇଁର ଗୁଣ ।
ଭକ୍ତ ସଙ୍ଗେ ଶ୍ରୀମୁଖେ ପ୍ରଭୁ କରେନ ଆସ୍ୱାଦନ ।।
(ଶ୍ରୀ ଚୈତନ୍ୟ ଚରିତାମୃତ—୪ର୍ଥ ପରିଚ୍ଛେଦ)

ପ୍ରଭୁ କହେନ ଶ୍ରୁତି ସ୍ମୃତି ଯତ ଋଷିଗଣ ।
ସବ ଏକମତ ନହେ ଭିନ୍ନ ଭିନ୍ନ କ୍ରମ ।।
ଧର୍ମ ସଂସ୍ଥାପନ ହେତୁ ସାଧୁ ବ୍ୟବହାର ।
ପୁରୀ ଗୋସାଇଁର ଆଚରଣ ସେଇ ଧର୍ମ ସାର ।।
(ଶ୍ରୀ ଚୈତନ୍ୟ ଚରିତାମୃତ—ମଧ୍ୟ·୧୭ ପରିଚ୍ଛେଦ)

କ୍ଷଣେ ହାସେ କ୍ଷଣେ କାଁଦେ କ୍ଷଣେ କରେ ନୃତ୍ୟ ।
ମହାଭଗବତ ପୁରୀର କେବା ଜାନେ ତତ୍ତ୍ୱ ।।
(ଅଦ୍ୱୈତ ପ୍ରକାଶ—୫ମ ଅଧ୍ୟାୟ)

ଶ୍ରୀମନ ମାଧବେନ୍ଦ୍ର ପୁରୀ ଧର୍ମ ପ୍ରବର୍ତ୍ତକ ।
କଳ୍ପବୃକ୍ଷ ସମ ସର୍ବ ରସ ପ୍ରଯୋଜକ ।।

(ଭକ୍ତମାଳ—୫ମ ମାଳା)

ସାବଧାନେ ବନ୍ଦିବ ଶ୍ରୀମାଧବେନ୍ଦ୍ର ପୁରୀ ।

(ଶ୍ରୀଳ ନରୋତ୍ତମ ଦାସ ଠାକୁର ମହାଶୟ)

ମାଧବେନ୍ଦ୍ର ପୁରୀ ପ୍ରେମଭକ୍ତି ରସମୟ ।
ଯାଁର ନାମ ସ୍ମରଣେ ସକଳ ସିଦ୍ଧି ହୟ ।।
ଗୌଡ଼-ଉତ୍କଳାଦି ଦେଶେ ମାଧବେର ଗଣ ।
ସବେ କୃଷ୍ଣଭକ୍ତ ପ୍ରେମ ଭକ୍ତି ପରାୟଣ ।।

(ଶ୍ରୀ ଭକ୍ତିରତ୍ନାକର—୫ମ ତରଙ୍ଗ)

## ଶ୍ରୀ ଭଗବଦବତାର ପୂର୍ବେ ଗୁରୁବର୍ଗଙ୍କୁ ପ୍ରେରଣ

କୃଷ୍ଣ ଯଦି ପୃଥିବୀତେ କରେନ ଅବତାର ।
ପ୍ରଥମେ କରେନ ଗୁରୁବର୍ଗେର ସଞ୍ଚାର ।।
ପିତାମାତା ଗୁରୁଆଦି ଯତ ମାନ୍ୟଗଣ ।
ପ୍ରଥମେ କରେନ ସବାର ପୃଥିବୀତେ ଜନମ ।।
ମାଧବ ଈଶ୍ୱରପୁରୀ ଶଚୀ-ଜଗନ୍ନାଥ ।
ଅଦ୍ୱୈତ ଆଚାର୍ଯ୍ୟ ପ୍ରକଟ କୈଲ ସେଇ ସାଥ ।।

(ଶ୍ରୀ ଚୈତନ୍ୟଚରିତାମୃତ : ୩ୟ ପରିଚ୍ଛେଦ)

ଯଦି ବଲ ମାଧବେନ୍ଦ୍ର ଆଦି ମହାଭାଗ ।
ତାଁରାଓ କରିୟାଛେନ ଶିଖାସୂତ୍ର ତ୍ୟାଗ ।।

(ଶ୍ରୀ ଚୈତନ୍ୟଭାଗବତ . ଅନ୍ତ୍ୟ ୩ୟ ଅଧ୍ୟାୟ)

ପୃଥିବୀତେ ରୋପଣ କରିଗେଲା ପ୍ରେମାଙ୍କୁର ।
ସେଇ ପ୍ରେମାଙ୍କୁରେର ବୃକ୍ଷ ଚୈତନ୍ୟ ଠାକୁର ।।

(ଶ୍ରୀ ଚୈତନ୍ୟଚରିତାମୃତ)

ମାଧବେନ୍ଦ୍ର ପୁରୀ ପ୍ରେମଭକ୍ତି ରସମୟ ।
ସକଳ ସିଦ୍ଧି ହୟ ନାମ ସ୍ମରଣେ ଯାଁର ।।
(ଭକ୍ତିରତ୍ନାକର ୫ମ ତରଙ୍ଗ)

# ଦ୍ରାବଡ଼ରେ ମଧ୍ୱାଚାର୍ଯ୍ୟାଶ୍ରମରେ ଶ୍ରୀପୁରୀପାଦଙ୍କର ସହିତ ଶ୍ରୀ ଅଦ୍ୱୈତ ପ୍ରଭୁଙ୍କର ମିଳନ

ପ୍ରେମ ସିନ୍ଧୁର ଢେଉ କ୍ରମେ ବାଢ଼ିୟା ଚଲିଲ ।
ମୂର୍ଚ୍ଛିତ ହଇୟା ପ୍ରଭୁ ଭୂମି ଯେ ପଡ଼ିଲ ।।
ତାହା ଦେଖି ମହୋପାଧ୍ୟାୟ ମାଧବେନ୍ଦ୍ର ପୁରୀ ।
ନହେ ଏହି ଭକ୍ତିତତ୍ତ୍ୱେର ଉତ୍ତରଧିକାରୀ ।।
ସାମାନ୍ୟ ଜୀବେର ନା ହୟ ଶୁଦ୍ଧପ୍ରେମଭକ୍ତି ।
ଚିନ୍ମୟ ଆଧାରେ ହୟ, ନିତ୍ୟ ତାର ସ୍ଥିତି ।।
ଶୁଦ୍ଧ ପ୍ରେମାସବ ଇହ କରିୟାଛେନ ପାନ ।
ଅନ୍ତର୍ନିତ୍ୟାନନ୍ଦ ଇଁହାର ନାହିଁ ବାହ୍ୟଜ୍ଞାନ ।।
ଇଁହାର ଶରୀରେ ମହାପୁରୁଷ ଲକ୍ଷଣ ।
ଜଗତ ତାରିତେ ବୁଝୋ ହୈଲ ପ୍ରକଟନ ।।

×

ତବେ କତକ୍ଷଣେ ତିହଁ ମନ ସ୍ଥିର କୈଲ ।
ଭକ୍ତି-କଳ୍ପବୃକ୍ଷ ପୁରୀରାଜେ ପ୍ରଣମିଲ ।।
ମାଧବେନ୍ଦ୍ର ପ୍ରେମାବିଷ୍ଟ ତାରେ ଆଲିଙ୍ଗିୟା ।
କହେ କିବା ନାମ ଧାମ କହ ବିସ୍ତାରିୟା ।।
ତୁହୁଁ ନିତ୍ୟ ଶୁଦ୍ଧ ସିଦ୍ଧ ପ୍ରେମେର ଭଣ୍ଡାର ।
ତବ ଦରଶନେ ବହୁ ଭାଗ୍ୟ ମୋ ସବାର ।।
ପ୍ରଭୁ କହେ କମଳାକ୍ଷାଚାର୍ଯ୍ୟ ମୋର ନାମ ।
ଭାଗୀରଥୀ ତୀରେ ଶାନ୍ତିପୁର ଗ୍ରାମେ ଧାମ ।।
ତୁହୁଁ ଭକ୍ତଶାସ୍ତ୍ରାଚାର୍ଯ୍ୟ ପରମ ଉଦାସ ।
ଭକ୍ତି କହି ମୋରେ କର ନିଜ ଦାସ ।।
ଶୁନି ପୁରୀରାଜ ମହା ଆନନ୍ଦିତ ହୈଲ ।
ପ୍ରଭୁକେ ଅଗ୍ରହ କରି ତାହାଁଇ ରଖିଲ ।।

ଶ୍ରୀମଦ୍‌ଭଗବତ-ମଧ୍ୱାଗ୍ରନ୍ଥ ଭାଷ୍ୟ ଆର ।
ପ୍ରଭୁଙ୍କେ ଶୁନାନ ପୁରୀ କରିୟା ବିସ୍ତାର ।।
ଶୁନି ମାତ୍ର ପ୍ରଭୁ ସେବ କଣ୍ଠସ୍ଥ କରିଲ ।
ତାହା ଦେଖି ସାଧୁଗଣ ବିସ୍ମୟ ମାନିଲ ।।
ଏକଦିନ ପ୍ରଭୁ କହେ ପୁରୀଙ୍କ ସ୍ଥାନେ ।
କଲିକାଲେ ଶକ୍ତ୍ୟେ ଜୀବ ଧର୍ମ ନାହି ମାନେ ।।
ଯାହାଁ ଯାହାଁ ଯାଓଁ ତାହାଁ ଦେଖୋ ମ୍ଲେଚ୍ଛାଗ୍ର ।
ହରେକୃଷ୍ଣ ନାମ ନାହି ଶୁନୋ ଏକବାର ।।
କୈଛେ ଜୀବ ଉଦ୍ଧାର ହୈବ ନା ପାଓଁ ସନ୍ଧାନ ।
ସଦୁପାୟ କହି ଜୀବେର କରହ କଲ୍ୟାଣ ।।
ପୁରୀ କହେ କମଳାକ୍ଷ ତୁମି ଦୟାନିଧି ।
ଜଗତେର ହିତ ଲାଗି ଭାବ ନିରବଧି ।।
ହେନ ବୁଦ୍ଧି ସାଧାରଣ ଜୀବେର ନା ହୟ ସ୍ଫୂର୍ତ୍ତି ।
ତାହେ ପ୍ରକଟିତ ହୟ ଯାହେ ଐଛେ ଶକ୍ତି ।।
ଏବେ ସାକ୍ଷାତ୍ ପରମ ବ୍ରହ୍ମେର ଆବିର୍ଭାବ ବିନେ ।
ଅନ୍ୟଦ୍ୱାରେ ଜୀବୋଦ୍ଧାର ନାହିକ ସୁଗମେ ।।
ଧର୍ମ ସଂସ୍ଥାପନ ଲାଗି ଏଇ କଲିଯୁଗେ ।
ସ୍ୱୟଂ ଭଗବାନ ପ୍ରକଟ ହଇବେନ ଅଗ୍ରେ ।।
ଅନନ୍ତ ସଂହିତା ତାର ସାକ୍ଷୀ ଶ୍ରେଷ୍ଠତମ ।
ମଧ୍ୟସ୍ଥ ଶ୍ରୀଭଗବତ ଭରତ ଆଗମ ।।

## ଶ୍ରୀପୁରୀପାଦ ପ୍ରତ୍ୟେରୀତାନନ୍ତ ସଂହିତା ପ୍ରମାଣମ୍ :

ରାଧିକାବଲ୍ଲଭଃ କୃଷ୍ଣୋ ଭକ୍ତାନାଂ ପ୍ରିୟକାମ୍ୟୟା ।
ଶ୍ରୀମଦ୍ ଗୌରାଙ୍ଗରୂପେଣ ନବଦ୍ୱୀପେ ବିରାଜିତଃ ।।
ଗୋପୀଭାବପ୍ରଦାନାର୍ଥଂ ଭଗବାନ ନନ୍ଦନନ୍ଦନଃ ।
ଭକ୍ତଦେହଧରଃ ଶାନ୍ତୋ ଦ୍ୱିଭୁଜୋ ଗୌରବିଗ୍ରହଃ ।।
ଅବତୀର୍ଣ୍ଣୋ ଭବିଷ୍ୟାମି କଲୌ ଦ୍ୱିଜଗଣୈଃ ସହ ।
ଶଚୀଗର୍ଭେ ନବଦ୍ୱୀପେ ସ୍ୱର୍ଧୁନୀ ପରିବାରିତେ ।।
ଅପ୍ରକାଶ୍ୟମିଦଂ ଗୁହ୍ୟଂ ନ ପ୍ରକାଶ୍ୟଂ ବହିର୍ମୁଖେ ।
ଭକ୍ତାବତାରଂ ଭକ୍ତାଖ୍ୟଂ ଭକ୍ତ ଭକ୍ତିପ୍ରଦଂ ସ୍ୱୟମ୍ ।।

× × ×

କୃଷ୍ଣାବତାରକାଳେ ଯାଃ ସ୍ତ୍ରିୟୋ ଯେ ପୁରୁଷପ୍ରିୟାଃ ।
କଳୌ ତେଽବତରିଷ୍ୟନ୍ତି ଶ୍ରୀଦାମସୁବଳାଦୟଃ ।।
ଚତୁଃଷଷ୍ଟିମହାନ୍ତସ୍ତେ ଗୋପା ଦ୍ୱାଦଶ ବାଳକାଃ ।
ଧର୍ମସଂସ୍ଥାପନାର୍ଥାୟ ବିହରିଷ୍ୟାମି ତୈରହମ୍ ।।
କାଳେ ନଷ୍ଟଂ ଭକ୍ତିପଥଂ ସ୍ଥାପୟିଷ୍ୟାମ୍ୟହଂ ପୁନଃ ।
କୃଷ୍ଣଚୈତନ୍ୟୋ ଗୌରାଙ୍ଗୋ ଗୌରଚନ୍ଦ୍ରୋ ଗୌରହରିଃ ।।
ଶଚୀସୁତଃ ପ୍ରଭୁର୍ଗୌରେ ନାମାନି ଭକ୍ତିଦାନି ମେ ।
ଗଛନ୍ତୁ ଭୁବି ତେ ପୁତ୍ରାଜାୟନ୍ତେ ଭକ୍ତରୂପିଣଃ ।।

## ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁଙ୍କ ସହିତ ପୁରୀପାଦଙ୍କର ମିଳନ :

କେ କହିତେ ପାରେ ଲକ୍ଷ୍ମୀପତିର ମହିମା ।
ଯାଁର ଶିଷ୍ୟ ମାଧବେନ୍ଦ୍ରପୁରୀ ଏଇ ସୀମା ।।
ମାଧବେଂଦ୍ରପୁରୀ ପ୍ରେମ ଭକ୍ତି ରସମୟ ।
ଯାଁର ନାମ ସ୍ମରଣେ ସକଲ ସିଦ୍ଧି ହୟ ।।
କତଦିନ ପରେ ମାଧବେନ୍ଦ୍ରେର ସହିତେ ।
ଦେଖା ହୈଲ ପ୍ରତୀଚୀ ତୀର୍ଥେର ସମୀପେତେ ।।
ଯେ ପ୍ରେମ ପ୍ରକାଶ ହୈଲ ଦୋହାଁର ମିଲନେ ।
ତାହା କେ ବର୍ଣ୍ଣିବେ ଯେ ଦେଖିଲ ସେଇ ଜାନେ ।।
ନିତ୍ୟାନନ୍ଦେ ବନ୍ଧୁଜ୍ଞାନ କରେନ ମାଧବେନ୍ଦ୍ର ।
ମାଧବେନ୍ଦ୍ରେ ଗୁରୁବୁଦ୍ଧି କରେନ ନିତ୍ୟାନନ୍ଦ ।।

(ଶ୍ରୀ ଭକ୍ତିରତ୍ନାକର ୫ମ ତରଙ୍ଗ)

ଏଇମତ ନିତ୍ୟାନନ୍ଦ ପ୍ରଭୁ ଭ୍ରମେ ବନ ।
ଦୈବେ ମାଧବେନ୍ଦ୍ର ସନେ ହୈଲ ଦରଶନ ।।
ମାଧବେଂଦ୍ରପୁରୀ ପ୍ରେମମୟ କଲେବର ।
ପ୍ରେମମୟ ଯତ ସବ ସଙ୍ଗେ ଅନୁଚର ।।
କୃଷ୍ଣରସ ବିନୁ ଆର ନାହିକ ଆହାର ।
ମାଧବେଂଦ୍ରପୁରୀ ଦେହେ କୃଷ୍ଣେର ବିହାର ।।
ଯାର ଶିଷ୍ୟ ହନ ପ୍ରଭୁ ଆଗ୍ରଯ଼ି ଗୋସାଇଁ ।
କି କହିବ ଆର ତାର ପ୍ରେମେର ବଡ଼ାଇ ।।

ମାଧବପୁରୀରେ ଦେଖିଲେନ ନିତ୍ୟାନନ୍ଦ ।
ତତକ୍ଷଣେ ପ୍ରେମେ ମୂର୍ଚ୍ଛା ହୈଲ ନିସ୍ପନ୍ଦ ।।
ନିତ୍ୟାନନ୍ଦ ଦେଖିମାତ୍ର ଶ୍ରୀମାଧବପୁରୀ ।
ପଡ଼ିଲ ମୂର୍ଚ୍ଛିତ ହଇ ଆପନା ପାସରି ।।
ଦୋହେଁ ମୂର୍ଚ୍ଛା ହୈଲେନ ଦୌଁହା ଦରଶନେ ।
କାଁନ୍ଦୟେ ଈଶ୍ୱରପୁରୀ ଆଦି ଶିଷ୍ୟଗଣେ ।।
ନିତ୍ୟାନନ୍ଦ ବଲେନ ଯତ ତୀର୍ଥ କରିଲାମ ।
ସମ୍ୟକ୍ ତାହାର ଫଲ ଆଜି ପାଇଲାମ ।।
ନୟନେ ଦେଖିଲୁଁ ମାଧବେଂନ୍ଦ୍ରେର ଚରଣ ।
ଏ ପ୍ରେମ ଦେଖିୟା ଧନ୍ୟ ହଇଲ ଜୀବନ ।।
ମାଧବେଂନ୍ଦ୍ରପୁରୀ ନିତ୍ୟାନନ୍ଦ କରି କୋଲେ ।
ଉତ୍ତର ନା ସ୍ଫୁରେ ରୁଦ୍ଧକଣ୍ଠେ ପ୍ରେମଜଲେ ।।
ହେନ ପ୍ରୀତ ହଇଲେନ, ମାଧବେନ୍ଦ୍ରପୁରୀ ।
ବକ୍ଷ ହୈତେ ନିତ୍ୟାନଂଦେ ବାହିର ନା କରି ।।

× × ×

କତଦିନ ନିତ୍ୟାନଂଦ ମାଧବେଂନ୍ଦ୍ର ସଙ୍ଗେ ।
ଭ୍ରମେଣ ଶ୍ରୀକୃଷ୍ଣକଥା ପରନଂଦ ରଙ୍ଗେ ।।
ମାଧବେଂନ୍ଦ୍ର କଥା ଅତି ଅଦ୍ଭୁତ କଥନ ।
ମେଘ ଦେଖିଲେଇ ମାତ୍ର ହୟ ଅଚେତନ ।।
ଅହର୍ନିଶ କୃଷ୍ଣପ୍ରେମେ ମଦ୍ୟପେର ପ୍ରାୟ ।
ହାଁସେ କାଁନ୍ଦେ ହୈ ହୈ କରେ ହାୟ ହାୟ ।।
ନିତ୍ୟାନଂଦ ମହାମତ୍ତ ଗୋବିନ୍ଦେର ରସେ ।
ଢୁଲିୟା ଢୁଲିୟା ପଡ଼େ ଅଟ୍ଟଅଟ୍ଟ ହାସେ ।।
ଦୌହାର ଅଦ୍ଭୁତ ଭବ ଦେଖି ଶିଷ୍ୟଗଣ ।
ନିରବଧି ହରି ବଲି କରୟେ କୀର୍ତ୍ତନ ।।
ରାତ୍ରିଦିନ କେହୋ ନାହି ଜାନେ ପ୍ରେମରସେ ।
କତକାଲ ଯାୟ, କେହୋ କ୍ଷଣ ନାହି ବାସେ ।।
ମାଧବେଂନ୍ଦ୍ର ସଙ୍ଗେ ଯତ ହଇଲ ଆଖ୍ୟାନ ।
କେ ଜାନୟେ ତାହା କୃଷ୍ଣଚଂନ୍ଦ୍ର ସେ ପ୍ରମାଣ ।।
ମାଧବେନ୍ଦ୍ର ନିତ୍ୟାନନ୍ଦେ ଛାଡିତେ ନ ପାରେ ।
ନିରବଧି ନିତ୍ୟାନନ୍ଦ ସଂହତି ବିହରେ ।।

ମାଧବେନ୍ଦ୍ର ବୋଲେନ୍ତ ପ୍ରେମ ନା ଦେଖିଲୁଁ କୋଥା ।
ସେଇ ମୋର ସର୍ବତୀର୍ଥେ ହେନ ପ୍ରେମ ଯେଥା ॥
ଜାନିଲୁଁ କୃଷ୍ଣେର କୃପା ଆଛେ ମୋର ପ୍ରତି ।
ନିତ୍ୟାନନ୍ଦ ହେନ ବନ୍ଧୁ ପାଇଲୁ ସଂହତି ॥
ଯେ ସେ ସ୍ଥାନେ ଯଦି ନିତ୍ୟାନନ୍ଦ ସଙ୍ଗ ହୟ ।
ସେଇସ୍ଥାନ ସର୍ବତୀର୍ଥ ବୈକୁଣ୍ଠାଦିମୟ ।
ନିତ୍ୟାନନ୍ଦ ହେନ ଭକ୍ତ ଶୁନିଲେ ଶ୍ରବଣେ ।
ଅବଶ୍ୟ ପାଇବେ କୃଷ୍ଣଚନ୍ଦ୍ର ସେଇ ଜନେ ॥
ଏଇମତ ମାଧବେନ୍ଦ୍ର, ନିତ୍ୟାନନ୍ଦ ପ୍ରତି ।
ଅହର୍ନିଶ ବୋଲେନ କରେନ ରତିମତି ॥
ମାଧବେନ୍ଦ୍ର ପ୍ରତି ନିତ୍ୟାନନ୍ଦ ମହାଶୟ ।
ଗୁରୁବୁଦ୍ଧି ବ୍ୟତିରିକ୍ତ ଆର ନା କରୟ ॥
ଏଇମତେ ଅନ୍ୟୋନ୍ୟେ ଦୁଇ ମହାମତି ।
କୃଷ୍ଣପ୍ରେମେ ନା ଜାଣେନ କୋଥା ଦିବାରାତି ॥
କତଦିନ ମାଧବେନ୍ଦ୍ର ସଙ୍ଗେ ନିତ୍ୟାନନ୍ଦ ।
ଥାକିୟା ଚଲିଲ ଶେଷେ ଯଥା ସେତୁବନ୍ଧ ॥
ମାଧବେନ୍ଦ୍ର ଚଲିଲା ସରଯୂ ଦେଖିବାରେ ।
କୃଷ୍ଣାବେଶେ କେହୋ ନିଜ ଦେହ ନାହିଁ ସ୍ମରେ ॥
ଅତଏବ ଜୀବନେର ରକ୍ଷା ସେ ବିରହେ ।
ବାହ୍ୟ ଥାକିଲେ କିଁସେ ବିରହେ ପ୍ରାଣ ରହେ ॥
ନିତ୍ୟାନନ୍ଦ ମାଧବେନ୍ଦ୍ର ଦୁଇ ଦରଶନ ।
ଯେ ଶୁନୟେ ତାରେ ମିଳେ କୃଷ୍ଣପ୍ରେମଧନ ॥

(ଶ୍ରୀଚୈତନ୍ୟଭଗବତ ଆଦି ୬ଷ୍ଠ ଅଧ୍ୟାୟ)

## ଶ୍ରୀପାଦ ପୁରୀଙ୍କର ଶାନ୍ତିପୁର ଆଗମନ ଏବଂ ସେଠାରେ ଶ୍ରୀ ଆଚାର୍ଯ୍ୟଙ୍କ ସହିତ ମିଳନ :

ମାଧବେନ୍ଦ୍ର ଅଦ୍ୱୈତେ ଯଦ୍ୟପି ଭେଦ ନାହିଁ ।
ତଥାପି ତାହାର ଶିଷ୍ୟ ଆଚାର୍ଯ୍ୟ ଗୋସାଇଁ ॥

× × ×

କଖନୋ ବା ବିରହେ ଯେ କରେନ ରୋଦନ ।
ଗଙ୍ଗାଧାର ବହେ ଯେନ ଅଦ୍ଭୁତ କଥନ ।।
କଖନୋ ହାସେନ ଅତି ଅଟ୍ଟଅଟ୍ଟ ହାସ ।
ପରମାନନ୍ଦ ରସେ କ୍ଷଣେ ହୟ ଦିଗ୍‌ବାସ ।।
ଏଇମତେ। କୃଷ୍ଣସୁଖେ ମାଧବେନ୍ଦ୍ର ସୁଖୀ ।
ସବେ ଭକ୍ତିଶୂନ୍ୟ ଲୋକ ଦେଖି ବଡ଼ ଦୁଃଖୀ ।।
କୃଷ୍ଣଯାତ୍ରା ଅହୋରାତ୍ର କୃଷ୍ଣ ସଂକୀର୍ତ୍ତନ ।
ଇହାର ଉଦ୍ଦେଶ୍ୟ ନାହି ଜାନେ କୋନ ଜନ ।।

× × ×

ଦେଖିତେ ଶୁନିତେ ଦୁଃଖୀ ଶ୍ରୀମାଧବପୁରୀ ।
ମନେ ମନେ ଚିନ୍ତେ ବନବାସ ଗିୟା କରି ।।
ଲୋକ ମଧ୍ୟେ ଭ୍ରମି କେନେ ବୈଷ୍ଣବ ଦେଖିତେ ।
ସେ ବୈଷ୍ଣବ ନାମ ବୋଲ ନା ଶୁନି ଜଗତେ ।।
ଅତଏବ ଏ ସକଲ ଲୋକ ମଧ୍ୟ ହୈତେ ।
ବନେ କଥା ନହେ ଅବୈଷ୍ଣବେର ସହିତେ ।
ଏଇମତ ମନୋଦୁଃଖେ ଭାବିତେ ଚିନ୍ତିତେ ।
ଈଶ୍ୱର ଇଚ୍ଛାୟ ଦେଖା ଅଦ୍ୱୈତ ସହିତେ ।।
ବିଷ୍ଣୁଭକ୍ତି ଶୂନ୍ୟ ଦେଖି ସକଲ ସଂସାର ।
ଅଦ୍ୱୈତ ଆଚାର୍ଯ୍ୟ ଦୁଃଖେ ଭାବେନ ଅପାର ।।
ତଥାପି ଅଦ୍ୱୈତ ସିଂହ କୃଷ୍ଣେର କୃପାୟ ।
ପ୍ରୌଢ଼କରି ବିଷ୍ଣୁଭକ୍ତି ବାଖାନେ ସଦାୟ ।।
ନିରନ୍ତର ପଢ଼ାୟେନ ଗୀତା ଭାଗବତ ।
ଭକ୍ତି ବାଖାନେନ ମାତ୍ର ଗ୍ରନ୍ଥେର ଯେ ମତ ।
ହେନଇ ସମୟ ମାଧବେନ୍ଦ୍ର ମହାଶୟ ।
ଅଦ୍ୱୈତେର ଗୃହେ ଆସି ହଇଲା ଉଦୟ ।।
ଦେଖିୟା ଅଦ୍ୱୈତ ତାର ବୈଷ୍ଣବ ଲକ୍ଷଣ ।
ପ୍ରଣାମ କରିୟା ପଡ଼ିଲେନ ସେଇକ୍ଷଣ ।।
ମାଧବେନ୍ଦ୍ରପୁରୀଓ ଅଦ୍ୱୈତ କରି କୋଲେ ।
ସିଞ୍ଚିଲେନ ଅଙ୍ଗ ତାଁର ପ୍ରେମାନନ୍ଦ ଜଲେ ।

ଅନ୍ୟୋନ୍ୟେ କୃଷ୍ଣକଥା ରସେ ଦୁଇ ଜନ ।
ଆପନାର ଦେହ କାଗେ ନାହିକ ସ୍ମରଣ ।।
ମାଧବପୁରୀର ପ୍ରେମ ଅକଥ୍ୟ କଥନ ।
ମେଘ ଦରଶନେ ମୂର୍ଚ୍ଛା ହୟ ସେଇକ୍ଷଣ ।।
କୃଷ୍ଣନାମ ଶୁନିଲେଇ କରେନ ହୁଙ୍କାର ।
ଦଣ୍ଡେକ ସହସ୍ର ହୟ କୃଷ୍ଣେର ବିକାର ।।
ଦେଖିୟା ତାହାର କୃଷ୍ଣଭକ୍ତିର ଉଦୟ ।
ବଡ ସୁଖୀ ହେଲ ଅଦ୍ୱୈତ ମହାଶୟ ।।
ତାର ଠାଇଁ ଉପଦେଶ କରିଲ ଗ୍ରହଣ ।
ହେନମତେ ମାଧବେନ୍ଦ୍ର ଅଦ୍ୱୈତ ମିଲନ ।।

(ଶ୍ରୀ ଚୈତନ୍ୟ ଭାଗବତ, ୪ଥ ଅଧ୍ୟାୟ)

## ଅଦ୍ୱୈତପ୍ରକାଶ ମତରେ ଶ୍ରୀ ପୁରୀପାଦଙ୍କ ସହିତ ଶ୍ରୀ ଅଦ୍ୱୈତାଚାର୍ଯ୍ୟ ପ୍ରସଙ୍ଗ ଏବଂ ଯୁଗଲ-ବିଗ୍ରହ ପ୍ରତିଷ୍ଠା କରିବାକୁ ପରାମର୍ଶଦାନ

ଏକଦିନେ ପୁରୀ ରାଜ ଶ୍ରୀମନ୍ ମାଧବେନ୍ଦ୍ର ।
ଶାନ୍ତିପୁରେ ଉଦୟ ହଇଲା ଭକ୍ତିଚନ୍ଦ୍ର ।।
ମୁଖେ କୃଷ୍ଣରବ ଦେହେ ପ୍ରେମେ ମହାର୍ଣ୍ଣବ ।
ତେଁଇ ସ୍ୱୟଂ ବ୍ରଜକଳ୍ପତରୁର ଆବିର୍ଭାବ ।।
ପରମ ବୈରାଗ୍ୟ ପୁରୀର ବାହ୍ୟାପେକ୍ଷା ନାଇଁ ।
ତଥାପି ପ୍ରଭୁର ସ୍ନେହେ ଆଇଲା ତାର ଠାଇଁ ।।
ପୁରୀର ଦର୍ଶନେ ପ୍ରଭୁ ପ୍ରେମାବିଷ୍ଟ ହୈଲା ।
ଗଲେ ବସ୍ତ୍ର ବାନ୍ଧି ତାରେ ଦଣ୍ଡବତ୍ କୈଲା ।।
ପୁରୀ ତାଁରେ ଆଲିଙ୍ଗିୟା କୁଶଲ ପୁଛିଲା ।
ପ୍ରଭୁ କହେ, ମଦନଗୋପାଲ ଦୟା କୈଲା ।।
ପୁରୀ କହେ, କୃଷ୍ଣସେବାର ଅଲୌକିକ ଶକ୍ତି ।
ତାହେ ଜୀବ ପାୟ ନିତ୍ୟ ଭାଗବତୀ ରତି ।।

ତବେ ପୁରୀ ବିଶାଖା ନିର୍ମିତ ଚିତ୍ରପଟ ।
ଦରଶନ କରି ହୋଇଲା ମହାପ୍ରେମାବିଷ୍ଟ ॥
କ୍ଷଣେ ହାସେ କ୍ଷଣେ କାନ୍ଦେ କ୍ଷଣେ କରେ ନୃତ୍ୟ
ମହାଭାଗବତ ପୁରୀର କେବା ଜାନେ ତତ୍ତ୍ୱ ॥
କତକ୍ଷଣେ ପୁରୀରାଜେର ବାହ୍ୟ ସ୍ଫୂର୍ତ୍ତି ହୋଇଲ
ତବେ କୃଷ୍ଣପ୍ରାପ୍ତେର ସହଜ ଉପାୟ କହିଲ ॥
ପୁରୀ କହେ ବାଛା ତୁହୁଁ ଶୁଦ୍ଧ ପ୍ରେମବାନ୍ ।
ଶ୍ରୀରାଧାର ଚିତ୍ରପଟ କରହ ନର୍ମାଣ ॥
ରାଧାକୃଷ୍ଣ ଦର୍ଶନେ ହୟ ଗୋପୀଭାବୋଦୟ ।
୨ ଅତଏବ ଯୁଗଲ ସେବା ସର୍ବଶ୍ରେଷ୍ଠ ହୟ ।.
ଆର ଏକ କଥା କହି ଶୁଣ ମନଦିୟା ।
କୃଷ୍ଣାର୍ଥ ସଂସାର କର ବିବାହ କରିୟା ॥
କୃଷ୍ଣ କୃପାୟ ହଇବେ ତୋହାର ବହୁତ ସନ୍ତାନ ।
ଜୀବ ନିସ୍ତାରିବେ କବେ ଦିୟା କୃଷ୍ଣନାମ ॥
ପ୍ରଭୁ କହେ, ଶ୍ରୀବିଗ୍ରହ ସେବାତେ ମଙ୍ଗଲ ।
ଅପରାଧ ହୋଇଲେ ବଂଶ ଯାୟ ରସାତଲ ॥
ପ୍ରଭୁ କହେ, ଦୟାସନ୍ଧୁ କୃଷ୍ଣ ତୋର ବଶ ।
ଅପରାଧ ନା ଲଇବ ପୁରୁଷ ଚତୁର୍ଦ୍ଦଶ ॥
ଗୁରୁ ଆଜ୍ଞାୟ ମୋର ପ୍ରଭୁ ପ୍ରେମାବିଷ୍ଟ ମନେ ।
ଶ୍ରୀରାଧାର ଚିତ୍ରପଟ ଚତ୍ରପଟ କରିଲା ନିର୍ମାଣେ ।
ଏଇ ଦୁଇ ସିଦ୍ଧମୂର୍ତ୍ତି ଦରଶନ କୈଲେ ।
ଅନାୟାସେ ଶ୍ରୀରାଧାକୃଷ୍ଣେର ପ୍ରେମଧନ ମିଲେ ॥
ତେବ ଶ୍ରୀ ରାଧିକା ଶ୍ରୀମଦନଗୋପାଲେ ।
ଅଭିଷେକ କୈଲା ପୁରୀ ମହାକୁତୂହଲେ ॥
ନାନାବିଧ ମିଷ୍ଟଅନ୍ନ ଭୋଗ ଲାଗାଇଲ ।
ଆଚମନୀ ଦିୟା କର୍ପୂର-ତାମ୍ବୁଲ ଅର୍ପିଲ ।
ଅପୂର୍ବ ଯୁଗଲମୂର୍ତ୍ତି ଦେଖି ଲୋକ ସବ ।
ଦଣ୍ଡବତ୍ କରି କୈଲ * ନାନାବିଧ ସ୍ତବ

× × ×

* ( ଯୁଗଲମୂର୍ତ୍ତିର ପ୍ରଥମ ପ୍ରକାଶକ ଶ୍ରୀ ଜୟଦେବ ଗୋସ୍ୱାମୀ । ଦ୍ୱିତୀୟ ପ୍ରକାଶ ଶ୍ରୀଲ ମାଧବେନ୍ଦ୍ର ପୁରୀପାଦ । )

ମହାପ୍ରସାଦେର ଦିବ୍ୟ ସୌରଭାକର୍ଷଣେ ।
ଓଲିଭବେ କୃଷ୍ଣୋଛିଷ୍ଟ ପାଇଲ ସର୍ବଜନେ ॥
ତବେ ଲୋକ ଶିଖାଇତେ ପ୍ରଭୁ ସଯତନେ ।
କୃଷ୍ଣମନ୍ତରଜ ଲୈଲ ପୁରୀରଜ ସ୍ଥାନେ ॥
ଦିନ କତ ପରେ ପ୍ରଭୁ ବିଦାୟ ମାଗିଲ ।
ବହୁତ ଆଗ୍ରହ କରି ପ୍ରଭୁ ନିଷେଧିଲ ॥
ପୁରୀ କହେ ଯାଓଁ ମୁଇଁ ଶ୍ରୀପୁରୁଷୋତ୍ତମେ ।
ଗୋପାଲ ଆଦେଶ କୈଲ ଚନ୍ଦନାହରଣେ ॥
ପ୍ରଭୁ କହେ କେନେ ଗୋପାଲ ମାଗୟେ ଚନ୍ଦନ ।
ତାହା ଶୁନିବାରେ ମୋର ଉତ୍କଣ୍ଠିତ ମନ ॥
ପୁରୀ କହେ, ଶ୍ରୀଗୋପାଲ ସ୍ୱତନ୍ତ୍ର ଈଶ୍ୱର ।
ମୋ ଅଧମେ ଦୟାକରି ହଇଲ ସଦୟ ॥

× × ×

ଗୋପାଲେର ଦୃଢ଼ ଆଜ୍ଞା ଲଂଘେ କୋନ୍ ଜନେ ।
ତେଇଁ ଏଇ ଦେଶେ ଆଇଲୁଁ ଚନ୍ଦନ ସାଧନେ ।
କୃଷ୍ଣଭକ୍ତି ସୂର୍ଯ୍ୟ ତୋର ସଦ୍‌ବାଂଛା କର୍ଷଣେ ।
ଶାନ୍ତିପୁର ଶାନ୍ତିପୁରେ ଆଇନୁ ତବ ସ୍ଥାନେ ॥
ପୁରୀ ମୁଖେ ଶୁନି କୃଷ୍ଣେର ଦୟାର ତାତ୍ପର୍ଯ୍ୟ ।
ପ୍ରେମାବିଷ୍ଟ ହୈୟା ହୁଙ୍କାର କରେନ ଆଶ୍ଚର୍ଯ୍ୟ ॥

ପ୍ରଭୁ କହେ, କୃଷ୍ଣଚନ୍ଦ୍ର ବଡ଼ ଦୟାମୟ ।
ଭକ୍ତବତ୍ସଲତା ମହାଶକ୍ତିର ଆଶ୍ରୟ ॥

× × ×

ଏତ କହି ପ୍ରଭୁବର ସ୍ତମ୍ଭିତ ହଇଲ ।
ପୁରୀ ତାରେ ସୁସ୍ଥ କରି ବିଦାୟ ମାଗିଲ ॥
ପ୍ରଭୁ, ପୁରୀରଜେ ଅଷ୍ଟ ଅଙ୍ଗେ ପ୍ରଣମିଲ ।
ପୁରୀ, ତାରେ ଆଲିଙ୍ଗିୟା ଆଶୀର୍ବାଦ କୈଲ ॥

(ଅଦ୍ୱୈତ ପ୍ରକାଶ. ୫ମ ତରଙ୍ଗ)

## ଶ୍ରୀ ଅଦ୍ୱୈତ-ପତ୍ନୀ ଶ୍ରୀ ସୀତାଦେବୀଙ୍କୁ ଶ୍ରୀ ପରୀରାଜଙ୍କର ସ୍ୱପ୍ନରେ ଶ୍ରୀ କୃଷ୍ଣମନ୍ତ୍ରରାଜ ପ୍ରଦାନ

ଏକଦିନ ଶ୍ରୀସୀତାମାତାର ସ୍ୱପ୍ନାବେଶେ ।
ପୁରୀ ଆସି କହେ ସୁମଧୁର ଭଷେ ॥
ଶୁନ ସୀତାଦେବୀ ମୋର ନାମ ମାଧବେନ୍ଦ୍ର ।
ମୋର ସ୍ଥାନେ ମନ୍ତ୍ର ଲୈଲ ଶ୍ରୀଅଦ୍ୱୈତଚନ୍ଦ୍ର ॥
ଯେଇ ନିତ୍ୟ ସିଦ୍ଧ କୃଷ୍ଣମନ୍ତ୍ର ଦିନୁ ତାରେ ।
ସେଇ କୃଷ୍ଣାକର୍ଷୀ ମନ୍ତ୍ରରାଜ ଆଜ ଦିମୁ ତୋରେ ॥
ଅଦୀକ୍ଷିତେର ପକ୍ୱ ଅନ୍ନ କୃଷ୍ଣ ନାହି ଖାୟ ।
ସ୍ୱେଚ୍ଛାସ୍ତରେ ଦିଲେ ମହା ଅପରାଧ ହୟ ॥
ସୀତା କହେ ବହୁ ଭାଗ୍ୟ ତୋମାର ପାଇନୁ ଦେଖା ।
ଦେହାତ୍ମା ଶୋଧନ କର ଦିୟା ମନ୍ତ୍ରଦୀକ୍ଷା ॥
ତବେ ପୁରୀ ସୀତାରେ ସେଇ କୃଷ୍ଣମନ୍ତ୍ର ଦିଲ ।
ଦେଖିତେ ଦେଖିତେ ପୁରୀ ଅନ୍ତର୍ହିତ ହୈଲ ॥
ଜାଗି ସୀତାମାତା କହେ କିବା ଚମତ୍କାରେ ।
ସ୍ୱପ୍ନାଦେଶେ ପୁରୀରାଜ ମନ୍ତ୍ର ଦିଲ ମୋରେ ॥

(ଅଦ୍ୱୈତପ୍ରକାଶ . ୫ମ ତରଙ୍ଗ)

## ଶ୍ରୀଲ ମାଧବେନ୍ଦ୍ରଙ୍କ ତତ୍ତ୍ୱ ଏବଂ ଶ୍ରୀ ରେମୁଣା ମାହାତ୍ମ୍ୟ

ମନ୍ତ୍ରଯୁକ୍ତ ପୌର୍ଣ୍ଣମାସୀ ପୂର୍ବକାଲେ ହନ ।
ଏବେ ଶ୍ରୀ ମାଧବେନ୍ଦ୍ରପୁରୀ କହିଲ କାରଣ ॥

(ବୈଷ୍ଣବାସ୍ତର ଦର୍ପଣ : ୫ମ ବିଭାଗ)

ପୂର୍ବେ ଶ୍ରୀ କୃଷ୍ଣେର ଦୂତୀ ପୌର୍ଣ୍ଣମାସୀ ଯିନି ।
ଏବେ ଶ୍ରୀ ମାଧବପୁରୀ ହଇଲେନ ତିନି ॥

## ପୌର୍ଣ୍ଣମାସୀଙ୍କ ଧ୍ୟାନ

ପୌର୍ଣ୍ଣମାସ୍ୟା ଅଙ୍ଗକାନ୍ତିସ୍ତପ୍ତକାଞ୍ଚନ ସନ୍ନିଭ ।
ଶୁକ୍ଳବସ୍ତ୍ର ପରିଧାନା ବହୁରତ୍ନ ବିଭୂଷିତା ॥

ପିତାସୁରତ ଦେବଷ୍ଟ ମାତା ଚନ୍ଦ୍ରକଳା ସତୀ ।
ପ୍ରବଳସ୍ତୁ ପତିସ୍ତସ୍ୟା ମହାବିଦ୍ୟା ଯଶସ୍କରୀ ।।
ଭ୍ରାତାପି ଦେବପ୍ରସ୍ଥଷ୍ଟ ବ୍ରଜେ ସିଦ୍ଧାଶିରୋମଣିଃ ।
ନାନା ସନ୍ଧାନକୁଶଳା ଦ୍ୱୟୋଃ ସଙ୍ଗମକାରିଣୀ ।।

(ଶ୍ରୀଶ୍ରୀ କୃଷ୍ଣଗଣୋଦ୍ଦେଶ ଦୀପିକା)

ତସ୍ୟାଥ : ପୌର୍ଣ୍ଣମାସୀଙ୍କର ଅଙ୍ଗକାନ୍ତି ତପ୍ତକାଞ୍ଚନ ନ୍ୟାୟ, ପରିଧାନରେ ଶୁକ୍ଳବସନ ଏବଂ ରତ୍ନବିଭୂଷିତା । ଏହାଙ୍କ ପିତା ସୁରତଦେବ, ମାତା ପତିବ୍ରତା ଚନ୍ଦ୍ରକଳା । ପତି ପ୍ରବଳ । ନିଜେ ମହାବିଦ୍ୟାରେ ବିଶେଷ ଯଶସ୍ୱିନୀ ଓ ବ୍ରଜମଣ୍ଡଳରେ ସିଦ୍ଧାଗଣଙ୍କର ଶିରୋମଣି । ଭ୍ରାତାଙ୍କ ନାମ ଦେବପ୍ରସ୍ଥ । ପୌର୍ଣ୍ଣମାସୀ ନାନା ସନ୍ଧାନ କୁଶଳା ଓ ଶ୍ରୀ ଶ୍ରୀ ରାଧାକୃଷ୍ଣଙ୍କର ମିଳନକାରିଣୀ ।

ପୌର୍ଣ୍ଣମାସୀ ଭଗବତୀ ସର୍ବସିଦ୍ଧି ବିଧାୟିନୀ ।
କଷାୟବସନା ଗୌରୀ କାଶକେଶୀଦରାୟତା ।।
ମାନ୍ୟାବ୍ରଜେଶ୍ୱରାଦୀନାଂ ସର୍ବେଷାଂ ବ୍ରଜବାସିନାମ୍ ।
ଦେବର୍ଷେଃ ପ୍ରିୟଶିଷ୍ୟେୟମୁପଦେଶେନ ତସ୍ୟା ଯା ।।
ସାନ୍ଦୀପନିଂ ସୁତଂ ସୋୟଂ ହିତ୍ୱାବନ୍ତୀପୁରୀମାପି ।
ସ୍ୱାଭୀଷ୍ଟ ଦୈବତପ୍ରେମ୍ଣା ବ୍ୟାକୁଳା ଗୋକୁଳଂଗତା ।।

(ଶ୍ରୀକୃଷ୍ଣଗଣୋଦ୍ଦେଶ ଦୀପିକା ୬୭-୬୯ ଶ୍ଳୋକ)

ତସ୍ୟାର୍ଥ : ଭଗବତୀ ପୌର୍ଣ୍ଣମାସୀ, ସର୍ବସିଦ୍ଧି ବିଧାୟିନୀ, ଏହାଙ୍କର ବସନ କଷାୟରଞ୍ଜିତ । ବର୍ଣ୍ଣ ଗୌର । କେଶ କାଶକୁଙ୍କୁମ, ଅର୍ଥାତ୍ ଶୁଭ୍ରବର୍ଣ୍ଣ । ଦେହ କିଞ୍ଚିତ ଦୀର୍ଘ, ବ୍ରଜେଶ୍ୱର ପ୍ରଭୃତି ସମସ୍ତ ବ୍ରଜବାସିଗଣଙ୍କର ମାନ୍ୟ । ଏ ଦେବର୍ଷି ନାରଦଙ୍କର ପ୍ରିୟଶିଷ୍ୟା ଏବଂ ତାହାଙ୍କର ଉପଦେଶରେ ହିଁ ବିଖ୍ୟାତ (ଶ୍ରୀକୃଷ୍ଣ ଓ ଶ୍ରୀବଳରାମଙ୍କର ଅଧ୍ୟାପକ) ସାନ୍ଦୀପନି ମୁନି ନାମକ ପୁତ୍ରକୁ ପରିତ୍ୟାଗ କରି ଅବନ୍ତୀପୁରୀରୁ ନିଜାଭୀଷ୍ଟଦେବ ଶ୍ରୀକୃଷ୍ଣଙ୍କଠାରେ ପ୍ରେମବଶତଃ ଶ୍ରୀଗୋକୁଳକୁ ଆସି ବାସ କରିଥିଲେ ।

ପୌର୍ଣ୍ଣମାସୀ ରୂପେ ପୁରୀ ଆସି ରେମୁଣାୟ ।
ଯମୁନାପଲିନେ ରାସଲୀଳା ନିରଖୟ ।।

ତ୍ରେତାଯୁଗେ ରାମଚନ୍ଦ୍ର ରେମୁଣାୟ ଆସି ।
ଶ୍ରୀସୀତା ଲକ୍ଷ୍ମଣ ସହ ଭ୍ରମେ ଦିବାନିଶି ॥
ରମଣୀୟ ସ୍ଥାନ ହେରି ଶ୍ରୀସୀତାରମଣ * ।
ରେମୁଣା ବୋଲିଣ ନାମ ଦିଲେନ ତଖନ ॥
ସୀତାଦେବୀ ରଜଃସ୍ୱଳା ହେଥାୟ ହଇଲ ।
ସେଇହେତୁ ଚାରିଦିନ ବିଶ୍ରାମ କରିଲ ॥
ଚତୁର୍ଥ ଦିବସେ ସୀତା ସ୍ନାନେର ମାନସେ ।
ଗଙ୍ଗା ଆନି ଦେହ ପ୍ରଭୁ କହେନ ହରଷେ ॥
ଏତ ଶୁନି ସୀତାପତି ଶର ନିକ୍ଷେପିଲ ।
ସପ୍ତଶର ପ୍ରୟୋଗେତେ ଗଙ୍ଗା ନିକାଶିଲ ॥
ତାହାତେ ହଇଲ ଗଙ୍ଗା ସପ୍ତଶରା ନାମ ।
ସାତସେଁାୟା ବଲି ଏବେ ଯାହାର ଆଖ୍ୟାନ ॥
ସପ୍ତଶରା ଗଙ୍ଗାସ୍ନାନ କରି ତିନ ଜନେ ।
ଗ୍ରାମ୍ୟଦେବୀ ପୂଜିଲେନ ଅତି ହୃଷ୍ଟ ମନେ ॥
ସେଇ ହଇତେ ଗ୍ରାମ୍ୟଦେବୀ ରାମଚଣ୍ଡୀ ନାମ ।
ଯାହାର ଦର୍ଶନେ ହୟ ପୂର୍ଣ୍ଣ ମନସ୍କାମ ॥
ଗ୍ରାମ୍ୟଦେବୀର ନାମ ଯବେ ରାମଚଣ୍ଡୀ ହଇଲ ।
ଗ୍ରାମେର ସକଲେ ତାଁର ନାମେ ହାଟ କୈଲ ॥
ସପ୍ତଶରା ତୀରେ ବିରାଜିତ ଶ୍ରୀଶଙ୍କର ।
ବାଣାସୁର ସଂସ୍ଥାପିତ X ନାମ ଗର୍ଗେଶ୍ୱର ॥
ସପ୍ତଶରା ହେରେ ପୁରୀ ଶ୍ରୀଯମୁନା ଭ୍ରମେ ।
ଭ୍ରମିଲେନ ତାଁର ତୀରେ ଶୋଭା ହେରି କ୍ରମେ ॥

ଶ୍ରୀମଦ୍ ଗୋପୀଶ୍ୱରଂ ବନ୍ଦେ ଶଙ୍କରଂ କରୁଣାମୟମ୍ ।
ସର୍ବକ୍ଲେଶହରଂ ଦେବଂ ବୃନ୍ଦାରଣ୍ୟେ ରତିପ୍ରଦମ୍ ॥

---

* ଶ୍ରୀରାମଚନ୍ଦ୍ର ରମଣୀୟ ସ୍ଥାନ ଦେଖି ଶ୍ରୀସୀତାଦେବୀଙ୍କୁ ସମ୍ଭୋଗ କରିଥିଲେ । (ଶ୍ରୁତିସାର) ।

X 'ସଂପୂଜିତ' ପାଠାନ୍ତର । ଏହି ପାଠାନ୍ତର ପଦ ହିଁ ଯୁକ୍ତିଯୁକ୍ତ । କାରଣ ବାଣାସୁର ସଂସ୍ଥାପିତ ହେଲେ "ବାଣେଶ୍ୱର" ନାମ ହୋଇଥାନ୍ତା ।

ବୃନ୍ଦାବନାବଳୀପତେ ଜୟ ସୋମ ସୋମମୌଳେ—
ସନନ୍ଦନ ସନାତନ ନାରଦେଭ୍ୟଃ ।
ଗୋପେଶ୍ୱର ବ୍ରଜବିଳାସୀଯୁଗାଂଘ୍ରିଂ ପଦ୍ମେ
ଭକ୍ତିଂ ପ୍ରଯଚ୍ଛ ନିରୁପାଧିଂ ନମୋ ନମସ୍ତେ ।।

(ଭକ୍ତିରତ୍ନାକର ୫ମ ତରଙ୍ଗ)

ଗର୍ଗେଶ୍ୱରେ ହେରିଲେନ ସତ୍ୟ ଗୋପୀଶ୍ୱର ।
ରମଚଣ୍ଡୀ ଯୋଗମାୟା ହଇଲ ଗୋଚର ।।
ଚଣ୍ଡୀହାଟ ଶ୍ରୀଯମୁନା-ପୁଲିନ ହେରିଲ୍ଲ ।
ଶ୍ରୀଗୋପୀନାଥେର ରାସଲୀଲା ନିରେଖିଲ୍ଲ ।

× × ×

ଶ୍ରୀମାନ ରାସରସାରମ୍ଭୀ ବଂଶୀବଟ ତଟସ୍ଥିତଃ ।
କର୍ଷନ୍ ବେଣୁସ୍ୱନୈର୍ଗୋପୀ ଗୋପୀନାଥଃ ଶ୍ରିୟେଽସ୍ତୁନଃ ।।
(ଶ୍ରୀଚୈତନ୍ୟଚରିତାମୃତ ୧୭ ଶ୍ଲୋକ)

ତସ୍ୟାର୍ଥ : ବଂଶୀ ବଟତଟ ବିହାରୀ ଯେଉଁ ଗୋପୀନାଥ, ବେଣୁସ୍ୱରରେ ବ୍ରଜରମାଗଣଙ୍କୁ ଆକର୍ଷଣ କରି ରାସକ୍ରୀଡ଼ାରେ ପ୍ରବୃତ୍ତ ହୋଇଥିଲେ, ସେ ଆମ୍ଭମାନଙ୍କର ମଙ୍ଗଳବିଧାନ କରନ୍ତୁ ।

ଶ୍ରୀରେମୁଣାରେ ପ୍ରସିଦ୍ଧ ପଞ୍ଚତୀର୍ଥ (ଶ୍ରୀକ୍ଷୀରଚୋରା ଗୋପୀନାଥ, ଶ୍ରୀଳ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀଙ୍କର କାଷ୍ଠପାଦୁକା ସହ ସ୍ଥୂଳ ସମାଧି-ମନ୍ଦିର, ଶ୍ରୀରାମଚନ୍ଦ୍ର ପୂଜିତ ଗ୍ରାମଦେବତୀ ଶ୍ରୀରାମଚଣ୍ଡୀ, ଶ୍ରୀଗର୍ଗମୁନି ଆବିଷ୍କୃତ ଏବଂ ପ୍ରତିଷ୍ଠିତ ଓ ବାଣାସୁର ପୂଜିତ ଶ୍ରୀଗର୍ଗେଶ୍ୱର ଶିବଲିଙ୍ଗ, ଶ୍ରୀରାମଚନ୍ଦ୍ର କର୍ତ୍ତୃକ ନିକ୍ଷିପ୍ତ ସପ୍ତଶର ଦ୍ୱାରା ପାତାଳରୁ ଉଦ୍‌ଭୂତ ଶପ୍ତଶରା ନଦୀ, ଏତଦ୍‌ବ୍ୟତୀତ ଶ୍ରୀଗୋପୀନାଥଙ୍କ ଶ୍ରୀଅଙ୍ଗ ଅନିରୁଦ୍ଧାବତାର ଶ୍ରୀରସିକାନନ୍ଦଦେବଗୋସ୍ୱାମୀ ପ୍ରଭୁପାଦଙ୍କର ଅପ୍ରକଟ ପରେ ତାହାଙ୍କର ପୁଷ୍ପ-ସମାଧି ଓ ବ୍ୟବହୃତ ପାଦୁକା-ଶଯ୍ୟାଦି, ଶ୍ରୀମନ୍ଦିରର ଅନତିଦୂରରେ ଶ୍ରୀମଦ୍ ଭାଗବତ, ଶ୍ରୀମଦ୍ ଭଗବଦ୍‌ଗୀତା ଓ ବିଷ୍ଣୁପୁରାଣର ଟୀକାକାର ଶ୍ରୀ ଶ୍ରୀଧର ସ୍ୱାମୀ ପାଦଙ୍କର ଜନ୍ମସ୍ଥାନ— ମୟୂର ଗ୍ରାମ ବା ମରେଇଗା ଏବଂ ଶ୍ରୀମନ୍ଦିରର ଅତି ସନ୍ନିକଟରେ ବୈଷ୍ଣବାଗ୍ରଣୀ ମହର୍ଷି ବ୍ୟାସଦେବଙ୍କର ବେଦାନ୍ତ ଦର୍ଶନର ଅଚିନ୍ତ୍ୟ ଭେଦାଭେଦବାଦ ପ୍ରତିଷ୍ଠାପକ ଶ୍ରୀ ବଳଦେବ ବିଦ୍ୟାଭୂଷଣ ପ୍ରଭୁପାଦଙ୍କର ଜନ୍ମସ୍ଥାନ ଦର୍ଶନୀୟ । ଏହା ଦର୍ଶନ କରି ଭକ୍ତଗଣ ପବିତ୍ର ଓ ଧନ୍ୟ ହେଉଛନ୍ତି ।

ଶ୍ରୀପୁରୀପାଦଙ୍କର ଚରିତ୍ର ମାଧୁର୍ଯ୍ୟରେ ମୁଗ୍ଧ ହୋଇ ଶ୍ରୀମନ୍ମହାପ୍ରଭୁଙ୍କର ଶ୍ରୀମୁଖୋକ୍ତି—

ପୁରୀର ପ୍ରେମେର କାଷ୍ଠା କରିୟା ବିଚାର ।
ଅଲୌକିକ ପ୍ରେମଚିତ୍ତେ ଲାଗେ ଚମତ୍କାର ।।
ପରମ ବିରକ୍ତ ମୌନୀ ସର୍ବତ୍ର ଉଦାସୀନ ।
ଗ୍ରାମ୍ୟବାର୍ତ୍ତା ଭୟେ ଦ୍ୱିତୀୟ ସଙ୍ଗହୀନ ।।

ଶ୍ରୀଳ ମାଧବେନ୍ଦ୍ର ପୁରୀ ଗୋସାମୀ ବିରଚିତ ରୂପାଭିସ ର ପଦ ।

(ରାଗ-ବିହାଗଡ଼ା, ତାଳ-ଚଞ୍ଚୁପୁଟ)

ସାଜଲ ଧନୀ ଚନ୍ଦ୍ରବଦନୀ
ଶ୍ୟାମ ଦରଶନ ଆଶେ ।
ଯତ ସଙ୍ଗିନୀଗଣ, ରଙ୍ଗିଣୀ ସବ,
ଘେରିଲ ଚାରିପାଶେ ।।
ତରୁଣାରୁଣ ଚରଣ ଯୁଗଲ
ମଞ୍ଜୀର ତହିଁ ଶୋଭେ ।
ଭୃଂଗାବଲୀ ପୁଞ୍ଜ ପୁଞ୍ଜ
ଗୁଞ୍ଜରେ ମଧୁ ଲୋଭେ ।।
କୁମ୍ଭ କୁମ୍ଭ ଜିନି ନିତମ୍ବ
କେଶରୀ କ୍ଷିଣୀ ମାଝେ ।
ପରି ନୀଳାମ୍ବର ପଟାମ୍ବର
କିଙ୍କିଣୀ ତହିଁ ବାଜେ ।।
ବାହୁ ଯୁଗଲ ଥିର ବିଜୁରୀ
କରୀଶାବକ ଶୁଣ୍ଡେ ।
ହେମାଙ୍ଗଦ ମଣି କଙ୍କଣ
ନଖରେ ଶଶୀଖଣ୍ଡେ ।।
ହେମାଚଳ କୁଚ ମଣ୍ଡଳ
କାଁଚଲି ତହିଁ ଶୋଭେ ।
ଚନ୍ଦ୍ରକାନ୍ତ ଧାନ୍ତ ଦମନ,
କଣ୍ଠେ କଣ୍ଠେ ଶୋଭେ ।।
ଜାମ୍ବୁନଦ ହେମଯୁକ୍ତ
ମୁକୁତା ଫଳ ପାଁତି ।

ଫଣିମଣିଯୁତ, ଦାମ ସହିତ
ଦାମିନୀ ସମ ଭାଁତି ॥
ବିମ୍ବଫଳ, ନିନ୍ଦି ଅଧର
ଦାଡ଼ିମବୀଜ ଦଶନା ।
ବେସର ତହିଁ ନଲକ ଝଲକେ,
ମନ୍ଦ ମନ୍ଦ ହାସନା ॥
ନାସା ତିଳଫୁଲ ଚୂଲ କବରୀ
କବରୀ ଛାଁଦେ ।
ମଦନମୋହନ— ମୋହିନୀ ଧନୀ,
ସାଜଲି ତହିଁ ରାଧେ ॥
ନବଯୌବନୀ ଚନ୍ଦ୍ରବଦନୀ
ବୃନ୍ଦାବନ ବାଟେ ।
ମାଧବେନ୍ଦ୍ର ପୁରୀ ରଚିତ ଭଷ,
ବର୍ଣ୍ଣି ପୂର୍ଣ୍ଣି ପାଟେ ॥

---

## ଶ୍ରୀପୁରୀପାଦକୃତଂ ଶ୍ରୀ ଶ୍ରୀ ରାଧାକୃଷ୍ଣ ଯୁଗଳାଷ୍ଟକମ୍—

କୃଷ୍ଣପ୍ରେମମୟୀ ରାଧା ରାଧା ପ୍ରେମମୟୋ ହରିଃ ।
ଜୀବନେ ମରଣେ ବାପି ରାଧାକୃଷ୍ଣୌ ଗତିର୍ମମ ॥ ୧ ॥
ବୃନ୍ଦାବନବିହାରାଢ଼୍ୟୌ ସଚ୍ଚିଦାନନ୍ଦ ବିଗ୍ରହୌ ।
ମଣିମଣ୍ଡପମଧ୍ୟସ୍ଥୌ, ରାଧାକୃଷ୍ଣୌ ନମାମ୍ୟହମ୍ ॥ ୨ ॥
ନୀଳପୀତପଟୌ ଶାନ୍ତୌଶ୍ୟାମଗୌର କଳେବରୌ ।
ସଦାରାସରତୌ ସତ୍ୟୌ ରାଧାକୃଷ୍ଣୌ ନମାମ୍ୟହମ୍ ॥ ୩ ॥
ଯମୁନୋପବନେ ରଢ଼୍ୟୌ କଦମ୍ବତରୁ ମନ୍ଦିରୌ ।
କଳ୍ପଦ୍ରୁମବନ ଶ୍ରେଣୌ ରାଧାକୃଷ୍ଣୌ ନମାମ୍ୟହମ୍ ॥ ୪ ॥
ଯମୁନାସ୍ନାନସୁଭଗୌ ଗୋବର୍ଦ୍ଧନ ବିଳାସିନୌ ।
ଦିବ୍ୟମନ୍ଦ ରମାଲାଢ଼୍ୟୌ ରାଧାକୃଷ୍ଣୌ ନମାମ୍ୟହମ୍ ॥ ୫ ॥
ଭବାବିଷ୍ଟୌ ସଦା ରମ୍ୟୌ ରସଗ୍ରନ୍ଥ ପଣ୍ଡିତେ ।
ମୁରଲୀଗାନ ତତ୍ତ୍ୱଜ୍ଞୋ ରାଧାକୃଷ୍ଣେ ନମାମ୍ୟହମ୍ ॥ ୬ ॥

ମଞ୍ଜୀର ରଞ୍ଜିତ ପଦୌ ନାଧାଗ୍ର ଗଜମୌକ୍ତିକୌ ।
ମଧୁର ସ୍ମେରସୁମୁଖୌ ରାଧାକୃଷ୍ଣେ ନମାମ୍ୟହମ ।। ୭ ।।
ଅନନ୍ତକୋଟି ବ୍ରହ୍ମାଣ୍ଡ ସୃଷ୍ଟି ସ୍ଥିତ୍ୟନ୍ତ କାରିଣୌ ।
ମୋହନୌ ସର୍ବଲୋକାନାଂ ରାଧାକୃଷ୍ଣୌ ନମାମ୍ୟହମ୍ ।। ୮ ।।
ପରସ୍ପର ରସାବିଷ୍ଟୌ ପରସ୍ପର ଗୁଣପ୍ରିୟୌ ।
ରସସାର ସମ୍ପନ୍ନୌ ରାଧାକୃଷ୍ଣୌ ନମାମ୍ୟହମ୍ ।। ୯ ।।

## ଶ୍ରୀଲ ପୁରୀପାଦଙ୍କର ଚିରଅଭ୍ୟସ୍ତ "ଅୟିଦୀନ" ଶ୍ଲୋକ ଶ୍ରୀମନ୍ମହାପ୍ରଭୁଙ୍କ ଶ୍ରୀମୁଖରେ ନବରୂପରେ ଆସ୍ୱାଦନ :

ଏଇ ଶ୍ଲୋକ ପଢ଼ିତେ ପ୍ରଭୁ ହଇଲ ମୂର୍ଚ୍ଛିତେ ।
ପ୍ରେମେତେ ବିବଶ ହୈୟା ପଡ଼ିଲ ଭୂମିତେ ।।
ଆସ୍ତେ ବ୍ୟସ୍ତେ କୋଲେ କରି ନିଲ ନିତ୍ୟାନନ୍ଦ ।
କ୍ରନ୍ଦନ କରିୟା ଉଠେ ପ୍ରଭୁ ଗୌରଚନ୍ଦ୍ର ।।
ପ୍ରେମୋନ୍ମାଦ ହୈଲ ଉଠି ଉଠି ଉଠେ ଧାୟ ।
ହୁଙ୍କାର କରୟେ ହାସେ କାଁଦେ ନାଚେ ଗାୟ ।।
"ଅୟିଦୀନ" "ଅୟିଦୀନ" ବଲେ ବାର ବାର ।
କଣ୍ଠେ ନା ଉଚରେ ବାଣୀ ବହେ ଅଶ୍ରୁଧାର ।।
କମ୍ପ ସ୍ୱେଦ ପୁଲକାଙ୍ଗ ସ୍ତମ୍ଭ ବୈବର୍ଣ୍ୟ ।
ନିର୍ବେଦ ବିଷାଦ ଜାଡ଼୍ୟ କଭୁ ହର୍ଷ ଦୈନ୍ୟ ।।
ଏଇ ଶ୍ଲୋକ ଉଘାଡ଼ିଲ ପ୍ରେମର କପାଟ ।
ଗୋପୀନାଥେର ସେବକ ଦେଖେ ପ୍ରଭୁର ପ୍ରେମନାଟ ।।

× × ×

ଏଇତ ଆଖ୍ୟାନେ କହି ଦୋଁହାର ମହିମା ।
ପ୍ରଭୁର ଭକ୍ତ ବାତ୍ସଲ୍ୟ ଆଇ ଭକ୍ତେର ମହିମା, ।।
ଗୋପାଲ, ଗୋପୀନାଥ ପୁରୀଗୋସ୍ୱାମୀ ଗୁଣ ।
ଭକ୍ତସଙ୍ଗେ ଶ୍ରୀମୁଖେ ପ୍ରଭୁ କରେନ ଆସ୍ୱାଦନ ।।

× × ×

ତାଁରି ଶିଷ୍ୟ ଲକ୍ଷ୍ମୀପତି ଭକ୍ତରସାଶ୍ରୟ୍
ତାଁର ଶିଷ୍ୟ ମାଧବେନ୍ଦ୍ର ପୁରୀ ମହାଶୟ ।।

ବ୍ରଜଧାମେ ସିଦ୍ଧ କଳ୍ପବୃକ୍ଷ ଅବତାର ।
ଧ୍ଶୟ ଉଜ୍ଜ୍ୱଳରସ ଫଳ ହୟ ଯାର ।।
କୃପାର ସମୁଦ୍ର ହେନ ଆଛେ କେବା ଆର ।
ଯାର ଧର୍ମ ପ୍ରବର୍ତ୍ତିଲ ଏ ତିନ୍ ସଂସାର ।।

———

ଶ୍ରୀପୁରୀ ପାଦଙ୍କର ଲୀଳାନାଟ୍ୟର ଶେଷଦଶ୍ୟର ଯବନିକାର ପ୍ରାକ୍‌ମୁହୂର୍ତ୍ତରେ ମୃଦୁମଧୁର କଣ୍ଠରୁ ଉଚ୍ଚାରିତ ହେବାକୁ ଲଗେ ସ୍ୱ-ରଚିତ ଚିରବିରହଧର୍ମୀ ପ୍ରିୟ କୃଷ୍ଣବିରହ ଗାଥା—

ଅୟି ଦୀନ ଦୟାର୍ଦ୍ର ନାଥ ହେ -
ମଥୁରନାଥ କଦାବଲେକ୍ୟ ସେ ।
ହୃଦୟଂ ତ୍ୱଦାଲେକକାତରଂ
ଦୟିତ ଭ୍ରାମ୍ୟତି କିଂ କରେମ୍ୟହମ୍ ।।

ଅର୍ଥାତ୍, ହେ ଦୀନଦୟାଳ ! ହେ ନାଥ ! ହେ ମଥୁରନାଥ ! କେବେ ତୁମେ ଦେବ ତୁମର ଦରଶନ ? ତୁମେ ଯେ ମୋର ଚିରଦୟିତ ପ୍ରାଣଠାରୁ ବଳି ପ୍ରିୟତମ । ତୁମର ଅଦର୍ଶନରେ ହୃଦୟ ମୋର କାତର; ଭ୍ରମମୟୀ ଦଶାରେ ମୁଁ ପତିତ । ଏବେ ମୁଁ କଣ କରିବି ? ତୁମ ବ୍ୟତୀତ ମୋର କୌଣସି ଉପାୟ ନାହିଁ ।

ଉପରେକ୍ତ ଶ୍ଳୋକର ପ୍ରଶସ୍ତି ପ୍ରସଙ୍ଗରେ ଦାର୍ଶନିକ କବି ଶ୍ରୀକୃଷ୍ଣ ଦାସ କବିରଜ ଗୋସ୍ୱାମୀ ଶ୍ରୀଚୈତନ୍ୟ ଚରିତାମୃତ ଗ୍ରନ୍ଥରେ ଲେଖିଛନ୍ତି—

ଘଷିତେ ଘଷତେ ଯୈଛେ ମଳୟଜ ସାର ।
ଗନ୍ଧ ବାଢ଼େ ତୈଛେ ଏଇ ଶ୍ଳୋକେର ବିଗ୍ୱର ।।
ରତ୍ନଗଣ ମଧ୍ୟେ ଯୈଛେ କୌସ୍ତୁଭମଣି ।
ରସକାବ୍ୟ ମଧ୍ୟେ ତୈଛେ ଏଇ ଶ୍ଳୋକ ଗଣି ।।
ଏଇ ଶ୍ଳୋକ କହିୟାଛେନ ରଧାଠାକୁରଣୀ ।
ତାଁର କୃପାୟ ସ୍ଫୁରିୟାଛେ ମାଧବେନ୍ଦ୍ର ବାଣୀ ।।
କିବା ଗୌରଚନ୍ଦ୍ର ଇହା କରେନ ଆସ୍ୱାଦନ ।
ଇହା ଆସ୍ୱାଦିତେ ଆର ନାହି ଚୌଠଜନ ।।

ଶେଷକାଳେ ଏଇ ଶ୍ଳୋକ ପଢ଼ିତେ ପଢ଼ିତେ ।
ସିଦ୍ଧପ୍ରାପ୍ତ ହେଲ୍ ପୁରୀ ଶ୍ଳୋକ ସହିତେ ।।

ଉପରୋକ୍ତ ଶୋକଟି ବ୍ୟତୀତ ଅବଶିଷ୍ଟ ଗ୍ରଟେଟି ଶ୍ଳୋକ ଶ୍ରୀଳ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀଙ୍କର ଅତି ପ୍ରିୟ ଥିଲା । ତାହା ଶ୍ରୀରୂପଗୋସ୍ୱାମୀପାଦ ତାଙ୍କର ପଦ୍ୟାବଳୀ ଗ୍ରନ୍ଥରେ ଉଦ୍ଧୃତ କରିଅଛନ୍ତି । ଦ୍ୱିତୀୟ ଶ୍ଳୋକଟି ଲୀଳାଶୁକ ଶ୍ରୀ ବିଲ୍ୱ-ମଙ୍ଗଳଙ୍କର ଶ୍ରୀକୃଷ୍ଣ କର୍ଣ୍ଣାମୃତ ଗ୍ରନ୍ଥରେ ମିଳିଥାଏ—

ସନ୍ଧ୍ୟାବନ୍ଦନଂ ଭଦ୍ରମସ୍ତୁ ଭୋ ସ୍ନାନ ତୁଭ୍ୟଂ ନମୋ,
ଭୋ ଦେବାଃ ପିତରଶ୍ଚ ତର୍ପଣବିଧୌ ନାହଂ କ୍ଷମଃ କ୍ଷମ୍ୟତାମ୍ ।
ଯତ୍ର କ୍ୱାପି ନିଷୀଦ୍ୟ ଯାଦବକୁଳୋତ୍ତଂ ମସ୍ୟ କଂସଦ୍ୱିଷଃ
ସ୍ମାରଂ ସ୍ମାରମଘଂ ହରାମି ତଂ ମନ୍ୟେ କିମନ୍ୟେନ ମେ ।।

ଅସ୍ୟାର୍ଥ : ହେ ସନ୍ଧ୍ୟାବନ୍ଦନା ! ତୁମ୍ଭମାନଙ୍କର କଲ୍ୟାଣ ହେଉ ! ହେ ସ୍ନାନ ! ତୁମକୁ ନମସ୍କାର । ହେ ଦେବତା ଓ ପିତୃଗଣ ! ମୁଁ ଆଉ ତର୍ପଣ କରିବାକୁ ସମର୍ଥ ନୁହେ । କ୍ଷମା କରନ୍ତୁ । ଯେକୌଣସି ସ୍ଥାନରେ ଉପବେଶନ କରି ଯାଦବକୁଳାବତଂସ କଂସାରି ଶ୍ରୀହରିଙ୍କୁ ସ୍ମରଣ କରି ମୋର ପାପନାଶ କରୁଛି । ଅତଏବ ଅନ୍ୟ ବିଷୟରେ ମୋର କି ପ୍ରୟୋଜନ ?

ତୃତୀୟ ଶ୍ଳୋକ—

ଅନଙ୍ଗ ରସଚାତୁରୀ ଚପଳ ଚାରୁ ଚେଲାଞ୍ଚଳ—
ସ୍ଖଳନ୍ ମକରକୁଣ୍ଡଳ ସ୍ଫୁରିତକାନ୍ତି ଗଣ୍ଡସ୍ଥଳଃ ।
ବ୍ରଜୋଲ୍ଲାସିତ ନାଗରୀ ନିକର ରାସଲାସ୍ୟୋତ୍ସୁକଃ
ସ ମେ ହୃଦି ମାନସେ ସ୍ଫୁରତୁ କୋଽପି ଗୋପାଳକଃ ।।

ଅସ୍ୟାର୍ଥ—ଅନଙ୍ଗ ରସଚାତୁର୍ଯ୍ୟରେ ଚଞ୍ଚଳ, ସୁନ୍ଦର ଚେଲାଞ୍ଚଳରେ ପରିଶୋଭିତ, ଦୋଳାୟିତ ମକରକୁଣ୍ଡଳର କାନ୍ତିଛଟାରେ ଉଦ୍ଭାସିତ ଗଣ୍ଡସ୍ଥଳ, ଉଲ୍ଲସିତ ବ୍ରଜସୁନ୍ଦରୀ-ଗଣଙ୍କ ସହ ରାସଲାସ୍ୟରେ ସମୁତ୍ସୁକ କୌଣସି ଗୋପାଳକ ମୋର ଅନ୍ତରରେ ଚିରସ୍ଫୂର୍ତ୍ତ ଥାଆନ୍ତୁ ।

ଚତୁର୍ଥ ଶ୍ଳୋକ—

କଦା ଦ୍ରକ୍ଷାମି ନନ୍ଦସ୍ୟ ବାଳକଂ ନୀପମାଳକମ୍ ।
ପାଳକଂ ସର୍ବସତ୍ତ୍ୱାନାଂ ଲସତ୍ତିଳକଭାଳକମ୍ ।।

ଅସ୍ୟାର୍ଥ—ଗଣ୍ଡସ୍ଥଳରେ କଦମ୍ବପୁଷ୍ପର ମାଲ୍ୟଦାମ, ଲଲାଟରେ ହରିଚନ୍ଦନର ସୁନ୍ଦର ତିଳକ, ସ୍ଥାବରଜଙ୍ଗମାତ୍ମକ ନିଖିଳ ବିଶ୍ୱର ପରିପାଳକ ଶ୍ରୀନନ୍ଦାତ୍ମଜ ସେହି ଗୋପବାଳକଙ୍କୁ ମୁଁ କେବେ ଦେଖିବି ?

ପଞ୍ଚମ ଶ୍ଳୋକ—

ଅଧରାମୃତ ମାଧୁରୀଧୁରୀଣୋ ହରିଲୀଳା ମୁରଲୀନିନାଦ ଏଷଃ ।
ପ୍ରତନୋତି ମନଃ ପ୍ରମୋଦ ମୁଚ୍ଚୈର୍ହରିଣୀନାଂ ହରିଣୀଦୃଶାଂ ମୁନୀନାମ୍ ।।

ଅସ୍ୟାର୍ଥ—ଲୀଳାବିଳାସୀ ଶ୍ରୀହରିଙ୍କର ଅଧରାମୃତଧୁରୀଣ—ଅଧରାମୃତ-ବହନକାରୀ ଏହି ସେହି ଉଚ୍ଚ ମୁରଲୀଧ୍ୱନି, ଯାର ମଧୁର ତାନ ହରିଣୀଗଣଙ୍କର, ହରିଣୀନୟନା ବ୍ରଜାଙ୍ଗନାଗଣଙ୍କର ଏବଂ ହରିପରାୟଣ ମୁନିଗଣଙ୍କ ମନରେ ସର୍ବତୋଭବେ ପ୍ରମୋଦବିସ୍ତାର କରୁଅଛି ।

"ଆକୁଲ ନୟାନେ ଗୃହେ ମେଘପାନେ
ନାଚିଲେ ନୟନେର ତାରା ।

କବିକଳ୍ପନା ଜୀବନରେ ମୂର୍ତ୍ତହୋଇ ଉଠିଥିଲା ଦୈବୀକାମନାର ଏକ ଲୋଭନୀୟ ସ୍ୱପ୍ନ ବାସ୍ତବରେ ମୂର୍ତ୍ତି ପରିଗ୍ରହ କରିଥିଲା । କଳ୍ପଲୋକ ଅବତରଣ କରିଥିଲା ଧୂଳିର ଧରଣୀକୁ ମାଟିର ମର୍ତ୍ତ୍ୟକୁ ଗୋଲୋକୀ ସୁଷମାରେ ମଣ୍ଡିତ କରିଥିଲା ଏକ ଦିବ୍ୟ ଜୀବନ ।

ଶ୍ରୀମନ୍ମହାପ୍ରଭୁଙ୍କର ପୁଣ୍ୟାବିର୍ଭାବ ପୂର୍ବେ ଏହି ପ୍ରେମୋନ୍ମାଦ ଯେଉଁ ଜନୈକ ସନ୍ନ୍ୟାସୀଙ୍କର ଦିବ୍ୟ ମହାଜୀବନରେ ପ୍ରମୂର୍ତ୍ତ ହୋଇ ଦେଖାଦେଇଥିଲା, ତାଙ୍କର ନାମ ଶ୍ରୀ ମାଧବେନ୍ଦ୍ର ପୁରୀ । ଏହାଙ୍କ ଅଲୋକ ସାମାନ୍ୟ ପ୍ରଭବ ବଙ୍ଗବାସୀ ତଥା ଭାରତବାସୀଙ୍କର ଜାତୀୟ-ଜୀବନରେ ଏକ ନବ-ଅଙ୍କୁରୋଦ୍‌ଗମର ସୂଚନା କରିଥିଲା । ଏହି ଚର୍ମଚକ୍ଷୁ ହିଁ ଲୌକିକ ଜଗତର ସ୍ଥାବରଜଙ୍ଗମଠାରେ ପ୍ରତ୍ୟକ୍ଷ କରିଥିଲା ଶ୍ରୀକୃଷ୍ଣ ସନ୍ଦର୍ଶନର ସାର୍ଥକତା । ଯାହା ସତ୍, ଯାହା ଚୈତନ୍ୟମୟ, ଯାହା ଅବିନଶ୍ୱର ଆନନ୍ଦର ଅମୃତମାତ୍ର, ଯାହା ଶାଶ୍ୱତ ଓ ସନାତନ, ତାଙ୍କୁ ଯେ ଏହି ଚଳମାନ ଜଗତରେ କୌଣସି କ୍ଷଣଭଙ୍ଗୁର ଜୀବନ ପ୍ରତ୍ୟକ୍ଷକରି ଧନ୍ୟହୋଇ ଅମରତ୍ୱ ଅର୍ଜନ କରିପାରେ—ଶ୍ରୀମନ୍ମହାପ୍ରଭୁଙ୍କ ପୂର୍ବେ ଶ୍ରୀଳ ମାଧବେନ୍ଦ୍ରପୁରୀ ତାହା ପ୍ରକାଶିତ କରିଯାଇଛନ୍ତି ।

ରଙ୍ଗମୟ ବଙ୍ଗଭୂମି ତାହାଙ୍କୁ ଆକୃଷ୍ଟ କରିଥିଲା । ବଙ୍ଗଦେଶର ବନଭୂମି-ଶ୍ୟାମଳିମାର **ଅନ୍ତହୀନ** ନଭଃନୀଳିମାରେ ସେ ଏକ ଅରୂପର ଅପରୂପ ରୂପମାଧୁର୍ଯ୍ୟ

ଆସ୍ୱାଦନ କରିଥିଲେ । ତଟିନୀର କଳତାନରେ ଶୁଣୁଥିଲେ ଯାହାଙ୍କର ନୂପୁରର ଶିଞ୍ଜନ, ବିହଗର କଳଗାନରେ ଶ୍ରବଣରେ ପ୍ରତିଧ୍ୱନିତ ହେଉଥିଲା ଯାହାଙ୍କର ଅମୃତବିନିନ୍ଦନ ମୁରଲୀ ନିଃସ୍ୱନ, ଏହି ସର୍ବତ୍ୟାଗୀ ସନ୍ନ୍ୟାସୀ ଘରତର ବଣରେ, ଗହ୍ୱରେ, ନଦୀ-ଗିରି-ପ୍ରାନ୍ତରରେ ଯାହାଙ୍କୁ ପ୍ରତ୍ୟକ୍ଷ କରୁଥିଲେ, ଶ୍ରୀବୃନ୍ଦାବନର ଗୋବର୍ଦ୍ଧନସାନୁଦେଶରେ ଦିନେ ସେ ସ୍ୱୟଂ ଆସି ଦର୍ଶନଦାନ କଲେ ଶ୍ରୀଳ ମାଧବେନ୍ଦ୍ରଙ୍କୁ । ସନ୍ନ୍ୟାସୀଙ୍କର ପ୍ରଗାଢ଼ ଭକ୍ତତନ୍ମୟତା ଆକାର ପରିଗ୍ରହ କଲା--ଚିନ୍ମୟ ଧାମ ବ୍ରଜଭୂମିର ଅପରିକଳ୍ପିତ-ପୂର୍ବ ଚମତ୍କାରକାରୀ ଗୋଟିଏ ଗୋପାଳ ବାଳକ ରୂପେ—"ସନ୍ନ୍ୟାସିନ୍ ! ତୁମେ ଉପବାସୀ ରହିଛ କାହିଁକି ? ସନ୍ନିକଟସ୍ଥ ଆଭିରପଲ୍ଲୀକୁ ଭିକ୍ଷା କରିବାକୁ ଯାଉନା କାହିଁକି ? ମାଧୁକରୀ କରିପାର ତ ? ବ୍ରଜବଧୂଗଣ ନୀରଭରଣ ନିମନ୍ତେ ଆସି ତୁମକୁ ଦେଖିଯାଇ ମୋ ହାତରେ ଏହି ଦୁଗ୍ଧ ପଠାଇ ଦେଇଛନ୍ତି । ନିଅ, ଦୁଗ୍ଧ ପାନ କର । ପରେ ଆସି ମୁଁ ପାତ୍ରଟି ନେଇଯିବି । କି ସୁମଧୁର କଣ୍ଠସ୍ୱର ! ଏହା କଣ ମନ୍ଦାକିନୀର ସର୍ବମନୋହର କଳଧ୍ୱନି ! ନା, ସ୍ୱର୍ଗର ବିଦ୍ୟାଧରୀଗଣଙ୍କର ସପ୍ତସ୍ୱରର ସୁଧାସ୍ରାବୀ ନିକ୍ୱଣ ! ନରତନୁ କ'ଣ ଏତେ ସୁନ୍ଦର !

ଗୋପଗୃହର କମନୀୟ ନବନୀତ କଣ ଲାବଣ୍ୟବଲ୍ଲରୀରେ ରୂପାନ୍ତରିତ ହୋଇଛି ? ସ୍ୱର୍ଗୀୟ ନନ୍ଦନକାନନର ମନ୍ଦାର-କିଞ୍ଜଳ୍କ-ପୁଞ୍ଜିତ ଏ କି ମହନୀୟ ସୌନ୍ଦର୍ଯ୍ୟ ! ଆଉ ଅଙ୍ଗଗନ୍ଧ ଯେପରି ମୃଗମଦ-ନୀଳୋତ୍ପଳର ମିଳିତ ସୌରଭକୁ ପରାଭୂତ କରୁଛି । ମନ୍ତ୍ରମୁଗ୍ଧ ହୋଇ ଶ୍ରୀମାଧବେନ୍ଦ୍ର ଦୁଗ୍ଧ ପାନକଲେ । କିନ୍ତୁ ଗୋପକିଶୋର କାହିଁ ? ଚକିତରେ ଅନାଇଁ ଦେଖିଲେ, ଆଖପାଖରେ କେହି କେଉଁଠି ନାହିଁ । ପ୍ରତୀକ୍ଷା କଲେ ; ଦୁଗ୍ଧପାତ୍ର ମଧ୍ୟ ନେବାକୁ କେହି ଆସିଲେ ନାହିଁ ।

ସନ୍ନ୍ୟାସୀ ତନ୍ଦ୍ରାଚ୍ଛନ୍ନ ହୋଇପଡ଼ିଲେ । ସ୍ୱପ୍ନ ଦେଖିଲେ—ମୁଁ ବହୁଦିନରୁ ଏହି ଘନ ବନାନ୍ତରାଳରେ ମୃତ୍ତିକାଭ୍ୟନ୍ତରରେ ସମାହିତ ହୋଇ ରହିଛି । ମୋତେ ଶୀଘ୍ର ଉଦ୍ଧାର କର । ସ୍ୱପ୍ନାଦିଷ୍ଟ ମାଧବେନ୍ଦ୍ର ପରଦିନ ପ୍ରଭାତରେ ପାର୍ଶ୍ୱବର୍ତ୍ତୀ ପଲ୍ଲୀର ବହୁ-ଗୋପସଙ୍ଗେ କୁଠାର କର୍ତ୍ତରୀ ନେଇ ଅଗ୍ରସର ହେଲେ, ନିର୍ଦ୍ଦିଷ୍ଟ ବନ ମଧ୍ୟରେ ଧୀରେ ଧୀରେ ଗର୍ତ୍ତ କରିନେଇ ମୃତ୍ତିକା ମଧ୍ୟରୁ ଉଦ୍ଧାର କଲେ ଏକ ଅନିନ୍ଦ୍ୟସୁନ୍ଦର ଶ୍ରୀଗୋପାଳବିଗ୍ରହ ।

ଅତଃପର ଆରମ୍ଭହେଲା ଶ୍ରୀଗୋପାଳଙ୍କର ପ୍ରତିଷ୍ଠା । ଗୋବର୍ଦ୍ଧନଗିରି ବକ୍ଷରେ ଆସନ ଗ୍ରହଣ କଲେ ଶ୍ରୀଗୋପାଳଦେବ । ସମାରୋହ ସହକାରେ ନିବିଡ଼ ନିଷ୍ଠାସହ ଚାଲିବାକୁ ଲାଗିଲା ଶ୍ରୀଗୋପାଳଙ୍କର ସେବାପୂଜା ଭୋଗ ଆରତ୍ରିକ । ଦିନ ପରେ ଦିନ ଚାଲିବାକୁ ଲାଗିଲା ଶ୍ରୀଗୋପାଳଙ୍କର ଅନ୍ନକୂଟ ମହୋତ୍ସବ । ଅବିଳମ୍ବେ ବହୁ ଗୋଧନାଦି

ଲୌକିକ ସମ୍ପଦରେ ସମୃଦ୍ଧ ହୋଇଉଠିଲେ ଏହି ତ୍ରିଦେଶବନ୍ଦିତ ତ୍ରିଲୋକେଶ୍ୱରଙ୍କର ଶ୍ରୀମାଧବେନ୍ଦ୍ର ଅର୍ଚ୍ଚିତ ମୂର୍ତ୍ତିରୂପ । ମଥୁରମଣ୍ଡଳ ଦିଲ୍ଲୀର ଉପକଣ୍ଠବର୍ତ୍ତୀ । ଦିଲ୍ଲୀର ଶାସକ ବା ପଠାଣ ସୁଲତାନ ଦେଉଳ ଭାଙ୍ଗୁଛନ୍ତି । ଦେବମନ୍ଦିର ଲୁଣ୍ଠନ କରୁଛନ୍ତି, ସ୍ପର୍ଶ-କଳୁଷତ ଶ୍ରୀବିଗ୍ରହ ଚୂର୍ଣ୍ଣବିଚୂର୍ଣ୍ଣ କରି ଦୂରକୁ ପକାଇ ଦେଉଛନ୍ତି । ଏହା ଜାଣିଶୁଣି ମଧ୍ୟ ସନ୍ନ୍ୟାସୀଙ୍କର କୌଣସି ଦିଗକୁ ଭ୍ରୂକ୍ଷେପ ନାହିଁ । ବିଶ୍ୱେଶ୍ୱରଙ୍କର ବରଭୟ ଯାହାଙ୍କୁ କୁଣ୍ଠାହୀନ କରିଛି, ଦୁର୍ଗଗ୍ରର ବଳଦର୍ପିତ ରଜନେନ୍ଦ୍ର ତାହାଙ୍କୁ ତ୍ରସ୍ତ କରିବ କାହିଁକି ?

ବଙ୍ଗୀୟ ଜାତୀୟ ଜୀବନର ଇତିହାସରେ ଶ୍ରୀଳ ମାଧବେନ୍ଦ୍ର ଗୋଟିଏ ଗୌରମୟ ଆସନ ଅଧିକାର କରି ରହିଛି । ବଙ୍ଗେଶ୍ୱର ଦନୁଜମର୍ଦ୍ଦନଦେବଙ୍କର ଅକାଳ ବିୟୋଗରେ କାତର ବଙ୍ଗଭୂମିର କ୍ଷଣିକାଲୋକିତ ଭାଗ୍ୟ ଆକାଶରୁ ଯେଉଁଦିନ ସମ୍ଭାବନାମୟ ସାୟାହ୍ନରେ ସ୍ୱସ୍ତିକ ଶଶାଙ୍କ ଅସ୍ତାଚଳକୁ ପ୍ରସ୍ଥାନ କଲେ, ଏବଂ ପାର୍ଶ୍ୱକୁ ଅପସାରିତ ଅନ୍ଧକାର ସୂଚୀଭେଦ୍ୟ ରୂପେ ଦ୍ୱିଗୁଣିତ ହୋଇ ବଙ୍ଗଦେଶକୁ ଆବୃତ୍ତ କରି ପକାଇଲା, ସେଦିନ ଏହି ସର୍ବଶୂନ୍ୟ ସନ୍ନ୍ୟାସୀ ଶ୍ରୀଳ ମାଧବେନ୍ଦ୍ର ହିଁ ଭିନ୍ନ ଦିଗନ୍ତରେ ବଙ୍ଗଭୂମିକୁ ଆଧ୍ୟାତ୍ମିକ-ଆତ୍ମପ୍ରତ୍ୟୟର ପଥ ପ୍ରଦର୍ଶନ କରିଥିଲେ । ତାହାଙ୍କର ପ୍ରେମାଲୋକରେ ହିଁ ବଙ୍ଗ-ହୃଦୟ ଆଲୋକଛଟାରେ ଉଦ୍‌ଭାସିତ ଓ ପୁଲକିତ ହୋଇ ଉଠିଥିଲା । ବଙ୍ଗୀୟମାନଙ୍କର ସେଦିନର ଅନ୍ୟତମ ପ୍ରଧାନ ଚିନ୍ତାନାୟକ ଆଗ୍ରଣୀ ଶ୍ରୀ ଅଦ୍ୱୈତ ପ୍ରଭୁ ଶ୍ରୀଳ ମାଧବେନ୍ଦ୍ରଙ୍କୁ ଗୁରୁ ରୂପେ ବରଣ କରନ୍ତି । ଚଟ୍ଟଗ୍ରାମର ଚକ୍ରଶାଳାର ଭୂସ୍ୱାମୀ ସୁପଣ୍ଡିତ ସାଧକ ପୁଣ୍ଡରୀକ ବିଦ୍ୟାନିଧି, ଶ୍ରୀହଟ୍ଟର ଶ୍ରୀ ପଦ୍ମନାଭ ଚକ୍ରବର୍ତ୍ତୀ, ଶ୍ରୀଧାମ ନବଦ୍ୱୀପର ଶ୍ରୀବାସ ପଣ୍ଡିତ ପ୍ରଭୃତି ବହୁ ବଙ୍ଗୀୟ ଗୃହସ୍ଥ ଶ୍ରୀଳ ମାଧବେନ୍ଦ୍ରଙ୍କର ମନ୍ତ୍ରଶିଷ୍ୟ ହେଲେ । କୁମାରହଟ୍ଟର ଜନୈକ ବଙ୍ଗୀୟ ଯୁବକ ଶ୍ରୀଳ ମାଧବେନ୍ଦ୍ରଙ୍କ ନିକଟରୁ ସନ୍ନ୍ୟାସଦୀକ୍ଷା ଗ୍ରହଣ କରିଥିଲେ । ଏହାଙ୍କର ସନ୍ନ୍ୟାସାଶ୍ରମର ନାମ ଶ୍ରୀଳ ଈଶ୍ୱରପୁରୀ । ଗୟାଧାମରେ ଏହି ଶ୍ରୀ ଈଶ୍ୱରପୁରୀ ହିଁ ଶ୍ରୀମନ୍ମହାପ୍ରଭୁଙ୍କୁ ଦ୍ୱାଦଶାକ୍ଷର ଶ୍ରୀକୃଷ୍ଣମନ୍ତ୍ର ଦାନ କରିଥିଲେ । ଉତ୍ତରକାଳରେ ଶ୍ରୀପୁରୀଧାମରେ ଯେଉଁ କେଇ ଜଣ ସନ୍ନ୍ୟାସୀ ଶ୍ରୀମନ୍ମହାପ୍ରଭୁଙ୍କ ସମୀପରେ ବାସଲାଭ କରି ଧନ୍ୟ ହୋଇଥିଲେ, ଶ୍ରୀ ପରମାନନ୍ଦ ପୁରୀ ସେମାନଙ୍କ ମଧ୍ୟରେ ସର୍ବପ୍ରଧାନ । ଶ୍ରୀ ପରମାନନ୍ଦପୁରୀ ଶ୍ରୀଳ ମାଧବେନ୍ଦ୍ରପୁରୀଙ୍କର ମନ୍ତ୍ରଶିଷ୍ୟ । ଶ୍ରୀ ଗୋପାଳଙ୍କ ଆଦେଶରେ ତାହାଙ୍କର ଅଙ୍ଗତାପ ଦୂରୀକରଣ ଲାଗି ମଳୟଜ ଚନ୍ଦନ ଓ କର୍ପୂର ଆନୟନ ଉଦ୍ଦେଶ୍ୟରେ ଶ୍ରୀକ୍ଷେତ୍ରଗମନ ପଥରେ ନବଦ୍ୱୀପ, ଶାନ୍ତିପୁର, ପ୍ରଭୃତି ସ୍ଥାନରେ ବାସକରି ଦୀକ୍ଷାଦାନ ମାଧ୍ୟମରେ ବହୁ ଜୀବ ଉଦ୍ଧାର କରି ଅବଶେଷରେ ଶ୍ରୀ ରେମୁଣାରେ ଶ୍ରୀ ଗୋପୀନାଥ ମନ୍ଦିରରେ ଆଶ୍ରୟ ଗ୍ରହଣ କରନ୍ତି । ଶ୍ରୀ ଗୋପୀନାଥଙ୍କର ପ୍ରସିଦ୍ଧ କ୍ଷୀର ଭୋଗ "ଅମୃତକେଳୀ"

ନାମ ଶୁଣି ଅଯାଚକ ଶ୍ରୀଳ ପୁରୀପାଦଙ୍କ ମନରେ ଜାଗ୍ରତ ହୁଏ ପ୍ରସାଦାସ୍ୱାଦନେଚ୍ଛା ଏବଂ ତନ୍ମୁହୂର୍ତ୍ତରେ ଲଜ୍ଜିତ ହୋଇ ନିଜକୁ ଆତ୍ମଧିକ୍କାର ଦେବାକୁ ଲଗିଲେ। ତାର ପରେ ଗର୍ତ୍ତରେ ମନ୍ଦିର ସନ୍ନିକଟସ୍ଥ ହାଟରେ ବସି ଶ୍ରୀକୃଷ୍ଣନାମ ଗ୍ରହଣ କରିବାକୁ ଲଗିଲେ । ଭକ୍ତବାଞ୍ଛା କଳ୍ପତରୁ ଶ୍ରୀ ଗୋପୀନାଥ ଭକ୍ତ ଚୂଡ଼ାମଣି ପୁରୀପାଦଙ୍କ ଲଗି କ୍ଷୀର ଗ୍ରେରିକରି ସ୍ୱପ୍ନାଦେଶରେ ସେବକଙ୍କୁ କହିଲେ– "ଦ୍ୱାଦଶ ଖଣ୍ଡ କ୍ଷୀର ମଧ୍ୟରୁ ମୁଁ ଗୋଟିଏ ଖଣ୍ଡ ଲୁଚାଇ ରଖିଛି; ବର୍ତ୍ତମାନ ହିଁ ତାହା ନେଇ ଶ୍ରୀଳ ପୁରୀଙ୍କୁ ଦେଇ ଆସ ।

ସେବକ ତତକ୍ଷଣାତ୍ ଲୁକ୍କାୟିତ କ୍ଷୀରଖଣ୍ଡଟି ଶ୍ରୀପୁରୀପାଦଙ୍କ ନିକଟରେ ପହଞ୍ଚାଇ ଦଅନ୍ତି । ଏ ପ୍ରକାର ଅସମ୍ଭବ ବ୍ୟାପାର ଶୁଣି ସେ ଯୁଗପତ ପୁଲକିତ ଓ ଲଜ୍ଜିତ ହେଲେ ଏବଂ କହିଲେ–ମୋ ପରି ନଗଣ୍ୟ ଜୀବ ଲଗି ଚୌର୍ଯ୍ୟବୃତ୍ତି ଗ୍ରହଣ କଲେ ପ୍ରାଣପ୍ରିୟ ପ୍ରଭୁ ! ମହାଭାବାବିଷ୍ଟ ହୋଇ ସେହି ପ୍ରସାଦ ଗ୍ରହଣ କରନ୍ତି । ପ୍ରତିଷ୍ଠା ଭୟରେ ପରଦିନ ପ୍ରତ୍ୟୁଷରେ ନୀଳାଚଳାଭିମୁଖରେ ଯାତ୍ରା କରିଥିଲେ ସୁପ୍ରତିଷ୍ଠିତ ଶ୍ରୀ ଗୋପାଳଙ୍କର ଆଜ୍ଞା ପାଳନ ନିମିତ୍ତ । ନୀଳାଚଳକୁ ଯାଇ ସମସ୍ତଙ୍କୁ କହିଲେ–ତାଙ୍କ ପ୍ରାଣଗୋପାଳଙ୍କର ଅଳିଅଳବାର୍ତ୍ତା । ସେହି ମଳୟଜ ଚନ୍ଦନ ଏହି ପବିତ୍ର ଶ୍ରୀକ୍ଷେତ୍ରର ବନଜାତ ହେବା ପ୍ରୟୋଜନ । ତୁମ୍ଭେମାନେ ସମସ୍ତେ କୃପାକରି ମୋ ପ୍ରାର୍ଥିତ ବସ୍ତୁ ଯୋଗାଡ଼ କରିଦିଅ । ମୋର ମୁହଁ ରକ୍ଷାକର । ଶ୍ରୀ ଗୋପାଳଙ୍କ କରୁଣାରେ ପ୍ରଚୁର ଚନ୍ଦନକାଷ୍ଠ ଓ କର୍ପୂର ନେଇ ଯାତ୍ରା କଲେ ଶ୍ରୀବୃନ୍ଦାବନ ପଥରେ । ପୁନର୍ବାର ରେମୁଣାରେ ଆସି ଉପସ୍ଥିତ ହୁଅନ୍ତେ ତୃଣବତ୍ ପ୍ରତିଷ୍ଠା ପରିତ୍ୟାଗକାରୀ ଶ୍ରୀ ପୁରୀପାଦଙ୍କର ଭାଗ୍ୟରେ ଲାଭ ହେଲା ପ୍ରସିଦ୍ଧଗ୍ରେର କ୍ଷୀରଗ୍ରେର ଗୋପୀନାଥଙ୍କର ସେବକଗଣଙ୍କର ମହାସମ୍ମାନ । ସେଦିନ ରାତ୍ରିରେ ମନ୍ଦିରର ଜଗମୋହନର ଗୋଟିଏ କୋଣରେ ସେ ଶୟନ କଲେ । ଗଭୀର ନିଶୀଥରେ ଦେଖିଲେ–ଏକ ଅପୂର୍ବ ସ୍ୱପ୍ନ । ପ୍ରଭୁ କହିଲେ–"ବତ୍ସ ମାଧବେନ୍ଦ୍ର ! ତୁମ ଆନୀତ ଚନ୍ଦନ ଓ କର୍ପୂର ମୁଁ ପାଇଯାଇ ଅଛି ।" ପୁଣି କହିଲେ, "ମୁଁ ଯେଉଁ ବୃନ୍ଦାବନରେ ରହିଛି, ସେହି ମୁଁ ଶ୍ରୀରେମୁଣାରେ । ତୁମେ ଶ୍ରୀ ଗୋପୀନାଥଙ୍କର ଶ୍ରୀଅଙ୍ଗରେ କର୍ପୂର ଓ ଚନ୍ଦନ ପ୍ରତ୍ୟହ ଲେପନ କର । ତାହାହେଲେ ହିଁ ମୋ ଶରୀର ସୁଶୀତଳ ହେବ ।" ଏହି ଆଦେଶାନୁସାରେ ଶ୍ରୀ ଗୋପୀନାଥଙ୍କର ଶ୍ରୀଅଙ୍ଗରେ ଚନ୍ଦନ-କର୍ପୂର ଲେପନର ବ୍ୟବସ୍ଥା କଲେ ପ୍ରେମଭକ୍ତିସିନ୍ଧୁ ଶ୍ରୀଳ ପୁରୀ ମହାରାଜ ।

ଏହି ଶ୍ରୀଳ ପୁରୀଙ୍କର ଇଷ୍ଟଗୋଷ୍ଠୀ ରୂପ ଗୋମୁଖୀରୁ ସ୍ୱର୍ଗମନ୍ଦାକିନୀର ସୁଧାସ୍ୟନ୍ଦୀ ଭକ୍ତିଧାରା ଉତ୍ସାରିତ ହୋଇ ମୂର୍ତ୍ତି ପରିଗ୍ରହ କରିଥିଲେ ରସଘନବିଗ୍ରହ ଶ୍ରୀ ଗୌରାଙ୍ଗ ରୂପେ । ଏହି ଗୋଷ୍ଠୀଗତ ଚେତନାର ପ୍ରମୂର୍ତ୍ତ ରୂପ ଶ୍ରୀମନ୍ମହାପ୍ରଭୁ,

ଶ୍ରୀଧାମ ନବଦ୍ୱୀପରେ, ସୁରଧୂନୀତଟଦେଶରେ ଯେଉଁ ଜଙ୍ଗମ-ହେମ-କଳ୍ପତରୁ ଆବିର୍ଭୂତ ହୋଇଥିଲେ, ଶ୍ରୀଳ ମାଧବେନ୍ଦ୍ର ସେହି ଅପାର୍ଥିବ ପ୍ରେମକଳ୍ପତରୁର ପ୍ରଥମ ଅଙ୍କୁର । ଶ୍ରୀ ମାଧବେନ୍ଦ୍ରଙ୍କ ସହିତ ଶ୍ରୀ ନିତ୍ୟାନନ୍ଦ ପ୍ରଭୁଙ୍କର ସାକ୍ଷାତ୍ ହୋଇଥିଲା ଶ୍ରୀଧାମ ବୃନ୍ଦାବନଠାରେ । ଶ୍ରୀଧାମ ନବଦ୍ୱୀପରେ ସେହି ସମୟରେ ହିଁ ଶ୍ରୀମନ୍ମହାପ୍ରଭୁଙ୍କର ମହାପ୍ରକାଶ ବଙ୍ଗର ଗଗନ-ପବନକୁ ଆନ୍ଦୋଳିତ କରି ତୋଳିଥିଲା । ଶ୍ରୀଳ ମାଧବେନ୍ଦ୍ରଙ୍କର ପରାମର୍ଶରେ ହିଁ ଶ୍ରୀ ନିତ୍ୟାନନ୍ଦ ପ୍ରଭୁ ଶ୍ରୀଧାମ ନବଦ୍ୱୀପକୁ ଆସି ଶ୍ରୀ ଚୈତନ୍ୟଦେବଙ୍କ ସହ ସମ୍ମିଳିତ ହୁଅନ୍ତି । ଶ୍ରୀ ନିତାଇ-ଚୈତନ୍ୟଙ୍କର ନାମପ୍ରେମ ପ୍ରଚାରରେ ଶ୍ରୀଳ ପୁରୀପାଦଙ୍କର ଦିବ୍ୟ ଅବଦାନ ଅନସ୍ୱୀକାର୍ଯ୍ୟ ।

ଯାହାର ସୁନିଶ୍ଚିତ ଭବିଷ୍ୟତର ଫଳଶ୍ରୁତି ଶ୍ରୀଳ ମାଧବେନ୍ଦ୍ରଙ୍କର କୃପାପ୍ରାପ୍ତ ସାଧକ ଶ୍ରୀ ରଘୁନାଥ ପୁରୀ ଥିଲେ; ସେ ଥିଲେ ଅସାଧ୍ୟ-ସାଧ୍ୟସାଧନ ନିର୍ଣ୍ଣାୟକ ଶ୍ରୀରାୟ ରାମାନନ୍ଦଙ୍କର ମନ୍ତ୍ରଗୁରୁ । ସେହି ସାଧ୍ୟ ସାଧନତତ୍ତ୍ୱ ପୂର୍ଣ୍ଣାଙ୍ଗ ପରିଚୟପ୍ରାପ୍ତ ହୋଇଥିଲା ସାଧ୍ୟସାଧନତତ୍ତ୍ୱଜ୍ଞ ଶିରୋମଣି ଶ୍ରୀ ଚୈତନ୍ୟଦେବଙ୍କ ଠାରେ; ଯେଉଁ ଅନର୍ପିତଚରତତ୍ତ୍ୱ ଲଭ କରି ପବିତ୍ର ଓ ଧନ୍ୟ ହୁଏ କଳିକଳୁଷିତ ତ୍ରିତାପଦଗ୍ଧ ଜୀବନିବର୍ହ । ଶ୍ରୀଳ ମାଧବେନ୍ଦ୍ରଙ୍କର ସମୂହ ଆକାଙ୍‌କ୍ଷା ଶେଷ ହୋଇଛି । ଏଣିକି ସେ ପୂର୍ଣ୍ଣ ମନସ୍କାମ । ଏହି ମହାଭାଗବତଙ୍କର ପାର୍ଥିବ ଜୀବନରେ ଏଣିକି ଧୀରେ ଧୀରେ ଆଗେଇ ଆସେ ମହାପ୍ରୟାଣର ଅନ୍ତିମ ପର୍ବ । ଅନ୍ତିମ ଶଯ୍ୟାରେ ଶାୟିତ ଶ୍ରୀଳ ପୁରୀପାଦ ଭାବୁଛନ୍ତି ଜୀବ କଲ୍ୟାଣର କଥା । ଯେଉଁଦିନ ପ୍ରିୟଶିଷ୍ୟ ମିଥିଳାବାସୀ ପଣ୍ଡିତ ଶ୍ରୀ ପରମାନନ୍ଦ ପୁରୀ ଆସିଛନ୍ତି । ସେତେବେଳେ ଶ୍ରୀମାଧବେନ୍ଦ୍ର କହୁଛନ୍ତି– ମୋ ଲାଗି ତୁମ୍ଭେମାନେ ଶୋକ କରନା । ବରଂ ଆନନ୍ଦ କରିପାର; କାରଣ ତୁମ୍ଭେମାନେ ଯେ ମହାଭାଗ୍ୟବାନ । ତୁମ୍ଭେମାନେ ପରମ ପ୍ରଭୁଙ୍କର ଆବିର୍ଭାବର ଚିର ପ୍ରୋଜ୍ଜ୍ୱଳ ଆଲୋକଛଟାରେ ଓ ଅପ୍ରାକୃତ ମାନବୀୟ ଲୀଳାଭିନୟ ପ୍ରତ୍ୟକ୍ଷ କରି ଧନ୍ୟ ହେବ । ଅପୂର୍ବ ଭାବାବେଶ ମଧ୍ୟ ଦେଇ ମହାପ୍ରେମିକ ଭକ୍ତିସିଦ୍ଧ ଶ୍ରୀଳ ମାଧବେନ୍ଦ୍ରଙ୍କର ଶେଷ ଦିନଗୁଡ଼ିକ ଅତିବାହିତ ହେବାକୁ ଲାଗିଲା । ଦିନ ପରେ ଦିନ ଶିଷ୍ୟଗଣ ଦର୍ଶନ କରନ୍ତି, ଆଉ ବିସ୍ମୟାଭିଭୂତ ହୁଅନ୍ତି କୃଷ୍ଣବିରହଖିନ୍ନ ଆଚାର୍ଯ୍ୟପାଦଙ୍କୁ ଦର୍ଶନ କରି । ସେଦିନ ଭଜନକକ୍ଷରେ ଶ୍ରୀକୃଷ୍ଣ କୀର୍ତ୍ତନ ଅନୁଷ୍ଠିତ ହେଉଥାଏ; ତୀବ୍ର ଭାବାବେଗ ଫଳରେ ଶ୍ରୀଳ ପୁରୀପାଦଙ୍କର ଭଜନସିଦ୍ଧ ଦେହରେ ପ୍ରକାଶ ପାଇଛି ଅଷ୍ଟସାତ୍ତ୍ୱିକବିକାର ଚିହ୍ନ । ବହୁକ୍ଷଣ ପରେ ସେ ଅର୍ଦ୍ଧବାହ୍ୟଦଶା ପ୍ରାପ୍ତ ହୁଅନ୍ତି ।

ବ୍ୟାକୁଳଭାବେ କ୍ରନ୍ଦନ କରୁଥାନ୍ତି ଏବଂ କହୁଥାନ୍ତି–କେଉଁଠି କୃଷ୍ଣ, କେଉଁଠି ମୋର ପ୍ରାଣପ୍ରଭୁ ? କୃପାମୟ ଏଥର କୃପାକରି ଏହି ଅଭାଜନର ତାପିତ ଜୀବନ

ଶୀତଳ କର । ମିଳନ-ବିରହର ଏହି ତରଙ୍ଗ-ଭଙ୍ଗ, ପ୍ରେମଭକ୍ତହୀନ ଦରିଦ୍ରର ଏହି ପ୍ରେମାର୍ତ୍ତିର ମର୍ମବେଦନା ତୁମ ବ୍ୟତୀତ କିଏ ବୁଝିବ ? ଏ ସାଧ୍ୟ କାହାର ? ଶ୍ରୀକୃଷ୍ଣ ରସ ସାଗରର ଉତ୍ତାଳ ତରଙ୍ଗ-ଭଙ୍ଗରେ ଶ୍ରୀ ମାଧବେନ୍ଦ୍ର ଥରେ ବୁଡ଼ନ୍ତି, ପୁଣି ଭାସି ଉଠନ୍ତି । ଭାସିଉଠି ହିଁ ପୁଣି କାନ୍ଦନ୍ତି ସେହିପରି ନିମଜ୍ଜନ ଲାଗି । ମିଳନ ପରେ ବିରହ, ବିରହ ପରେ ମିଳନ, ପ୍ରେମସାଧନାର ଏହି ଚିରନ୍ତନ ଆବେଗ ଚଞ୍ଚଳ ଦୋଳାୟମାନ ପ୍ରେମାର୍ତ୍ତିର ଏହି ଦହନ, ଏହାହିଁ ଯେ ମହାପ୍ରେମିକର ଚିରକାମ୍ୟ । ଏହି ଦହନଜ୍ୱାଳା ବ୍ୟତୀତ ଯେ ଜୀବନ ଦୁର୍ବହ । କିନ୍ତୁ କିଏ ଏହି ପ୍ରେମର ପ୍ରୋଜ୍ଜ୍ୱଳିତ ଜ୍ୱାଳାର ସ୍ୱରୂପ ବୁଝିବ ? କିଏ ହେବ ତାର ବ୍ୟଥାର ବ୍ୟଥୀ ? ସେବକ, ସାଧକ ଓ ଶିଷ୍ୟଗଣ ନୀରବରେ, ନିର୍ନିମେଷ ନୟନରେ କୃଷ୍ଣବିରହଲୀଳା-ନାଟକର ଶେଷ ଅଙ୍କର ଅନ୍ତିମ ଦୃଶ୍ୟପଟର ଯବନିକା ଦିଗକୁ ଦୃଷ୍ଟି ନିବଦ୍ଧ କରି ଆକାଶ ପାତାଳ ଭାବୁଛନ୍ତି । ଶ୍ରୀଳ ପୁରୀପାଦଙ୍କର ଅନ୍ତିମ ସେବାଭାର ମିଳେ ପରମପ୍ରିୟ ସେବକ ଆଗ୍ରୟାନୁଗ୍ରହଭାଜନ ଶ୍ରୀ ଈଶ୍ୱରପୁରୀଙ୍କୁ । ଦିନ ପରେ ଦିନ, ରାତି ପରେ ରାତି, କ୍ଳାନ୍ତିବିହୀନ ପରିଚର୍ଯ୍ୟାରତ ଥାଆନ୍ତି । କୃଷ୍ଣନାମ, କୃଷ୍ଣଲୀଳା ଶ୍ରବଣ କରାନ୍ତି ପରମାରାଧ୍ୟ ଶ୍ରୀଳ ଆଗ୍ରୟାଙ୍କୁ । ସାଧନାନିଷ୍ଠ ଓ ସେବାନିଷ୍ଠ ଏହି ଶିଷ୍ୟଙ୍କ ଲାଗି ଶ୍ରୀ ମାଧବେନ୍ଦ୍ରଙ୍କର ସ୍ନେହାର୍ଶୀବାଦର ଅବଧି ନାହିଁ । ସାତ୍ତ୍ୱିକ ବିକାର ଓ ଭାବାବେଶର ଆବେଶ କଟିଯିବା ମାତ୍ରେ ଅପାର ସନ୍ତୋଷରେ ତାଙ୍କୁ ଅମୋଘ ଆଶୀର୍ବାଦ ଓ ଅଭୟବାଣୀ ଜ୍ଞାପନ କରନ୍ତି । ମହ ପ୍ରୟାଣର ପୂର୍ବ ଦିବସରେ ଶ୍ରୀଳ ମାଧବେନ୍ଦ୍ର ସସ୍ନେହରେ ସେବକ ଈଶ୍ୱରପୁରୀଙ୍କୁ ଡାକି କହିଲେ, "ବତ୍ସ ! ବର୍ତ୍ତମାନ ମୋର ଶେଷ ସମୟ ଆସନ୍ନପ୍ରାୟ । ଯିବାର ପ୍ରାକ୍‌କାଳରେ ସମଗ୍ର ଅନ୍ତର ଭରି ଆଶୀର୍ବାଦ କରୁଛି—ଅପାର୍ଥିବ କୃଷ୍ଣପ୍ରେମ ତୁମ ଅନ୍ତରରେ ହେଉ ସଦା ଜାଗରୂକ । ତୁମେ ଶ୍ରୀକୃଷ୍ଣଙ୍କୁ ଲାଭ କର ।" ଆଗ୍ରୟାଙ୍କର କୃପାନିଃସୃତ କୃଷ୍ଣପ୍ରେମାମୃତଧାରା ସାଧକଶିଷ୍ୟ ଈଶ୍ୱରପୁରୀଙ୍କୁ ନିମଜ୍ଜିତ କଲା କୃଷ୍ଣପ୍ରେମ ମୃତ ସିନ୍ଧୁର ଅତଳ ଦେଶରେ । ଉତ୍ତରକାଳରେ ଏହି ମହାସିନ୍ଧୁର ବାରିବିନ୍ଦୁ ସ୍ପର୍ଶରେ ଧନ୍ୟ ହୁଅନ୍ତି ପ୍ରେମର ଠାକୁର ଶ୍ରୀ ଚୈତନ୍ୟଚନ୍ଦ୍ର ।

ଲୀଳାନାଟ୍ୟ ଏବେ ଶେଷ ଦୃଶ୍ୟରେ ଆସି ଉପନୀତ । ଶିଷ୍ୟ ଓ ଭକ୍ତଗଣ ସଜଳ ନୟନରେ ଶ୍ରୀପୁରୀପାଦଙ୍କର ଶଯ୍ୟା ଚତୁର୍ଦ୍ଦିଗରେ ଦଣ୍ଡାୟମାନ । "ଅୟିଦୀନ ଦୟାର୍ଦ୍ରନାଥ ! ହେ ମଥୁରନାଥ !"—ଏହି ଶ୍ଳୋକ ମୃଦୁ-ମଧୁର ସ୍ୱରରେ କହିବାକୁ ଲାଗିଲେ । କୃଷ୍ଣ ପ୍ରେମତତ୍ତ୍ୱର ମହା-ଅଧିକାରୀ ଶ୍ରୀମାଧବେନ୍ଦ୍ରଙ୍କ ନିକଟରେ ଏହି ଚିର କୃଷ୍ଣବିରହବ୍ୟଞ୍ଜକ ଶ୍ଳୋକଟି ଥିଲା ଅତୀବ ପ୍ରିୟ । ସ୍ୱୟଂ ସର୍ବାବତାରୀ ଶ୍ରୀଚୈତନ୍ୟଦେବ ମଧ୍ୟ ଏହି ବିରହଧର୍ମୀ ଶ୍ଳୋକଟି ଆବୃତ୍ତି କରୁ କରୁ ପ୍ରେମୋନ୍ମତ୍ତ ହୋଇ ପଡୁଥିଲେ । ଅଶ୍ରୁକମ୍ପାଦି ଅଷ୍ଟସାତ୍ତ୍ୱିକ ବିକାର ତାହାଙ୍କ

ଦେହରେ ଏ ସମୟରେ ପ୍ରକଟିତ ହେବାର ଦେଖି ଭକ୍ତଗଣ ବିସ୍ମୟରେ ବିମୂଢ଼ ହେଉଥିଲେ ।

ଅଖିଳରସ ମାଧୁର୍ଯ୍ୟାମୃତମୂର୍ତ୍ତି ଶ୍ରୀକୃଷ୍ଣଙ୍କ ମାଧୁର୍ଯ୍ୟର ଅନ୍ତ ନାହିଁ, ରୂପୈଶ୍ୱର୍ଯ୍ୟର ଅବଧି ନାହିଁ, ଅନ୍ତ ନାହିଁ ବେଣୁମାଧୁର୍ଯ୍ୟର ପରିସୀମା । ତଦ୍ରୂପ ତାହାଙ୍କର ପ୍ରେମିକ ଭକ୍ତଗଣଙ୍କର ନାହିଁ ରସଭୁଞ୍ଜନର ଆମନ୍ତ୍ରଣା । ଏହି ରସ ଯେତେ ଆସ୍ୱାଦିତ ହୁଏ, ସେତେ ସେତେ ହେଉଥାଏ ଅଫୁରନ୍ତ ଓ ରସତୃଷ୍ଣାବିବର୍ଦ୍ଧିତ । ଆନନ୍ଦାନ୍ତ ମାଧୁର୍ଯ୍ୟ ବିଗ୍ରହଙ୍କର ଆନନ୍ଦାନ୍ତ ରସର ଆସ୍ୱାଦନ । ସେଥିଲାଗି ହିଁ ତ ମହାପ୍ରେମିକ ଶ୍ରୀଳ ମାଧବେନ୍ଦ୍ରପୁରୀଙ୍କର ଏହି ଶ୍ରୀକୃଷ୍ଣବିରହାର୍ତ୍ତି ।

ଅଦ୍ୱୈତ-ପ୍ରକାଶରେ ଶ୍ରୀପୁରୀପାଦଙ୍କର ତିରୋଧାନରେ–

ତବେ ପୁରୀ ପ୍ରେମେ ପ୍ରଭୁ ନୀଳାଚଲେ ଯାୟ ।
ପ୍ରେମାକୃଷ୍ଟ ହୈୟା ପ୍ରଭୁ ଆଇସେ ରେମୁଣାୟ ।
ଐଛନ ଶ୍ରୀପୁରୀ ବହୁ କୈଲ ଯାତାୟାତ ॥
ଶେଷେ ଗୋପୀନାଥ ପଦେ ହୈଲ ସିଦ୍ଧପ୍ରାପ୍ତ ।
ପୁରୀରାଜେର ଗୁଣଲୀଳା ସାଗରେର ସମ ।
ଶ୍ରୀମୁଖେ ଅଦ୍ୱୈତପ୍ରଭୁ କରିଲା ବର୍ଣ୍ଣନ ॥
ମୁଇଁ ଛାର ତାର ଏକବିନ୍ଦୁ ନା ଛୁଇଁନୁ ।
ପ୍ରଭୁର ଆଜ୍ଞାୟ ସୂତ୍ର ମାତ୍ର ଯେ ଲିଖିନୁ ॥
(ପଞ୍ଚମ ତରଙ୍ଗ)

ଶ୍ରୀ ଶ୍ରୀ ପୁରୀପାଦଙ୍କର ତିରୋଭାବ ଶ୍ରୀଚୈତନ୍ୟ ଚରିତାମୃତରେ–

ପୂର୍ବେ ଯବେ ମାଧବେନ୍ଦ୍ରପୁରୀ କରେ ଅନ୍ତର୍ଦ୍ଧାନ ।
ରାମଚନ୍ଦ୍ରପୁରୀ ତବେ ଆଇଲା ତାଁର ସ୍ଥାନ ॥
'ପୁରୀ ଗୋସାଇଁ କରେ କୃଷ୍ଣନାମ ସଂକୀର୍ତ୍ତନ ।
'ମଥୁରା' ନା ପାଇନୁ ବଲି କରେନ କ୍ରନ୍ଦନ ॥
ରାମଚନ୍ଦ୍ରପୁରୀ ତବେ ଉପଦେଶେ ତାଁରେ ।
ଶିଷ୍ୟ ହଇୟା ଗୁରୁରେ କହେ ଭୟ ନାହିଁ କରେ ॥
ତୁମି ପୂର୍ଣ୍ଣ ବ୍ରହ୍ମାନନ୍ଦ କରହ ସ୍ମରଣ ।
ବ୍ରହ୍ମବିତ୍ ହଇୟା କେନ କରହ ରୋଦନ ॥

ଶୁନି ମାଧବେନ୍ଦ୍ର ମନେ କ୍ରୋଧ ଉପଜିଲ ।
ଦୂର ଦୂର ପାପୀ ବଲି ଭର୍ତ୍ସନା କରିଲ ।
କୃଷ୍ଣ ନା ପାଇନୁଁ ମୁଇଁ ନା ପାଇନୁ ମଥୁରା ।
ଆପନ ଦୁଃଖେ ମରେଁ ଏଇ ଦିତେ ଆଇଲ ଜ୍ୱାଲା ।।
ମୋରେ ମୁଖ ନା ଦେଖାବି ତୁଇ ଯା ଯଥି ତଥି ।
ତୋରେ ଦେଖି ମୈଲେ ମୋର ହବେ ଅସଦ୍‌ଗତି ।।
କୃଷ୍ଣ ନା ପାଇନୁ ମରେ ଆପନ ଦୁଃଖେ ।
ମୋର ବ୍ରହ୍ମ ଉପଦେଶେ ଏଇ ଛାର ମୂର୍ଖେ ।।
ଏଇ ଶ୍ରୀମାଧବେନ୍ଦ୍ର ଉପେକ୍ଷା କରିଲ ।
ସେଇ ଅପରାଧେ ଇହାର ବାସନା ଜନ୍ମିଲ ।।
ଶୁଷ୍କ ବ୍ରହ୍ମଜ୍ଞାନେ ନାହିଁ କୃଷ୍ଣେର ସମ୍ବନ୍ଧ ।
ସର୍ବଲୋକେ ନିନ୍ଦାକରେ ନନ୍ଦାତେ ନିବନ୍ଧ ।।
ଶ୍ରୀଈଶ୍ୱରପୁରୀ କରେ ଶ୍ରୀପାଦସେବନ ।
ସ୍ୱହସ୍ତେ କରେନ ମଳମୂତ୍ରାଦି ମାର୍ଜନ ।।
ନିରନ୍ତର କୃଷ୍ଣନାମ କରନ ସ୍ମରଣ ।
କୃଷ୍ଣଲୀଲାର ଶ୍ଳୋକ ଶୁନାନ ଅନୁକ୍ଷଣେ ।।
ତୁଷ୍ଟ ହୈୟା ପୁରୀ ତାରେ କୈଲ ଆଲିଙ୍ଗନ ।
ବର ଦିଲେନ କୃଷ୍ଣେ ତୋମାର ହଉକ ପ୍ରେମଧନ ।।
ସେଇ ହୈତେ ଈଶ୍ୱରପୁରୀ ପ୍ରେମେର ସାଗର ।
ରାମଚନ୍ଦ୍ରପୁରୀ ହୈଲ ସର୍ବନିନ୍ଦାକର ।।
ମହଦନୁଗ୍ରହନିଗ୍ରହେର ସାକ୍ଷୀ ଦୁଇଜନ ।
ଏଇ ଦୁଇ ଦ୍ୱାରେ ଶିଖାଇଲ ଜଗଜନ ।।
ଜଗଦ୍‌ଗୁରୁ ମାଧବେନ୍ଦ୍ର କରି ପ୍ରେମଦାନ ।
ଏଇ ଶ୍ଳୋକ ପଢ଼ି ତିହେଁ। କୈଲ ଅନ୍ତର୍ଦ୍ଧାନ ।।

ପଦ୍ୟାବଲ୍ୟାଂ ଧୃତଂ ଶ୍ରୀପୁରୀବାକ୍ୟମ୍—

ଅୟିଦୀନ ଦୟାର୍ଦ୍ରନାଥ
ହେ ମଥୁରାନାଥ କଦାବଲୋକ୍ୟସେ ।
ହୃଦୟଂ ତ୍ୱଦଲୋକକାତରଂ
ଦୟିତ ଭ୍ରାମ୍ୟତି କିଂ କରୋମ୍ୟହମ୍ ।।

ଏଇ ଶ୍ଳୋକେ କୃଷ୍ଣପ୍ରେମ କୈଲ ଉପଦେଶ ।
କୃଷ୍ଣେର ବିରହେ ଭକ୍ତେର ଭାବ ବିଶେଷ ।।

ପୃଥିବୀତେ ରୋପଣ କରିଗେଲ୍ ପ୍ରେମାଙ୍କୁର ।
ସେଇ ପ୍ରେମାଙ୍କୁରେର ବୃକ୍ଷ ଚୈତନ୍ୟଠାକୁର ।।
ପ୍ରସ୍ତାବେ କହିଲ ପୁରୀ ଗୋସାଇଁର ନିର୍ଯ୍ୟାନ ।
ଯେଇ ଇହା ଶୁନେ ସେଇ ବଡ଼ ଭାଗ୍ୟବାନ ।।
(ଶ୍ରୀ ଚୈତନ୍ୟ ଚରିତାମୃତ ଅନ୍ତ୍ୟ ୮ମ ପରି:)

## ଶ୍ରୀଲ ପୁରୀପାଦଙ୍କର ତିରୋଭାବ ତଥ୍ୟ :

ପୁରୀ ଶ୍ରୀମାଧବଃ କୃଷ୍ଣପ୍ରେମାନନ୍ଦ ସୁଧାର୍ଣ୍ଣବଃ ।
ତସ୍ୟାପ୍ୟାରାଧନାତିଥୌ ଚୈତ୍ରସ୍ୟ ଶୁକ୍ଳପକ୍ଷକେ ।।
ଦ୍ୱାଦଶ୍ୟାଂ ଭୋଜୟାମାସ ଦ୍ୱୌ ପ୍ରଭୂ ସାଗ୍ରହଂ ମୁଦା ।
ତଥା ଭକ୍ତଗଣାନ୍ ସର୍ବାନାଗ୍ରୈୟେଽଦ୍ୱୈତ ଈଶ୍ୱରଃ ।।
(ଶ୍ରୀ ମୁରରି ଗୁପ୍ତ କଡ଼ଚ୍ଚ—୧୪ଶ ସର୍ଗ, ୮-୯ ଶ୍ଳୋକ)

ଶ୍ରୀ ଅଦ୍ୱୈତ ପ୍ରକାଶାନୁସାରେ ସ୍ପଷ୍ଟ ଜଣାଯାଏ ଯେ, ଚୌଦଶତ ତ୍ରୟୋବିଂଶତିତମ (୧୪୨୩) ଶକାବ୍ଦ ଚୈତ୍ରମାସର ଶୁକ୍ଳପକ୍ଷ, ଦ୍ୱାଦଶୀ ତିଥିରେ ଶ୍ରୀଳ ମାଧବେନ୍ଦ୍ର ପୁରୀପାଦ ଶ୍ରୀ ରେମୁଣାରେ ଅପ୍ରକଟ ହୋଇଥିଲେ ।

ଶ୍ରୀ ଚୈତନ୍ୟଚରିତାମୃତର ପ୍ରମାଣାନୁସାରେ ଶ୍ରୀଳ ପୁରୀପାଦଙ୍କର ତିରୋଭାବ ସମୟରେ ଶ୍ରୀଳ ଈଶ୍ୱରପୁରୀପାଦ ସ୍ୱହସ୍ତରେ ତାହାଙ୍କର ସେବା କରନ୍ତି ଏବଂ ତାହାଙ୍କର ସମାଧି ଦେଇଥିଲେ । ଶ୍ରୀଳ ପୁରୀପାଦଙ୍କର କାଷ୍ଠପାଦୁକା ଅଗ୍ରେ ଶ୍ରୀଈଶ୍ୱରପୁରୀ ସେବା କରୁଥିଲେ । ସେହି ପାଦୁକା ଆଜି ପର୍ଯ୍ୟନ୍ତ ପୂଜିତ ହୋଇ ଆସୁଛନ୍ତି । ଶ୍ରୀ ରେମୁଣାରୁ ଶ୍ରୀପାଦ ଈଶ୍ୱରପୁରୀ ଶ୍ରୀଧାମ ନବଦ୍ୱୀପସ୍ଥ ଶ୍ରୀ ଗୋପୀନାଥ ଆଚାର୍ଯ୍ୟଙ୍କ ଗୃହରେ ବାସକରି ଶ୍ରୀ କୃଷ୍ଣଲୀଳାମୃତ ସଂସ୍କୃତ କାବ୍ୟ ରଚନା କରିଥିଲେ । ପରେ ସେହି କାବ୍ୟ ଶ୍ରୀମନ୍ମହାପ୍ରଭୁ ନିମାଇଁ ପଣ୍ଡିତଙ୍କୁ ସଂଶୋଧନ କରିବାକୁ ଦେଇଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଶ୍ରୀ ମନ୍ମହାପ୍ରଭୁଙ୍କର ଷୋହଳ ବର୍ଷ ବୟସ ସମୟରେ ଶ୍ରୀଳ ମାଧବେନ୍ଦ୍ରପୁରୀ ଗୋସ୍ୱାମୀଙ୍କର ତିରୋଭାବ ହୋଇଥିଲା ।

ସେବାନନ୍ଦ ଦାସ କର୍ତ୍ତୃକ ଲିଖିତ "ଉତ୍କଳ ରତ୍ନ ସଂଗ୍ରହ" ।ନାମକ ହିନ୍ଦୀ ପୁସ୍ତକରେ ସେ ନିମ୍ନୋକ୍ତ ପଂକ୍ତି ଦୁଇଟି କୌଣସି ପୁସ୍ତକରୁ ଉଦ୍ଧୃତ କରିଛନ୍ତି । ତାହା ଉଲ୍ଲେଖ କରିନାହାନ୍ତି । ଯଥା—

"ମୋର ଭାଗ୍ୟେ ନାହି ମୁଇଁ ଦେଖିବ ନୟନେ ।
ତୋର ଦେଖା ହଇଲେ ମୋରେ କରିହ ସ୍ମରଣେ ।।"

ଏହି ପ୍ରମାଣରୁ ଜଣାଯାଏ ଯେ, ଶ୍ରୀମନ୍ମହାପ୍ରଭୁଙ୍କ ଆବିର୍ଭାବ ପୂର୍ବେ ଶ୍ରୀଳ ମାଧବେନ୍ଦ୍ରଙ୍କର ତିରୋଧାନ ହୋଇଥିଲା । "ବ୍ୟାସଯୋଗୀ-ଚରିତ୍ର" ନାମକ ଗ୍ରନ୍ଥରେ କୁହାଯାଇଛି ଯେ, ୧୪୦୬ ଶକାବ୍ଦ ବୈଶାଖୀ ଚନ୍ଦନ ପୂର୍ଣ୍ଣିମା ତିଥିରେ ଶ୍ରୀଳ ପୁରୀ ଗୋସ୍ୱାମୀଙ୍କର ତିରୋଧାନ ହୋଇଥିଲା । କିନ୍ତୁ ମୁରାରି ଗୁପ୍ତ କଡ଼ଚ୍ଚା ସହିତ ପୂର୍ବୋକ୍ତ ପ୍ରମାଣର ସାମଞ୍ଜସ୍ୟ ନାହିଁ । କିନ୍ତୁ ଶ୍ରୀ ମୁରାରି ଗୁପ୍ତ-କଡ଼ଚ୍ଚା ସବୁଠାରୁ ପ୍ରାମାଣିକ ଗ୍ରନ୍ଥ ବୋଲି ଗୌଡ଼ୀୟ ବୈଷ୍ଣବାଚାର୍ଯ୍ୟଗଣଙ୍କର ଅଭିମତ । ଶ୍ରୀ ଶଙ୍କରନାଥ ରାୟଙ୍କ ଲିଖିତ "ଭାରତର ସାଧକ" ନାମକ ଗ୍ରନ୍ଥର ୬ଷ୍ଠ ଖଣ୍ଡରେ ଶ୍ରୀଳ ପୁରୀପାଦଙ୍କର ତିରୋଭାବ ସମ୍ବନ୍ଧରେ ସ୍ପଷ୍ଟ ଉଲ୍ଲେଖ ଅଛି ଯେ—"ଗୌଡ଼ୀୟ ବୈଷ୍ଣବାଚାର୍ଯ୍ୟଗଣଙ୍କ ମତରେ ଆଚାର୍ଯ୍ୟ ଶ୍ରୀ ପୁରୀପାଦଙ୍କର ସଙ୍କଳ୍ପ ସିଦ୍ଧ ହୋଇଥିଲା । ଶ୍ରୀଧାମ ନବଦ୍ୱୀପରେ ଉପନୀତ ହୋଇ ନବଜାତ ଶ୍ରୀ ଗୌରସୁନ୍ଦରଙ୍କୁ ସେ ଦର୍ଶନ କରିଯାଇଥିଲେ । ଆଜି ସେ ପୂର୍ଣ୍ଣ ମନସ୍କାମ ।

ଏ ପ୍ରକାର ବିଭିନ୍ନ ଗ୍ରନ୍ଥର ବିଭିନ୍ନ ମତବାଦରୁ ଜଣାଯାଏ ଯେ, ଶ୍ରୀଳ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀଙ୍କର ଆବିର୍ଭାବ ଓ ତିରୋଭାବର ସଠିକ ସାଲ-ତାରିଖ ସମ୍ବନ୍ଧରେ ନିଶ୍ଚିତ କୌଣସି ପ୍ରମାଣ ନାହିଁ । ତେବେ ଶ୍ରୀ ଚୈତନ୍ୟ ଚରିତାମୃତଙ୍କ ମତରେ ୧୫୦୧ ଖ୍ରୀଷ୍ଟାବ୍ଦରେ ଆବିର୍ଭାବ ହୋଇଥିଲା । ଶ୍ରୀମନ୍ମହାପ୍ରଭୁ ପ୍ରଥମେ ବୃନ୍ଦାବନ ଗମନ ସମୟରେ ଯେତେବେଳେ କାନାଇନାଟଶାଳାରୁ ଫେରିଆସି ଶ୍ରୀପାଟ ଶାନ୍ତିପୁରରେ ଶ୍ରୀ ଅଦ୍ୱୈତ ଭବନରେ ଦଶଦିନ ବାସ କରିଥିଲେ, ସେତେବେଳେ ଶ୍ରୀପୁରୀ ଗୋସ୍ୱାମୀଙ୍କର ଆରାଧନା-ତିଥି ଉଦ୍‌ଯାପନ କରିଥିଲେ ।

ଶ୍ରୀଳ ମାଧବେନ୍ଦ୍ରଙ୍କର ଜନ୍ମସ୍ଥାନ ଓ ଜନ୍ମସମୟ ନେଇ ନାନା ମହଲରେ ନାନା ମତବାଦ ପ୍ରଚଳିତ ରହିଛି । କିନ୍ତୁ ତାଙ୍କ ସ୍ୱରଚିତ 'ରୂପାଭିସାର' ପଦ ଶେଷ ଭଣିତାରେ ସେ ସ୍ୱୟଂ ତାଙ୍କର ଜନ୍ମସ୍ଥାନର ପରିଚୟ ସନ୍ଦେହାତୀତ ରୂପେ ଇଙ୍ଗିତ ଦେଇ ଯାଇଛନ୍ତି । ଯଥା—

"ନବଯୌବନୀ ଚନ୍ଦ୍ରବଦନୀ ବୃନ୍ଦାବନ ବାଟେ ।
ମାଧବେନ୍ଦ୍ର ପୁରୀ ରଚିତ ଭଷ ବର୍ଣ୍ଣି ପୂର୍ଣ୍ଣିପାଟେ ।।"

ଏହି ପୂର୍ଣ୍ଣପାଟ ତଦନୀନ୍ତନ ଅବିଭକ୍ତ ବଙ୍ଗ ପ୍ରଦେଶର (ବର୍ତ୍ତମାନର ବାଂଲାଦେଶ) ଶ୍ରୀହଟ୍ଟ ଜିଲ୍ଲାରେ ଅବସ୍ଥିତ ଗୋଟିଏ କ୍ଷୁଦ୍ରଗ୍ରାମ । ଏହି ଗ୍ରାମରେ ଜନୈକ ଧର୍ମନିଷ୍ଠ ବାରେନ୍ଦ୍ର ବ୍ରାହ୍ମଣ ବଂଶରେ ଶ୍ରୀପୁରୀପାଦ ଆବିର୍ଭୂତ ହୋଇଥିଲେ । ସେ କାଶ୍ୟପ ଗୋତ୍ର, ଶୁଦ୍ଧ ଶ୍ରୋତ୍ରୀୟ ଏବଂ କରଜା ଗ୍ରାମୀଣ । ଖ୍ରୀଷ୍ଟୀୟ ପଞ୍ଚଦଶ

ଶତାବ୍ଦୀରେ ରଚିତ "ହରିଚରିତ" ନାମକ ଗ୍ରନ୍ଥରେ ଦେଖାଯାଏ ଯେ, ଗ୍ରନ୍ଥକାର ଚତୁର୍ଭୁଜଙ୍କ ପୂର୍ବପୁରୁଷ ସ୍ୱର୍ଣ୍ଣରେଖ ଗଙ୍ଗା ଧର୍ମପାଳଙ୍କ ନିକଟରୁ ବରେନ୍ଦ୍ରଭୂମିର କରଜା ନାମକ ଗ୍ରାମ ଶଣ୍ଡିକ ପାଇଥିଲେ । ସୁତରାଂ କରଜା ଗ୍ରାମୀଣ ଶ୍ରୀଳ ମାଧବେନ୍ଦ୍ର ମଧ୍ୟ ଚତୁର୍ଭୁଜଙ୍କ ପରି ସ୍ୱର୍ଣ୍ଣରେଖ ବିପ୍ରଙ୍କର ବଂଶଧର । ଶ୍ରୀଳ ମାଧବେନ୍ଦ୍ରଙ୍କର ଜନ୍ମତାରିଖ ସମ୍ପର୍କରେ ନିର୍ଭୁଲ ସମୟ ଜଣା ନ ଗଲେ ମଧ୍ୟ ହିନ୍ଦୀରେ ଲିଖିତ "ଭକ୍ତ ପତ୍ରସଂଗ୍ରହ" ପୁସ୍ତକର ଭାଷାନୁଯାୟୀ ଏହାଙ୍କର ଜନ୍ମ ପଞ୍ଚଦଶ ଶତାବ୍ଦୀର ଦ୍ୱିତୀୟପାଦ ବୋଲି ଜଣାଯାଏ । ଏହି ପୁସ୍ତକରେ ଲିଖିତ ଅଛି ଯେ, "ବ୍ୟାସ ଯୋଗୀ ଚରିତ୍ର" ନାମକ ଗ୍ରନ୍ଥାନୁସାରେ ଶ୍ରୀମାଧବେନ୍ଦ୍ର ପୁରୀପାଦଙ୍କର ପରମଗୁରୁ ଶ୍ରୀଳ ବ୍ୟାସତୀର୍ଥଙ୍କର ଜନ୍ମ ୧୫୦୨ ବିକ୍ରମାବ୍ଦ; ଅର୍ଥାତ ୧୪୪୫ ଖ୍ରୀଷ୍ଟାବ୍ଦରେ । କିନ୍ତୁ ଶ୍ରୀଳ ପୁରୀପାଦ ଶ୍ରୀଳ ବ୍ୟାସତୀର୍ଥଙ୍କଠାରୁ ବୟସରେ ବଡ଼ ଥିଲେ ଏବଂ ଅଧିକ ବୟସରେ ସନ୍ନ୍ୟାସଧର୍ମ ଗ୍ରହଣ କରିଥିଲେ । ଏଥିରୁ ପ୍ରତୀୟମାନ ହୁଏ ଯେ, ଶ୍ରୀଳ ପୁରୀପାଦଙ୍କର ଜନ୍ମ ୧୪୪୫ ଖ୍ରୀଷ୍ଟାବ୍ଦର କିଛି ପୂର୍ବେ ହୋଇଥିଲା । ଏତଦ୍‌ବ୍ୟତୀତ ତାହାଙ୍କର ବଂଶ ପରିଚୟ ଓ ଜନ୍ମତାରିଖ ବିଷୟରେ ବିଶେଷ କିଛି ଅଦ୍ୟାବଧି ଜଣାଯାଇ ନାହିଁ । ଉକ୍ତ ଗ୍ରନ୍ଥରେ କୁହାଯାଇଛି ଯେ, ଶ୍ରୀଳ ପୁରୀପାଦଙ୍କର ପୂର୍ବ ନାମ ଥିଲା—"ମାଧବ ଧର" । ଏ କଥା ମଧ୍ୟ ସମ୍ପୂର୍ଣ୍ଣ କାଳ୍ପନିକ ବୋଲି ମନେହୁଏ । କାରଣ ବ୍ରାହ୍ମଣଙ୍କର ଧର ଉପାଧି ଅଛି କି ନାହିଁ, ତାହା ମୋର ଅଜ୍ଞାତ । ହୁଏତ ଭାରତବର୍ଷର ଅନ୍ୟ କୌଣସି ପ୍ରଦେଶରେ ବ୍ରାହ୍ମଣଗଣଙ୍କର 'ଧର' ଉପାଧି ବା 'ପଦବୀ' ଥାଇପାରେ । ଆଉ ଗୋଟିଏ ଅବାସ୍ତବ ଘଟଣା ଉକ୍ତ ଗ୍ରନ୍ଥରେ କୁହାଯାଇଛି ଯେ ଶ୍ରୀଳ ବ୍ୟାସତୀର୍ଥଙ୍କର ସନ୍ନ୍ୟାସ ଶିଷ୍ୟ ଶ୍ରୀଳ ମାଧବେନ୍ଦ୍ର ପୁରୀ, କିନ୍ତୁ 'ତୀର୍ଥଙ୍କର ଶିଷ୍ୟ' 'ପୁରୀ' କିପରି ହେଲା ? ଯଦି 'ମନ୍ତ୍ରଶିଷ୍ୟ' ହୁଅନ୍ତି, ତାହାହେଲେ ସମ୍ଭବ । କିନ୍ତୁ କୁହାଯାଇଛି ଯେ, 'ସନ୍ନ୍ୟାସ' ଶିଷ୍ୟ । ଏହା ନିତାନ୍ତ ଅଯୌକ୍ତିକ କଥା ।

ପୁରୀଲକ୍ଷଣଂ ଯଥା—

ତତ୍ତ୍ୱଜ୍ଞାନେନ ସମ୍ପୂର୍ଣ୍ଣଃ ପୂର୍ଣ୍ଣତତ୍ତ୍ୱପଦେ ସ୍ଥିତଃ ।
ପରବ୍ରହ୍ମରତୋ ନିତ୍ୟଂ ପୁରୀ ନାମ ସ ଉଚ୍ୟତେ ।।
(ବୃହତ ଶଙ୍କର-ବିଜୟ)

ଯଦ୍ୟପି ମାଧବେନ୍ଦ୍ର ପୁରୀ ମହାଭାଗ ।
ତଥାପି କରିଯାଛେନ ଶିଖାସୂତ୍ର ତ୍ୟାଗ ।।

।। ଇତି-ତୃତୀୟ ବୈଭବ ।।

———

# ଚତୁର୍ଥ ବୈଭବ

## ( ସପ୍ତଶର୍ ନଦୀର ଉତ୍ସ ସନ୍ଧାନ )

ସପ୍ତଶର ନଦୀର ଉତ୍ପତ୍ତିର ହେତୁ ନିର୍ଦ୍ଦେଶ କରିବାକୁ ଗଲେ ପୂର୍ବର କିଛି ଘଟଣା ପୁନରୁଲ୍ଲେଖ କରିବା ପ୍ରୟୋଜନ ।

ଶ୍ରୀରାମଚନ୍ଦ୍ର, ସୀତାଦେବୀ ଓ ଲକ୍ଷ୍ମଣଙ୍କୁ ସଙ୍ଗରେ ନେଇ ପିତୃସତ୍ୟ ପାଳନାର୍ଥେ ଯେତେବେଳେ ବନବାସ ଲାଗି ଅନିର୍ଦ୍ଦିଷ୍ଟପଥରେ ଯାତ୍ରା କଲେ, ସେତେବେଳେ ପ୍ରଥମେ ଯାଇ ବିଚିତ୍ର ଚିତ୍ର ପରିପୂର୍ଣ୍ଣ ଚିତ୍ରକୂଟ ପର୍ବତ ନିକଟରେ ଉପନୀତ ହେଲେ । ଏକଦା ବର୍ଷାଋତୁରେ ପ୍ରଚଣ୍ଡ ଝଞ୍ଜା-ବୃଷ୍ଟିନଦର୍ଶନ କରି ଶ୍ରୀ ସୀତାଦେବୀ ଭୀତା ସନ୍ତ୍ରସ୍ତା ହୋଇ ଜୈମିନୀ ମୁନିଙ୍କର ନାମ କହୁଥିବା ଶୁଣି ଶ୍ରୀରାମ ସ୍ମିତ ହସି ଶ୍ରୀସୀତାଙ୍କୁ ସସ୍ନେହରେ ଅଙ୍କାରୋପଣ କରି କହିଲେ—ଦେବି ! ଏହି ସାମାନ୍ୟ ଭୟର ସୂଚନାରେ ଏତେ ବ୍ୟାକୁଳ ହୋଇପଡ଼ିଲ କାହିଁକି ? ତୁମର କଣ ଅପ୍ରକଟ ବୈକୁଣ୍ଠଲୀଳା ବିସ୍ମରଣ ଘଟିଛି ? ପୁଣି କିଛିକ୍ଷଣ ଉତ୍ତାରୁ ଆକାଶ ଯେତେବେଳେ ମେଘମୁକ୍ତ ହେଲା ତତ୍ରତ୍ୟ ମୁନିଗଣଙ୍କର ଆଶ୍ରମରୁ ସବତ୍ସା ପୟସ୍ୱିନୀ ଚମରୀ ଧେନୁଗଣ ନବୀନ ତୃଣ ଲୋଭରେ ଇତସ୍ତତଃ ବିଚରଣ କରୁ କରୁ ସେମାନଙ୍କର ନିକଟବର୍ତ୍ତୀ ହେଲେ, ତାହା ଲକ୍ଷ୍ୟକରି ଦଶରଥତନୟ ବାରମ୍ବାର ହାସ୍ୟ କରିବାକୁ ଲାଗିଲେ । ଜନକାତ୍ମଜା ପ୍ରାଣବଲ୍ଲଭଙ୍କର ମଧୁର ହାସ୍ୟର କାରଣ ଅନୁଧାବନ କରି ନ ପାରି ସକୌତୁକ ପ୍ରଶ୍ନ କଲେ—'ପ୍ରଭୋ ! ଆପଣ ଏପରି ଭାବରେ ହସୁଛନ୍ତି କାହିଁକି ? ପଦ୍ମପଳାଶ-ଲୋଚନ ଶ୍ରୀରାମ ସ୍ୱରୂପାଶକ୍ତି ଶ୍ରୀସୀତାଦେବୀଙ୍କୁ ସୁମଧୁର ବାକ୍ୟରେ କହିଲେ -ଏହା ହିଁ ଆମର ଭାବୀ ଦ୍ୱାପର ଯୁଗରେ ବ୍ରଜଲୀଳାର ପ୍ରଧାନ ଉପକରଣ ଓ ଉଦ୍ଦୀପନାକାରୀ ସଙ୍କେତ ବହନ କରୁଛି ।

ମୁଁ ଯେତେବେଳେ ଦ୍ୱାପରଯୁଗରେ ଅଭିନ୍ନ ଗୋଲୋକ ବ୍ରଜଧାମସ୍ଥ ଗୋକୁଳରେ ନନ୍ଦ-ଯଶୋଦାଳୟରେ ଅବତୀର୍ଣ୍ଣ ହେବି ଏବଂ ତୁମେ ମଧ୍ୟ ବର୍ଷାନାଧିପତି ବୃଷଭାନୁ-କୀର୍ତ୍ତିଦାଦେବୀଙ୍କର ଆଳୟରେ ପ୍ରକାଶିତ ହେବ । ସେତେ-ବେଳେ ଏହି ରୂପେ ଧେନୁଗଣଙ୍କ ସମଭିବ୍ୟାହାରରେ ମୁଁ ଗୋଚାରଣଲୀଳାର ଅବତାରଣା କରିବି । ଏହି ଚିତ୍ରକୂଟ ଶୈଳ ପରିବର୍ତ୍ତେ ଗୋବର୍ଦ୍ଧନ ଗିରିରାଜ ସେତେବେଳେ ଅତ୍ୟନ୍ତ ପ୍ରିୟବସ୍ତୁ ରୂପେ ଗଣ୍ୟ ହେବ । ଆଉ ଆମର ଆଶ୍ରମ ସମ୍ମୁଖରେ ଏହି ଯେଉଁ କଦମ୍ବତରୁ ବିଦ୍ୟମାନ ରହିଛି ଦ୍ୱାପରରେ ଏହା ପରିବର୍ତ୍ତେ

କେଳିକଦମ୍ବ ଆମର ଆଶ୍ରୟ ତରୁ ହେବ । ସେତେବେଳେ ମୁଁ ହ୍ଲାଦିନୀଶକ୍ତି ଅନ୍ତର୍ଭୁକ୍ତ ଏକ ଅପରୂପ ରୂପରେ ଆତ୍ମପ୍ରକାଶ କରିବି ।

ଶ୍ରୀରାମଙ୍କର ଏହି ରହସ୍ୟୋଦ୍ଦୀପକ ବିବରଣ ଅବଗତ ହୋଇ ସକୌତୁକା ଜାନକୀ ଦ୍ୱାପରଯୁଗର ସେହି ନିରୁପମ ରୂପମାଧୁରୀ ଦର୍ଶନ ଲାଗି ଉଦ୍ୟଗ୍ର ବାସନା ପ୍ରକାଶ କରି ବିନୟ ବିନମ୍ର ବଚନରେ ସନିର୍ବନ୍ଧ ଅନୁରୋଧ କଲେ । ଦାଶରଥି ପ୍ରାଣପ୍ରିୟା ଜାନକୀଙ୍କର ଅନୁନୟରେ ଅନୁନୀତ ହୋଇ କହିବାକୁ ଲାଗିଲେ—ମୋତେ ଅନ୍ତତଃ ସପ୍ତାହେ କାଳ ସମୟ ଦେଲେ ମୋର ସେହି ପରବର୍ତ୍ତୀ ଭାବିନୀମୂର୍ତ୍ତି ଦର୍ଶନ କରାଇ ପାରିବି । ସେହିଦିନଠାରୁ ଆତ୍ମମାୟାରେ ସମ୍ଭାବନାମୟ ମୂର୍ତ୍ତିରୂପ ପ୍ରସ୍ତୁତିପର୍ବରେ ଆତ୍ମନିୟୋଗ କଲେ । କିନ୍ତୁ ସାତଦିନ ପୂର୍ବେ ଅର୍ଥାତ୍ ଚତୁର୍ଥ ଦିବ ରେ ସେହି ନିର୍ମିୟମାଣ ମୂର୍ତ୍ତି ସନ୍ଦର୍ଶନ ଲାଗି ଶ୍ରୀ ସୀତା ଧୈର୍ଯ୍ୟହରା ହୋଇ ପଡ଼ିଲେ । ସେତେବେଳେ ସୀତାଙ୍କର ଦର୍ଶନର ଆଗ୍ରହାତିଶଯ୍ୟ ହେତୁ ଶ୍ରୀରାମ ପ୍ରସ୍ତୁୟମାନ ଶ୍ରୀମୂର୍ତ୍ତି ଦର୍ଶନ କରାଇଲେ ।

ଯେତେବେଳେ ସର୍ବଶକ୍ତିସାରଭୂତା ସେହି ହ୍ଲାଦିନୀଶକ୍ତି ସ୍ୱରୂପା ଶ୍ରୀ ସୀତା ଦେବୀଙ୍କର ଶ୍ରୀକରପଲ୍ଲବ ସ୍ପର୍ଶଲାଭ କରିବା ସଙ୍ଗେ ସଙ୍ଗେ ହିଁ ସେହି ମୂର୍ତ୍ତି ସଂଜୀବନୀ ଶକ୍ତିରେ ସଂଜୀବିତ ହୋଇଉଠିଲେ । ସେତେବେଳେ ଶ୍ରୀମୂର୍ତ୍ତିର ପରିପୂର୍ଣ୍ଣତା ବା ସୁସ୍ପଷ୍ଟତା ସମ୍ପାଦନ କରିବା ଆଉ ସମ୍ଭବପର ହୋଇଉଠିଲା ନାହିଁ । ଅଦ୍ୟାବଧି ସେହି ଅସମାପ୍ତ ଅସ୍ପଷ୍ଟ ରୂପ ରହିଗଲା । ଶ୍ରୀମୂର୍ତ୍ତି ସନ୍ଦର୍ଶନରେ ଶ୍ରୀ ସୀତାଦେବୀ ବିସ୍ମୟାଭିଭୂତା ହୋଇପଡ଼ିଲେ ଏବଂ ଭାବିଲେ, ଏ କି ଆଶ୍ଚର୍ଯ୍ୟ । ସମଗ୍ର ବ୍ରଜଲୀଳାର ସଂକ୍ଷିପ୍ତ ସାର ସମାବେଶ ଅନିନ୍ଦ୍ୟସୁନ୍ଦର ଅଖିଳ ରସାମୃତ ମୂର୍ତ୍ତିର ଏକତ୍ର ସହାବସ୍ଥାନ ଏକ ଅଙ୍ଗରେ, ସଖୀ, ସଖା, ବତ୍ସ ସହ ଧେନୁ ଏବଂ ସର୍ବାଲଙ୍କାରସମନ୍ୱିତ ବିଗ୍ରହ । ଏସବୁ ଦର୍ଶନ ପରେ ନିତ୍ୟ ଅର୍ଚ୍ଚନୀୟତା ଦେଖାଦେବାରୁ ଶ୍ରୀ ସୀତାଦେବୀ ଶ୍ରୀବିଗ୍ରହ ଆରାଧନାର ଭାର ନେଲେ ଏବଂ କହିଲେ, ଆମର ବନବାସାନ୍ତେ ଏହି ଶ୍ରୀବିଗ୍ରହଙ୍କୁ ଅଯୋଧ୍ୟାକୁ ନେଇଯିବି । ଏହା କହି ଉଭୟ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କଲେ । କିଛିଦିନ ପରେ ଅତ୍ରି ମୁନିଙ୍କ ଆଶ୍ରମରେ ଉପସ୍ଥିତ ହୋଇ ରାକ୍ଷସାଦି ବିନାଶ କରି, ସେଠାରେ ଅବସ୍ଥାନ କରୁ କରୁ ସୀତାହରଣାଦିର ବିବିଧ ଘଟଣାର ଘାତପ୍ରତିଘାତରେ ଶ୍ରୀ ବିଗ୍ରହ ଅର୍ଚ୍ଚନାଦିରୁ ବିରତ ରହନ୍ତି ଇତ୍ୟବସରରେ ପ୍ରଜାପତି ବ୍ରହ୍ମା ବିଗ୍ରହ-ସେବା ଭାର ଗ୍ରହଣ କରନ୍ତି । ତତ୍ପରେ ସୀତା ଉଦ୍ଧାର ଶେଷରେ ଯେତେବେଳେ ଅଯୋଧ୍ୟାଭିମୁଖରେ ପ୍ରତ୍ୟାବର୍ତ୍ତନ ସମୟରେ ପଥ ମଧ୍ୟରେ ଏହି ରମଣୀୟ ସ୍ଥାନ ଦେଖି ରାତ୍ରିଯାପନ କରନ୍ତି ସୀତା ଓ ଲକ୍ଷ୍ମଣଙ୍କ ସହ ଶ୍ରୀରାମଚନ୍ଦ୍ର । ଶ୍ରୀସୀତାଦେବୀ ସେ ସମୟରେ ହଠାତ୍ ରଜଃସ୍ୱଳା ହୁଅନ୍ତି; କିନ୍ତୁ ତା ଚତୁର୍ଥ ଦିନରେ ଜାହ୍ନବୀ

ଦେବୀଙ୍କର ନଦୀରେ ଅବଗାହନ ସ୍ନାନର ବାସନା ଜାଗେ । କିନ୍ତୁ ସେ ସ୍ଥାନରେ କୌଣସି ନଦୀ ନ ଥିବାରୁ ଶ୍ରୀରାମଚନ୍ଦ୍ର ନିଜ ଧନୁ ଦ୍ୱାରା ସାତଥର ଶର ସଂଯୋଜନ କରି କୌଣସି ଗୋଟିଏ ସ୍ଥାନର ଭୂମି ଭେଦକରି ତତକ୍ଷଣାତ ସେହି ସ୍ଥାନଟିକୁ ନଦ୍ୟାକାରରେ ପରିଣତ କରିଦେଲେ । ସେହି ତ୍ରେତାଯୁଗରୁ ଏହି ରମଣୀୟ ସ୍ଥାନର ନାମ ପାରିଭାଷିକ ଶବ୍ଦରେ 'ରମଣା' ବା 'ରେମୁଣା' ଏବଂ ନଦୀଟିର ନାମ 'ଶପ୍ତଶର' ହୋଇଛି । ଏହି ଶପ୍ତସର ନଦୀଟି ଅଦ୍ୟାବଧି କ୍ଷୀଣରେଖା ରୂପେ ସ୍ରୋତହର ହୋଇ ବିଦ୍ୟମାନ ରହିଛି ।

ସପ୍ତଶର ତୀରେ ବିରାଜିତ ଶଙ୍କର ।।

(ଭକ୍ତିରତ୍ନାକର—୫ମ ତରଙ୍ଗ)

×

ସପ୍ତଶର ହେରେ ପୁରୀ ଶ୍ରୀଯମୁନା ଭ୍ରମେ ।
ଭ୍ରମିଲେନ ତାଁର ତୀରେ ଶୋଭା ହେରି କ୍ରମେ ।।

(ଭକ୍ତିରତ୍ନାକର—୫ମ ତରଙ୍ଗ)

।। ଇତି ଚତୁର୍ଥ ବୈଭବ ।।

———

# ପଞ୍ଚମ ବୈଭବ

## (ଦେବଦେବ ମହାଦେବ ଶ୍ରୀଗର୍ଗେଶ୍ୱରଙ୍କର ଆବିର୍ଭାବ-ଲୀଳାସ୍ୱାଦନ)

ସେହି ଶ୍ରୀରାମଚନ୍ଦ୍ର କର୍ତ୍ତୃକ ସପ୍ତଶର ନିକ୍ଷିପ୍ତ ପାତାଳୋତ୍‌ଥିତା ସପ୍ତଶର-ସରିତ ସୈକତରେ ଯେଉଁ ଦେବାଦିଦେବ ମହାଦେବ ଶ୍ରୀ ଶଙ୍କରଙ୍କର ଲିଙ୍ଗରାଜ ମୂର୍ତ୍ତି ବିଦ୍ୟମାନ ରହିଛନ୍ତି, ସେ ହିଁ ପଞ୍ଚତୀର୍ଥ ମଧ୍ୟରେ ପଞ୍ଚମତୀର୍ଥ; ସେହି ଲିଙ୍ଗରାଜଙ୍କର ଆବିର୍ଭାବ ଓ ଆବିଷ୍କାର କାହାଣୀ ନିମ୍ନରେ ବର୍ଣ୍ଣିତ ହେଲା ।

ଏକଦା ଏହି ମନୋରମ ପାତାଳଗଙ୍ଗାତୁଲ୍ୟ ସପ୍ତଶର ସୈକତରେ ଭଗବାନ ଗର୍ଗମୁନି ପ୍ରତିଦିନ ଧ୍ୟାନମଗ୍ନ ରହୁଥିଲେ । ଏହିପରି ଭାବରେ କିଛିଦିନ ଅତିବାହିତ ହେଲା । ହଠାତ୍ ଦିନେ ତାଙ୍କର ଦୃଷ୍ଟିନିବଦ୍ଧ ହୁଏ ଗୋଟିଏ ଅତ୍ୟାଶ୍ଚର୍ଯ୍ୟ ଘଟଣା ପ୍ରତି । ଗୋଟିଏ ପୟସ୍ୱିନୀ ଗାଭୀ ପ୍ରତିଦିନ ଆସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଦଣ୍ଡାୟମାନ ହୋଇ ସ୍ୱତଃସ୍ଫୂର୍ତ୍ତ ଭାବେ ନିଜ ପହ୍ନାରୁ ଦୁଗ୍ଧଧାର କ୍ଷରଣ କରିବାକୁ ଲାଗିଥାଏ ।

ଏପରି ଭାବେ କିଛିଦିନ ଅତିବାହିତ ହେବା ପରେ ଶ୍ରୀଗର୍ଗମୁନିଙ୍କ ମନରେ ପ୍ରବଳ କୌତୂହଳ ଜାତହେଲା । ତତ୍ପରେ ସେ ସେହି ସ୍ଥାନ ଖନନ କରିବାକୁ ପ୍ରବୃତ୍ତ ହେଲେ । ମୃତ୍ତିକା ଖନନ କରୁ କରୁ ଦେଖିବାକୁ ପାଇଲେ ଏକ ଅତ୍ୟଦ୍ଭୁତ ଶକ୍ତି ସମନ୍ୱିତ ଲିଙ୍ଗରାଜ ମୂର୍ତ୍ତି । ଏହି ମୂର୍ତ୍ତି ଆବିଷ୍କାର ଦ୍ୱାରା ସେ ବିସ୍ମୟବିମୁଗ୍ଧ ହୋଇ ଭକ୍ତି ଗଦଗଦ ଅନ୍ତରରେ ସ୍ତବସ୍ତୁତି ଓ ପ୍ରଣତି କରିବାକୁ ଲାଗିଲେ ଏବଂ "ହରିହର" ଅଭିନ୍ନ ମୂର୍ତ୍ତିଙ୍କୁ ପ୍ରେମାପ୍ଲୁତ ମାନସରେ ନିତ୍ୟ ଆରାଧନା କରିବାକୁ ଲାଗିଲେ ସୁଦୀର୍ଘକାଳ ପର୍ଯ୍ୟନ୍ତ । ଏହିପରି ଭାବେ ଦୀର୍ଘଦିନ ଧରି ପୂଜାର ଚାଲିବାକୁ ଲାଗିଲା । ତାପରେ ବାଲେଶ୍ୱର ନାମ ପ୍ରକାଶକ ବାଣାସୁର ନାମଧେୟ ପରମ ଶିବଭକ୍ତ ମହୀପତି ଶ୍ରୀଗର୍ଗ ମୁନି କର୍ତ୍ତୃକ ଆବିଷ୍କୃତ ଓ ସେବିତ ଶ୍ରୀଗର୍ଗେଶ୍ୱର ଶିବମନ୍ଦିର ନିର୍ମାଣ କରି ସୁଷ୍ଠୁ ପୂଜାର୍ଚ୍ଚନାର ସୁବ୍ୟବସ୍ଥା କରିଦେଲେ ଏବଂ ଯେଉଁଥିରେ ସ୍ଥାୟୀ ସେବା ଭବିଷ୍ୟତରେ ବ୍ୟାହତ ନ ହୁଏ ସେଥିଲାଗି ପୂଜକ ଓ ସେବାପରିଚାଳନା ଲାଗି ଆମ୍ରବୃକ୍ଷ ସମନ୍ୱିତ ବିଶାଳ ଭୂଖଣ୍ଡ ଦାନ କଲେ ।

ଶ୍ରୀଶିବଶଙ୍କର ମହାସ୍ନାନ ନିମିତ୍ତ ଗୋଟିଏ ପ୍ରକାଣ୍ଡ କୁଣ୍ଡ (ଦୀର୍ଘିକା) ଖନନ କରିଦେଲେ । ଶ୍ରୀମୂର୍ତ୍ତିଙ୍କର ନିତ୍ୟ ଭୋଗରାଗ ପାଇଁ ଶିବୋତ୍ତର ରୂପେ ଶସ୍ୟ ଉତ୍ପାଦନଯୋଗ୍ୟ ପ୍ରଚୁର ଜମି ଦାନକଲେ । ଅଦ୍ୟାବଧି ସେହିସବୁ ବ୍ୟବସ୍ଥା ବିଦ୍ୟମାନ ରହିଛି । ପ୍ରତିବର୍ଷ ଶିବରାତ୍ରି ଉପଲକ୍ଷେ ମହାସମାରୋହରେ ଉତ୍ସବ ପାଳିତ ହୋଇଆସୁଛି । ଭକ୍ତବାଞ୍ଛା କଳ୍ପତରୁ ଗର୍ଗେଶ୍ୱର ସମସ୍ତ ଭକ୍ତଙ୍କର ମନୋବାଞ୍ଛା ପୂରଣ କରନ୍ତି । ଏଥିଲାଗି ବହୁ ଅର୍ଥୀ, ପ୍ରାର୍ଥୀ, ଜ୍ଞାନୀ, ଯୋଗୀ ଓ ଭକ୍ତବୃନ୍ଦଙ୍କର ସମାଗମ ହୋଇଥାଏ ।

ନିମ୍ନୋକ୍ତ ମନ୍ତ୍ର-ଗାୟତ୍ରୀ ଓ ଧ୍ୟାନମନ୍ତ୍ରରେ ପୂଜା କରାହୋଇଥାଏ–

ମନ୍ତ୍ର : "ଓଁ ମାଂ ମହାଦେବାୟ ଗର୍ଗେଶ୍ୱରାୟ ଶିବାୟ ନମଃ ।"

ଗାୟତ୍ରୀ : "ଓଁ ତତ୍‌ପୁରୁଷାୟ ବିଦ୍ମହେ, ମହାଦେବାୟ
ଧୀମହି, ତନ୍ନୋ ରୁଦ୍ରଃ ପ୍ରଚୋଦୟାତ୍ ।"

ଧ୍ୟାନ : ଓଁ ଧ୍ୟାୟେନ୍ନିତ୍ୟଂ ମହେଶଂ ରଜତ ଗିରିନିଭଂ ଚାରୁଚନ୍ଦ୍ରାବତଂଶମ୍ ।
ରତ୍ନ କଳ୍ପୋଜ୍ଜ୍ୱଲାଙ୍ଗଂ ପରଶୁମୃଗବରାଭୀତି ହସ୍ତଂ ପ୍ରସନ୍ନମ ।।
ପଦ୍ମାସୀନଂ ସମନ୍ତାତ୍ ସ୍ତୁତମମରଗଣୈର୍ବ୍ୟାଘ୍ରକୃତ୍ତିଂବସାନଂ
ବିଶ୍ୱାଦ୍ୟଂ ବିଶ୍ୱବୀଜଂ ନିଖିଳଭୟହରଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରମ୍ ।।

## ଶିବଙ୍କର ଅଷ୍ଟମୂର୍ତ୍ତି-ପୂଜା :

ପୂର୍ବେ– ଓଁ ସ୍ୱାୟ କ୍ଷିତିମୂର୍ତ୍ତୟେ ନମଃ ।
ଇଶାନ– ଓଁ ଭବାୟ ଜଳମୂର୍ତ୍ତୟେ ନମଃ
ଉତ୍ତର ଓଁ ରୁଦ୍ରାୟ ଅଗ୍ନିମୂର୍ତ୍ତୟେ ନମଃ ।
ବାୟୁକୋଣ–ଓଁ ଉଗ୍ରାୟ ବାୟୁମୂର୍ତ୍ତୟେ ନମଃ ।
ପଶ୍ଚିମରେ– ଓଁ ଭୀମାୟ ଆକାଶମୂର୍ତ୍ତୟେ ନମଃ ।
ନୈଋତରେ–ଓଁ ପଶୁପତୟେ ଯଜମାନ ମୂର୍ତ୍ତୟେ ନମଃ ।
ଦକ୍ଷିଣରେ–ଓଁ ମହାଦେବାୟ ସୋମମୂର୍ତ୍ତୟେ ନମଃ ।
ଅଗ୍ନିକୋଣରେ–ଓଁ ଈଶାନାୟ ସୂର୍ଯ୍ୟମୂର୍ତ୍ତୟେ ନମଃ ।

## ମଧ୍ୟରେ

ଓଁ ନନ୍ଦିନେ ନମଃ, ଓଁ ଭୃଙ୍ଗିନେ ନମଃ,
ଓଁ କ୍ଷେତ୍ରପାଳାୟ ନମଃ, ଓଁ ବାସୁଦେବାୟ ନମଃ ।

ସର୍ବାଗ୍ରେ ଶୁଦ୍ଧାସନରେ ଉପବିଷ୍ଟ ହୋଇ ଆଚମନ, ସୂର୍ଯ୍ୟାର୍ଘ୍ୟ, ପୁଷ୍ପଶୁଦ୍ଧି, ସାମାର୍ଘ୍ୟ କରନ୍ୟାସ :–

କରନ୍ୟାସ : ଶାଂ ଅଙ୍ଗୁଷ୍ଠାଭ୍ୟାଂ ନମଃ, ଶୀଂ ତର୍ଜନ୍ୟାଭ୍ୟାଂ
ସ୍ୱାହା, ଶୂଂ ମଧ୍ୟମାଭ୍ୟାଂ ବଷଟ, ଶୈଂ
ଅନାମିକାଭ୍ୟା ହୂଂ, ଶୌଂ କନିଷ୍ଠାଭ୍ୟାଂ ବୌଷଟ
ଶଃ କରତଳ ପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ଏହି

କ୍ରମରେ ଅଙ୍ଗନ୍ୟାସ : ଶାଂ ହୃଦୟାୟ ନମଃ, ଶୀଂ
ଶିରସେ ସ୍ୱାହା, ଶୂଂ ଶିଖାୟୈ ବଷଟ୍
ଶୈଂ କବଚାୟ ହୂଂ, ଶୌଂ ନେତ୍ରତୟାୟ ବୌଷଟ୍ ,
ଶଃ କରତଳ ପୃଷ୍ଠାଭ୍ୟମସ୍ତ୍ରାୟ ଫଟ୍ ।

ତାହାପରେ ପ୍ରାଣାୟାମ ବିଶେଷାର୍ଘ୍ୟ ସ୍ଥାପନଂ, ଭୂତଶୁଦ୍ଧି ପଞ୍ଚଦେବତାପୂଜା, ତତପରେ ଧ୍ୟାନ । ଯଥୋପଚାରରେ ପୂଜା, ପୁନଃ ପ୍ରାଣାୟାମ, ଜପ, ଜପସମର୍ପଣ, ଅଚ୍ଛିଦ୍ରାବଧାରଣ ବୈଗୁଣ୍ୟ ସମାଧାନ ।

## ଅଥ ଶିବପଞ୍ଚାକ୍ଷର ସ୍ତୋତ୍ରମ :

ନଗେନ୍ଦ୍ରହାରାୟ ତ୍ରିଲୋଚନାୟ
ଭସ୍ମାଙ୍ଗ ରାଗାୟ ମହେଶ୍ୱରାୟ ।
ନିତ୍ୟାୟ ଶୁଦ୍ଧାୟ ଦିଗମ୍ବରାୟ
ତସ୍ମୈ 'ନ' କାରାୟ ନମଃ ଶିବାୟ ।।
ମନ୍ଦାକିନୀ ସଲିଳଚର୍ଚ୍ଚିତାୟ ନନ୍ଦୀଶ୍ୱର ପ୍ରମଥନାଥ ମହେଶ୍ୱରାୟ ।
ମନ୍ଦାରପୁଷ୍ପ ବହୁପୁଷ୍ପ ସୁପୂଜିତାୟ
ତସ୍ମୈ 'ମ' କାରାୟ ନମଃ ଶିବାୟ ।।
ଶିବାୟ ଗୌରୀ ବଦନାବ୍ଜବୃନ୍ଦ
ସୂର୍ଯ୍ୟାୟଦକ୍ଷାଧ୍ୱର ନାଶକାୟ ।
ଶ୍ରୀନୀଳକଣ୍ଠାୟ ବୃଷଧ୍ୱଜାୟ
ତସ୍ମୈ 'ଶି' କାରାୟ ନମଃ ଶିବାୟ ।।
ବଶିଷ୍ଠ କୁମ୍ଭୋଦ୍ ଭବ ଗୌତମାର୍ଯ୍ୟ
ମୁନୀନ୍ଦ୍ର ଦେବାର୍ଚ୍ଚିତ ଶେଖରାୟ ।
ଚନ୍ଦ୍ରାର୍କ ବୈଶ୍ୱାନରଲୋଚନାୟ
ତସ୍ମୈ 'ବା' କାରାୟ ନମଃ ଶିବାୟ ।।

ଯଜ୍ଞସ୍ୱରୂପାୟ ଜଟାଧରାୟ
ପିନାକ ହସ୍ତାୟ ସନାତନାୟ ।
ଦବ୍ୟାୟ ଦେବାୟ ଦିଗମ୍ବରାୟ
ତସ୍ମୈ 'ୟ' କାରାୟ ନମଃ ଶିବାୟ ॥
ପଞ୍ଚାକ୍ଷରମିଦଂ ସ୍ତୋତ୍ରଂ ଯଃ ପଠେ ଛିବସାନ୍ନିଧୌ ।
ଶିବଲୋକମବାପ୍ନୋତି ଶିବେନ ସହ ମୋଦତେ ॥

—ଇତି ଶ୍ରୀମଚ୍ଛଙ୍କରାଚାର୍ଯ୍ୟ ବିରଚିତଂ ଶିବପଞ୍ଚାକ୍ଷର ସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ॥

## –ଅଥ ଶିବାଷ୍ଟକ-ସ୍ତୋତ୍ରମ୍–

ପ୍ରଭୁମୀଶମନୀଶମଶେଷଗୁଣଂ
ଗୁଣହୀନମହୀଶ ଗରଳାଭରଣମ୍ ।
ରଣ ନିର୍ଜ୍ଜିତଦୁର୍ଜୟ ଦୈତ୍ୟପୁରଂ
ପ୍ରଣମାମି ଶିବଂ ଶିବକଳ୍ପତରୁମ୍ ॥

ଗିରିରାଜ ସୁତାନ୍ୱିତ ବାମତନୁଂ
ତନୁନିନ୍ଦିତ ରାଜିତ କୋଟିବିଧୁମ୍ ।
ବିଧିବିଷ୍ଣୁ ଶିରୋଧୃତ ପଦଯୁଗଂ
ପ୍ରଣମାମି ଶିବଂ ଶିବକଳ୍ପତରୁମ୍ ॥

ଶଶଲାଞ୍ଛିତ ରଞ୍ଜିତ ସନ୍ମୁକୁଟମ୍
କଟିଲମ୍ବିତ ସୁନ୍ଦରକୃତ୍ତି ପଟମ ।
ସୁରଶୈବାଳିନୀକୃତ ପୂତଜଟଂ
ପ୍ରଣମାମି ଶିବଂ ଶିବକଳ୍ପତରୁମ୍ ॥

ନୟନତ୍ରୟଭୂଷିତ ଚାରୁମୁଖଂ
ମୁଖପଦ୍ମ ବିରାଜିତ କୋଟିବିଧୁମ୍ ।
ବିଧୁଖଣ୍ଡ ବିମଣ୍ଡିତ ଭାଲତଟଂ
ପ୍ରଣମାମି ଶିବଂ ଶିବକଳ୍ପତରୁମ ॥

ବୃଷରାଜ ନିକେତନମାଦି ଗୁରୁଂ
ଗରଳାଶନମାଜ ବିଷାନଧରମ୍ ।
ପ୍ରମଥାଧିପସେବକ ରଞ୍ଜନକଂ
ପ୍ରଣମାମି ଶିବଂ ଶିବକଳ୍ପତରୁମ୍ ॥

ମକରଧ୍ୱଜମତ୍ତ ମାତଙ୍ଗ ହରଂ
କରି ଚମଗନାଗ ବିବୋଧ କରମ ।
ବରମାର୍ଗନ ଶୂଳ ବିଷାନ୍ଧରଂ
ପ୍ରଣମାମି ଶିବଂ ଶିବକଳ୍ପତରୁମ୍ ॥

ଜଗଦୁଦ୍‌ଭବ ପାଳନ ନାଶକରଂ
ତ୍ରିଦିବେଶ ଶରୋମଣଧୃଷ୍ଟ ପଦମ୍ ।
ପ୍ରିୟ ମାନବ ସାଧୁଜନୈକଟତିଂ—
ପ୍ରଣମାମି ଶିବଂ ଶିବକଳ୍ପତରୁମ୍ ॥

ଅନାଥଂ ସୁଦୀନଂ ବିଭୋ ବିଶ୍ୱନାଥ
ପୁନର୍ଜନ୍ମ ଦୁଃଖାତ୍ ପରିତ୍ରାହି ଶମ୍ଭୋ ।
ଭଜତୋଽଖିଳ ଦୁଃଖ ସମୂହ ହରଂ—
ପ୍ରଣମାମ ଶିବଂ ଶିବକଳ୍ପତରୁମ

—ଇତି ଶିବାଷ୍ଟକଂ ସମ୍ପୂର୍ଣ୍ଣମ୍ ॥

ଏହି ଗୁଣାବତାରଙ୍କ ନିକଟରେ ଜୀବ ଯଦି ଐକାନ୍ତିକ ଶରଣାପନ୍ନ ହୁଏ, ତାହାହେଲେ ଐହିକ ଶାନ୍ତିଲାଭ, ପାରତ୍ରିକ ଶ୍ରୀଭବଲ୍ଲାଭ ହୁଏ । ଯେହେତ ସେ ସର୍ବସାଧନାରେ ସୁସିଦ୍ଧ—ପ୍ରଥମ ସର୍ବତ୍ୟାଗୀ-ଦିଗମ୍ବର, ଦ୍ୱିତୀୟ—ପରମ ଜ୍ଞାନୀ, ତୃତୀୟ—ମହାଯୋଗୀ, ଚତୁର୍ଥ—ସ୍ୱଳ୍ପେ ସନ୍ତୁଷ୍ଟ ଆଶୁତୋଷ, ପଞ୍ଚମ—ଏକନିଷ୍ଠ ବିଷ୍ଣୁଭକ୍ତ, "ବୈଷ୍ଣବାନାଂ ଯଥା ଶମ୍ଭୁଃ"—ଏହି ଶାସ୍ତ୍ରବାକ୍ୟ ହିଁ ପ୍ରମାଣ ।

ଜଗଦ୍‌ଗୁରୁ ଶ୍ରୀଳ ମାଧବେନ୍ଦ୍ରପୁରୀ ଗୋସ୍ୱାମୀ ଏହି ଶ୍ରୀ ଗର୍ଗେଶ୍ୱର ଶିବଙ୍କୁ ଶ୍ରୀଧାମ ବୃନ୍ଦାବନର ଶ୍ରୀ ଗୋପୀଶ୍ୱର ରୂପେ ପ୍ରତ୍ୟକ୍ଷ କରି ବନ୍ଦନା କରିଥିଲେ ।

"ଶ୍ରୀମଦ୍ ଗୋପୀଶ୍ୱରଂ ବନ୍ଦେ ଶଙ୍କରଂ କରୁଣାମୟମ୍ ।
ସର୍ବକ୍ଲେଶହରଂ ଦେବଂ ବୃନ୍ଦାରଣ୍ୟେ ରତିପ୍ରଦମ୍ ॥
ବୃନ୍ଦାବନାବନୀପତେ ଜୟ ସୋମ ସୋମ—
ମୌଳେ ସନନ୍ଦନ ସନାତନ ନାରଦେଡ୍ୟଃ
ଗୋପେଶ୍ୱର ବ୍ରଜବିଳାସି ଯୁଗାଙ୍ଘ୍ରିପଦ୍ମେ—
ଭକ୍ତିଂ ପ୍ରଯଚ୍ଛ ନିରୁପାଧିଂ ନମୋ ନମସ୍ତେ ॥"

(ଭକ୍ତିରତ୍ନାକର)

ଗର୍ଗେଶ୍ୱରେ ହେବିଲେନ ନିତ୍ୟ ଗୋପୀଶ୍ୱର ।
ରମଚଣ୍ଡୀ ଯୋଗମାୟା ହୈଲ ଗୋଚର ।।
ଚଣ୍ଡୀହାଟ ଶ୍ରୀଯମୁନା-ପୁଳିନ ହେବିଲ ।
ଶ୍ରୀଗୋପୀନାଥେର ରସଲୀଲ ନିରଖିଲ ।।

ଶ୍ରୀମାନ୍ ରସରସାରମ୍ଭୀ ବଂଶୀବଟତଟସ୍ଥିତଃ ।
କର୍ଷନ୍ ବେଣୁସ୍ୱନୈର୍ଗୋପୀର୍ଗୋପୀନାଥଃ ଶ୍ରିୟେଽସ୍ତୁନଃ ।।

(ଶ୍ରୀଚୈତନ୍ୟଚରିତାମୃତ ୧୭ ଶ୍ଳୋକ)

## ପ୍ରଣାମ :

ନମୋଽସ୍ତୁଭ୍ୟଂ ବିରୂପାକ୍ଷ ! ନମସ୍ତେ ଦିବ୍ୟଚକ୍ଷୁସେ ।
ନମଃ ପିନାକହସ୍ତାୟ ବଜ୍ରହସ୍ତାୟ ବୈ ନମଃ ।।
ନମସ୍ତ୍ରୀଶୂଳ ହସ୍ତାୟ ଦଣ୍ଡପାଶାସିପାନୟେ ।
ନମସ୍ତ୍ରୈଲୋକ୍ୟନାଥାୟ ଭୂତାନାଂ ପତୟେ ନମଃ ।।
ବାଣେଶ୍ୱରାୟ ନରକାର୍ଣ୍ଣବତାରକାୟ–
ଜ୍ଞାନପ୍ରଦାୟ କରୁଣାମୟ ସାଗରାୟ ।
କର୍ପୂରକୁନ୍ଦ ଧବଳେନ୍ଦୁ ଜଟାଧରାୟ–
ଦାରିଦ୍ର୍ୟ ଦୁଃଖ ଦହନାୟ ନମଃ ଶିବାୟ ।।
ନମଃ ଶିବାୟ ଶାନ୍ତାୟ କାରଣତ୍ରୟ ହେତବେ ।
ନିବେଦୟାମି ଚାତ୍ମାନଂ ତ୍ୱଂ ଗତିଃ ପରମେଶ୍ୱରଃ ।।

## ଆତ୍ମନିବେଦନ :

ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ ।
ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୁର୍ମୁକ୍ଷୀୟମାମୃତାତ ।।

।। ଇତି ପଞ୍ଚମ ବୈଭବ ।।

——

# ଷଷ୍ଠ ବୈଭବ

## ( ଶ୍ରୀ ଶ୍ରୀ ରସିକାନନ୍ଦ ଚରିତାସ୍ୱାଦନ )

କଳିଯୁଗ ପାବନାବତାରୀ ଶ୍ରୀମନ୍ମହାପ୍ରଭୁଙ୍କର ପ୍ରକଟଲୀଳା ସଙ୍ଗୋପନର ୫୭ ବର୍ଷ ପରେ ୧୫୧୨ ଶକାବ୍ଦରେ ଓଡ଼ିଶାର ସୌଭାଗ୍ୟ-ଶୈଳରେ ଅଜ୍ଞାନତମୋ-ନାଶକ ଭାସ୍କରରୂପୀ ଶ୍ରୀ ଶ୍ରୀ ରସିକାନନ୍ଦଦେବଙ୍କର ଶୁଭ-ଅଭ୍ୟୁଦୟ । ତଦାନୀନ୍ତନ ଓଡ଼ିଶାନ୍ତର୍ଗତ ଅଧୁନା ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାନ୍ତର୍ଗତ ଡୋଲଙ୍ଗ ନଦୀ ତୀରବର୍ତ୍ତୀ ରୋହିଣୀ ନାମକ ଗ୍ରାମରେ ଶିଷ୍ଟକରଣ ବଂଶୀୟ ଜମିଦାର ଶ୍ରୀ ଅଚ୍ୟୁତ ପଟ୍ଟନାୟକ ଓ ଭବାନୀଦେବୀଙ୍କୁ ଉପଲକ୍ଷ କରି ଶ୍ରୀ ଶ୍ରୀ ରସିକାନନ୍ଦଦେବ ଆବିର୍ଭୂତ ହୋଇଥିଲେ ।

ଶ୍ରୀ ମନ୍ମହାପ୍ରଭୁ ସ୍ୱୟଂ ନୀଳାଚଳ କ୍ଷେତ୍ରରେ ଅଷ୍ଟାଦଶବର୍ଷକାଳ ଅବସ୍ଥାନ କରି ଓଡ଼ିଶାକୁ ପ୍ରେମଭକ୍ତି ପ୍ଲାବନରେ ନିମଜ୍ଜିତ କରିଥିଲେ ସତ; କିନ୍ତୁ ଅହିନ୍ଦୁର ପ୍ରବଳ ଅତ୍ୟାଚାରରେ ଯାତାୟାତର ସୁବିଧା ନ ଥିବାରୁ ବାଲେଶ୍ୱର, ମେଦିନୀପୁର, ସିଂହଭୂମ ଜିଲ୍ଲାର ଅରଣ୍ୟାଚ୍ଛାଦିତ ବିଶାଳ ଭୂଭାଗ ଓ ପର୍ବତ ସମାକୀର୍ଣ୍ଣ ମୟୂରଭଞ୍ଜ ଓ କେନ୍ଦୁଝର ପ୍ରଭୃତି ଦେଶୀୟ ରାଜ୍ୟସମୂହ ସେ ସୌଭାଗ୍ୟରୁ ବଞ୍ଚିତ ଥିଲେ। ଫଳରେ ଏତଦଞ୍ଚଳର ଅଧିବାସୀବୃନ୍ଦ ବନ୍ୟପଶୁ ଅପେକ୍ଷା ବି ଅଧିକତର ହିଂସ୍ର ହୋଇ ଉଠିଥିଲେ । ମଦ୍ୟପାନ, ଜୀବହିଂସା, ଏପରିକି ନରହତ୍ୟା ପ୍ରଭୃତି ବିବିଧ ପାପରେ ସେମାନେ ସମଗ୍ର ଦେଶକୁ ଜର୍ଜରିତ କରି ତୋଳିଥିଲେ । ନରସିଂହପୁରର ଭୂୟାଁ ଉଦ୍ଦଣ୍ଡ ରାୟ ଯେ ସହସ୍ର ସାଧୁଗଣଙ୍କର ପ୍ରାଣସଂହାର କରି ସେମାନଙ୍କର ସମ୍ବଳ ୭୧୮ଟି କନ୍ଥା-କମ୍ବଳ ସଂଗ୍ରହ କରିଥିଲେ, ତାହା ଏହି ଘଟଣାରୁ ଜଣାଯାଏ । ଆଉ ମଧ୍ୟ ଏ ପ୍ରକାର ଘଟଣା ବିରଳ ନ ଥିଲା । ଏହାଦ୍ୱାରା ତଦାନୀନ୍ତନ ଦେଶର ଅତି ଶୋଚନୀୟ ନୈତିକ ଦୁର୍ଗତିର କଥା ସହଜରେ ହିଁ ଅନୁମିତି ହୁଏ ।

ଅଶେଷ ପ୍ରକାରେ ନିର୍ଯ୍ୟାତିତ ଓ ଲାଞ୍ଛିତ ସାଧୁଗଣଙ୍କର କରୁଣ କ୍ରନ୍ଦନରେ ଶେଷକୁ ଶ୍ରୀ ଭଗବାନଙ୍କର ଆସନ ଟଳିଲା; ତେଣୁ ଶ୍ରୀଧାମ ବୃନ୍ଦାବନରେ ଶ୍ରୀ ଭଗବାନଙ୍କର ପ୍ରତ୍ୟାଦେଶ ଦ୍ୱାରା ଶ୍ରୀଳ ଶ୍ରୀଜୀବ ଗୋସ୍ୱାମୀ ପ୍ରଭୁଙ୍କ ଦ୍ୱାରା ଶ୍ରୀ ଶ୍ୟାମାନନ୍ଦ ଦେବଙ୍କୁ ଶ୍ରୀ ରସିକାନନ୍ଦ ଦେବଙ୍କ ସାହାଯ୍ୟରେ ଉତ୍କଳରେ ଭକ୍ତିଧର୍ମ

ପ୍ରସ୍ଥରର ଅନୁଜ୍ଞା ପ୍ରଦାନ କରନ୍ତି । ଶ୍ରୀବୃନ୍ଦାବନବାସୀ ଅହୈତୁକ କୃପାପର ଗୌଡ଼ୀୟ ବୈଷ୍ଣବ ମହାଜନଗଣଙ୍କର ଓ ଶ୍ରୀମଦନ ଗୋପାଳଙ୍କର ଆଦେଶକ୍ରମେ ଶ୍ରୀଳ ପ୍ରଭୁ ଶ୍ୟାମାନନ୍ଦ ଓ ଶ୍ରୀଳ ରସିକାନନ୍ଦ ଦେବ ହେଲେ ଉତ୍କଳର ତ୍ରାଣକର୍ତ୍ତା ।

ଓଡ଼ିଶାରେ ତତ୍କାଳିକ ବର୍ବରୋଚିତ ଅତ୍ୟାଚାରରେ ଜନଜୀବନ ଦୁର୍ବିସହ ଆକାର ଧାରଣ କରିଥିଲା । ପରମ କାରୁଣିକ ଶ୍ରୀ ଗୌରସୁନ୍ଦରଙ୍କ କରୁଣାରୁ ମଲ୍ଲଭୂମ ଅନ୍ତର୍ଗତ ରୋହିଣୀ ଗ୍ରାମର ଶୌର୍ଯ୍ୟ ଓ ଐଶ୍ୱର୍ଯ୍ୟବର୍ଦ୍ଧନକାରୀ ପୁଣ୍ୟଶ୍ଳୋକ ଗଜଦମ୍ପତି ଶ୍ରୀ ଅଚ୍ୟୁତାନନ୍ଦ ପଟ୍ଟନାୟକ ଓ ଶ୍ରୀ ହଳଧର ନନ୍ଦିନୀ ଶ୍ରୀମତୀ ଭବାନୀଙ୍କର ଗର୍ଭାଶୟରେ କାର୍ତ୍ତିକ ମାସର ଦ୍ୱୀପାନ୍ୱିତା ରାତ୍ରିରେ ପ୍ରତିପଦ ତିଥିକୁ ପବିତ୍ର କରି ଶ୍ରୀ ରସିକଙ୍କର ଶୁଭ ଆବିର୍ଭାବ ଲୀଳା ନାନାବିଧ ଉତ୍ସବ ମାଧ୍ୟମରେ ରୋହିଣୀ ନଗରରେ ଶ୍ରୀଅଚ୍ୟୁତଙ୍କ ଗୃହାଙ୍ଗନରେ ଉଦଯାପନ ହେବାକୁ ଲାଗିଲା ଶ୍ରୀ ରସିକଙ୍କର ଜାତକର୍ମ । ନାମକରଣ, ଜାତପତ୍ରିକା ପ୍ରଭୃତି ବାଲ୍ୟସଂସ୍କାର ସୁସମାପନ ପରେ ବାଳକ କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲେ । ବାଲ୍ୟଲୀଳା ମାଧ୍ୟମରେ ଭବୀ ମହାଜୀବନର ସୂଚନା ଦେବାକୁ ଲାଗିଲେ କ୍ରନ୍ଦନ ଛଳରେ ଶ୍ରୀକୃଷ୍ଣଯଶୋଗାଥା ଶ୍ରବଣ ଓ ମନନ ଦ୍ୱାରା ।

ଶ୍ରୀ ରସିକଙ୍କ ବୟୋଜ୍ୟେଷ୍ଠଗଣଙ୍କ ପ୍ରତି ସହଜାତ ଆନୁଗତ୍ୟ ସମସ୍ତଙ୍କୁ ମୁଗ୍ଧ କରିଥିଲା । ଅନ୍ନପ୍ରାଶନାନୁଷ୍ଠାନରେ ରୁଚି ପରୀକ୍ଷାରେ ଶ୍ରୀମଦଭାଗବତ ଗ୍ରନ୍ଥ ଆଲିଙ୍ଗନ ଏକ ଅତ୍ୟାଶ୍ଚର୍ଯ୍ୟ ବ୍ୟାପାର ହୋଇ ଦେଖା ଦେଇଥିଲା । କ୍ରମେ ତାଙ୍କର ଜନ୍ମମଙ୍ଗଳ ଶ୍ରୀନାମ-ବ୍ରହ୍ମଙ୍କର ଶ୍ରବଣାନୁରାଗ ଓ ନାଗରିକଗଣଙ୍କ ଉପହୃତ ଦ୍ରବ୍ୟାଦି ଶ୍ରୀତୁଳସୀଦେବୀଙ୍କ ନିକଟରେ ନିବେଦନ ପୂର୍ବକ ବ୍ରାହ୍ମଣ-ବୈଷ୍ଣବଙ୍କୁ ପ୍ରସାଦ ବିତରଣ ଓ ବୈଷ୍ଣବ-ବ୍ରାହ୍ମଣଙ୍କୁ ସମ୍ମାନ ପ୍ରଦର୍ଶନ ଥିଲା ଗୋଟିଏ ବିସ୍ମୟକର ଲୀଳା । କର୍ଣ୍ଣବେଧ ସଂସ୍କାର ପ୍ରସଙ୍ଗରେ ଗୋଟିଏ ଅଭାବନୀୟ ଘଟଣାରେ ସମସ୍ତେ ହତବାକ ହୋଇଯାଆନ୍ତି ଯେ, ସାହନାଇ ଗାନରେ କୃଷ୍ଣଗଣ ଶ୍ରବଣେଚ୍ଛା ଓ ଅଷ୍ଟସାତ୍ତ୍ୱିକ ବିକାରର ବିକାଶ ଦର୍ଶନ କରି । ଦୟାଲ ଦାସୀ ଏହି ଅତିମର୍ତ୍ତ୍ୟ ଶିଶୁକୁ ଦେଖି ମୂର୍ଚ୍ଛିତା ହୋଇପଡ଼ନ୍ତି । ଭବୀ ମହିଳାଙ୍କର ଇଙ୍ଗିତ ପ୍ରଦର୍ଶନରେ ଆବାଳ ବୃଦ୍ଧବନିତା ମନ୍ତ୍ରମୁଗ୍ଧ ହୋଇଯାଇଥିଲେ । ଶିଶୁର କର୍ଣ୍ଣରେ ହରିନାମ ଶୁଣାଇଲେ, ଶ୍ରୀନାମ ପ୍ରତି ଐକାନ୍ତିକ ନିଷ୍ଠା ସାଧନନିଷ୍ଠ ସାଧକ ନ୍ୟାୟ ପ୍ରକାଶ ପାଇବାକୁ ଲାଗେ । ସମବୟସ୍କଗଣଙ୍କ ସହ ଶ୍ରୀକୃଷ୍ଣଲୀଳାର ଅନୁକରଣ ଓ ଚରିତ୍ର ମାଧୁର୍ଯ୍ୟାସ୍ୱାଦନ ଆତ୍ମୀୟ-ପରିଜନଙ୍କୁ କୃଷ୍ଣଲୀଳା ଆସ୍ୱାଦନ ପ୍ରତି ଆକୃଷ୍ଟ କରେ ।

ପଣ୍ଡିତ ମୀମାଂସାମଣ୍ଡନ ଭଟ୍ଟାଚାର୍ଯ୍ୟଙ୍କ ସମୀପରେ ଶ୍ରୀମଦ୍ ଭାଗବତ ବ୍ୟାଖ୍ୟା ଶ୍ରବଣ ସମୟରେ ଶ୍ରୀ ରସିକଙ୍କର ପ୍ରେମାଶ୍ରୁବର୍ଷଣ ଓ ମୂର୍ଚ୍ଛାଦି ବିକାର ପ୍ରକାଶ

ପାଇବାକୁ ଲଗେ । ବିଦ୍ୟାରମ୍ଭ ସଂସ୍କାର ପରେ ବାସୁଦେବ ଦେବଙ୍କ ନିକଟରେ ଅକ୍ଷରଜ୍ଞାନ ଲଭ, ମୀମାଂସାମଣ୍ଡନ ଭଟ୍ଟାଚାର୍ଯ୍ୟଙ୍କ ସମୀପରେ ବ୍ୟାକରଣ ପାଠ, କ୍ରମେ ବଳଭଦ୍ର ସେନ, ଅନୁକୂଳ ଚକ୍ରବର୍ତ୍ତୀ, କବିଚନ୍ଦ୍ର ଓ ଯଦୁନନ୍ଦନ ଚକ୍ରବର୍ତ୍ତୀ ପ୍ରଭୃତି ମହାମହୋପାଧ୍ୟାୟ ପଣ୍ଡିତଗଣଙ୍କ ନିକଟରେ କାବ୍ୟ-ନାଟକ ଅଳଙ୍କାରାଦି ଶାସ୍ତ୍ର ଅଧ୍ୟୟନରେ ବାଳକ ଶ୍ରୀରସିକ ଅସାଧାରଣ ବ୍ୟୁତ୍ପତ୍ତି ପ୍ରଦର୍ଶନ ମାଧ୍ୟମରେ ଅଧ୍ୟାପକମଣ୍ଡଳୀଙ୍କୁ ଅଭିଭୂତ କରିପକାଏ । ତା'ପରେ ଷଡ଼ଦର୍ଶନ-ଅଧ୍ୟୟନ ସମାପନାନ୍ତେ ଅଧ୍ୟାପକ ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ନିକଟରେ ଶ୍ରୀଧର ସ୍ୱାମୀସମ୍ମତ ଶ୍ରୀମଦ୍ ଭାଗବତ ବ୍ୟାଖ୍ୟା ଶୁଣି ସ୍ୱୟଂ ଶ୍ରୌତସିଦ୍ଧାନ୍ତମୂଳକ ବହୁବିଧ ବ୍ୟାଖ୍ୟା ପ୍ରଦର୍ଶନରେ ଅଧ୍ୟାପକମାନଙ୍କର ବିସ୍ମୟୋତ୍ପାଦନ କରନ୍ତି । ପରେ ଶ୍ରୀ ହରିଦାସ ଦୁବେଙ୍କ ନିକଟରେ ଭକ୍ତଶାସ୍ତ୍ର ଅଧ୍ୟୟନ କରନ୍ତି ।

ଶ୍ରୀକୃଷ୍ଣଙ୍କ ବିରହରେ କ୍ରନ୍ଦନ, ବନଭ୍ରମଣ ଶେଷରେ ଶ୍ରୀ ଦ୍ୱିବେଦୀଙ୍କ ସମୀପରେ ବେଦର ନିଗୂଢ଼ ତତ୍ତ୍ୱ ଶୁଣି ସାନ୍ତ୍ୱନା ଲଭକରି ନିରନ୍ତର କୃଷ୍ଣାବେଶରେ ବିଭୋର ହୋଇ ରହୁଥିଲେ । ଏହିପରି ଭାବେ କୈଶୋର ଅତିକ୍ରମ କରି ଯୌବନରେ ପଦାର୍ପଣ କରି ହିଜଲୀଗ୍ରାମ ଶ୍ରୀ ବଳଭଦ୍ର ଦାସଙ୍କ କନ୍ୟା ଇଚ୍ଛାଦେବୀଙ୍କ ସହିତ ଶୁଭ-ପରିଣୟ ସୂତ୍ରରେ ଆବଦ୍ଧ ହୁଅନ୍ତି । ବିବାହାନ୍ତେ ସଂସାର ଓ ବିଷୟ ସମ୍ପତ୍ତି ବିଷବତ୍ ଅନୁଭବ ହେଉଥିବାରୁ ଶ୍ରୀମଦ୍ ଭାଗବତ ଶ୍ରବଣରେ ଶ୍ରୀକୃଷ୍ଣ ବିରହରେ ବ୍ୟାକୁଳ ହୋଇ ପିତାଙ୍କ ନିକଟରେ ଏକମାତ୍ର କୃଷ୍ଣଭଜନର ସତ୍ୟତା ଜ୍ଞାପନ କରନ୍ତି ।

କୃଷ୍ଣାବେଶରେ ଆବିଷ୍ଟ ହୋଇ ଦେଶଭ୍ରମଣ କରୁ କରୁ ଘାଟଶିଳାସ୍ଥ ଶ୍ରୀ ଭାଗବତ-ପାଠକର ମାଧୁର୍ଯ୍ୟମଣ୍ଡିତ ବ୍ରଜଲୀଳାନୁଧ୍ୟାନରେ ଦିନାତପାତ କରନ୍ତି ଏବଂ ବୃନ୍ଦାବନ ଭ୍ରମରେ ବିଭିନ୍ନ ବନଭ୍ରମଣ, ବୈଷ୍ଣବସେବା ଓ ଇଷ୍ଟଚିନ୍ତାରେ ନିମଗ୍ନାବସ୍ଥାରେ ଶ୍ରୀଭଗବାନଙ୍କର ଦର୍ଶନ ଲଭ କରି ଭାବୀ ମନ୍ତ୍ରଦାତା ଓ ଭବବନ୍ଧନତ୍ରାତା ଶ୍ରୀଶ୍ୟାମାନନ୍ଦ ଦେବଙ୍କୁ ତଦୀୟ ଅଭୀଷ୍ଟଦେବ ବୋଲି ଆଦିଷ୍ଟ ହୁଅନ୍ତି । ଧ୍ୟାନଭଙ୍ଗ ପରେ ବିରହକ୍ଷିନ୍ନ ହୋଇ ସାତ୍ତ୍ୱିକ ବିକାରଗ୍ରସ୍ତ ହୁଅନ୍ତି ।

ଶ୍ରୀରସିକ, ଶ୍ରୀଶ୍ୟାମାନନ୍ଦ ପ୍ରଭୁଙ୍କ ସହିତ ମିଳିତ ହେବାପାଇଁ ପରମୋତ୍କଣ୍ଠାରେ କାଳଯାପନ କରିବାକୁ ଲାଗିଲେ । ଏଣେ ବ୍ରଜରାଜ ଶ୍ରୀଗୋବିନ୍ଦଙ୍କର ଶ୍ରୀଶ୍ୟାମାନନ୍ଦଙ୍କ ପ୍ରତି ସ୍ୱପ୍ନରେ ଆଦେଶ ହୁଏ ଯେ, ଉତ୍କଳକୁ ଯାଇ ଶ୍ରୀରସିକାନନ୍ଦଙ୍କୁ କୃଷ୍ଣମନ୍ତ୍ର ଦାନ ପୂର୍ବକ ଭକ୍ତିତତ୍ତ୍ୱର ଉପଦେଶ ପ୍ରଦାନ କରିବାକୁ । କିନ୍ତୁ ଶ୍ରୀଶ୍ୟାମାନନ୍ଦଙ୍କର ଶ୍ରୀବୃନ୍ଦାବନ ପରିତ୍ୟାଗ କରି ଅନ୍ୟ କେଉଁଠାକୁ ଯିବାର ଅନିଚ୍ଛା ଜାଣି ଶ୍ରୀଶ୍ୟାମାନନ୍ଦଙ୍କର ଭକ୍ତିଶାସ୍ତ୍ରର ଶିକ୍ଷାଗୁରୁ ଶ୍ରୀମଦ ଶ୍ରୀଜୀବ ଗୋସ୍ୱାମୀ ପ୍ରଭୁ

ଶ୍ରୀମଦନଗୋପାଙ୍କର ପୁନରାଦେଶ ପାଇ ଯେତେବେଳେ ଶ୍ରୀଶ୍ୟାମାନନ୍ଦଙ୍କୁ ଉତ୍କଳକୁ ଯିବାକୁ ଅନୁମତି ଦିଅନ୍ତି, ସେତେବେଳେ ଅଲଂଘ୍ୟ ଶ୍ରୀଗୁରୁ ଗୋବିନ୍ଦଙ୍କର ଆଦେଶରେ ଶ୍ରୀଶ୍ୟାମାନନ୍ଦଦେବ ଶ୍ରୀ ରସିକ ମୁରାରିଙ୍କର ଦର୍ଶନ ଲାଳସାରେ ଉତ୍କଳାଭିମୁଖେ ଯାତ୍ରାକଲେ ଏବଂ କହିବାକୁ ଲାଗିଲେ—

"ନିଶ୍ଚୟ ଯାଇବ ଆମି ଉତ୍କଳ ଭବନ ।
ଦେଖିବ ସେ ରସିକ ମୁରାରି ପ୍ରିୟଜନ ।।
ହେନଇ କୃଷ୍ଣେର କୃପା ଆଛୟେ ଯେ ଜନେ ।
ଅବଶ୍ୟ କରିବ ଦେଖା ସେ ପୁରୁଷ ସନେ ।।

(ବ. ମ. ୧୪ଶ. ଲ:)

ଏ ପ୍ରକାର ଉତ୍କଣ୍ଠା ନେଇ ଶ୍ରୀବ୍ରଜଭୂମି ଛାଡ଼ି ଆଗ୍ରାରେ ଆସି ଉପସ୍ଥିତ ହେଲେ । ନଗରରେ ପ୍ରହରରତ ମୋଗଲ ବାହିନୀର ସୈନ୍ୟମାନେ ତସ୍କର ସନ୍ଦେହରେ ସମ୍ରାଟଙ୍କୁ ସମ୍ବାଦ ଦିଅନ୍ତି । ସେତେବେଳେ ମୋଗଲ କଟୁଆଳର ଆଦେଶରେ ଶ୍ରୀଶ୍ୟାମାନନ୍ଦ ପ୍ରଭୁଙ୍କୁ କାରାରୁଦ୍ଧ କରାହୁଏ । ତତ୍‌ପରେ ମୋଗଲ କଟୁଆଳ ଶୟନ କରିବାକୁ ଯାଆନ୍ତି । ଅକସ୍ମାତ ଜଣେ ଦେବଦୂତ ଆସି ପଲଙ୍କ ସହ ତାଙ୍କୁ ମାଟିରେ ପକାଇ ଦେଇ ତାର ଛାତି ଉପରେ ବସି ତର୍ଜନ ଗର୍ଜନ କରି କଠୋର ଶାସ୍ତିପ୍ରଦାନ କରିବାକୁ ଉଦ୍ୟତ ହୁଅନ୍ତେ ଭୀତ-ସନ୍ତ୍ରସ୍ତ ହୋଇ କଟୁଆଳ କ୍ଷମାଭିକ୍ଷା ମାଗି ଅନୁତପ୍ତ ହୋଇ ବୈଷ୍ଣବସେବା କରନ୍ତି । ଶ୍ରୀଶ୍ୟାମାନନ୍ଦ ସେଠାରେ ମାସେ କାଳ ଅବସ୍ଥାନାନ୍ତେ ପ୍ରୟାଗ ଓ ବାରାଣସୀ ହୋଇ ରୋହିଣୀ ନଗରରେ ଆସି ଶ୍ରୀରସିକଙ୍କ ଦର୍ଶନ ନ ପାଇ ଘାଟଶିଳାରେ ଉପସ୍ଥିତ ହୁଅନ୍ତି ଓ ସେଠାରେ ଶ୍ରୀ ରସିକଙ୍କ ସହ ସାକ୍ଷାତକାର ଘଟେ । ସେଠାକାର ରାଜସଭରେ ଅଭିନିବିଷ୍ଟ ଚିତ୍ତରେ ଶ୍ରୀରସିକଙ୍କୁ ଶ୍ରୀମଦ ଭାଗବତ ଶ୍ରବଣ କରୁଥିବା ଦେଖି ବୁଝିଲେ ଯେ, ଏହିଁ ମୋର ସେହି ପ୍ରିୟଜନ । ତା ପରେ ନିର୍ଜନରେ ଉଭୟଙ୍କର ମିଳନ ଓ କୃଷ୍ଣକଥା ଆଳାପନରେ ଚାତୁର୍ମାସ୍ୟ ସମାପନାନ୍ତେ ଶ୍ରୀଶ୍ୟାମା-ନନ୍ଦଙ୍କ ସମୀପରେ ଭଜନତତ୍ତ୍ୱ ଓ ପ୍ରେମଭକ୍ତିର ଉପଦେଶ ଶ୍ରବଣ କରି ପରସ୍ପର ଆଲିଙ୍ଗନବଦ୍ଧ ହୁଅନ୍ତି ।

ତତ୍‌ପରେ ଶ୍ରୀଶ୍ୟାମାନନ୍ଦ ଶ୍ରୀରସିକଙ୍କ ଭବନକୁ ଆସି ଶ୍ରୀ ରସକନନ୍ଦିନୀ ଦେବକୀଙ୍କ ପ୍ରତି ନାମକୃପା ପ୍ରଦାନ କରି ଶ୍ରୀରସିକଙ୍କୁ କୃଷ୍ଣମନ୍ତ୍ର ଦୀକ୍ଷା ପ୍ରଦାନ କରନ୍ତି ଏବଂ ଶ୍ରୀରସିକଙ୍କ ସହଧର୍ମିଣୀ ଶ୍ରୀମତୀ ଇଚ୍ଛାଦେବୀଙ୍କୁ କୃପାକରି 'ଶ୍ୟାମ ଦାସୀ" ନାମ ପ୍ରଦାନ କରନ୍ତି । ତାପରେ ଶ୍ରୀଶ୍ୟାମାନନ୍ଦ ଶ୍ରୀକ୍ଷେତ୍ରାଭିମୁଖରେ ଯାତ୍ରା ସମୟରେ ଖଣ୍ଡକୁଲିୟାଠାରେ ଶ୍ରୀଦାମୋଦର ପଣ୍ଡିତଙ୍କର ଜ୍ଞାନବାଦ ନିରସନ

କରି ଭକ୍ତିବାଦର ଅସମୋର୍ଦ୍ଧ୍ୱତ୍ୱ ପ୍ରତିପାଦନାନ୍ତେ ତାଙ୍କୁ ସବଂଶ କୃଷ୍ଣମନ୍ତ୍ର ପ୍ରଦାନାନ୍ତେ ସମସ୍ତଙ୍କୁ ଶିଷ୍ୟତ୍ୱରେ ସ୍ୱୀକାର କରନ୍ତି ଏବଂ ଅବଶେଷରେ ସେ ନୀଳାଚଳ ଧାମରେ ଉପନୀତ ହୁଅନ୍ତି ।

ଇତ୍ୟବସରରେ ଶ୍ରୀରସିକଙ୍କ ସାଧୁସଙ୍ଗ, ନାମସଂକୀର୍ତ୍ତନ ଓ ବୈଷ୍ଣବସେବା ଫଳରେ ବ୍ରଜଧାମ ଦର୍ଶନର ସୌଭାଗ୍ୟ ଘଟେ । ସେ ଶ୍ରୀବୃନ୍ଦାବନକୁ ଯାଇ ମଥୁରା, ଗୋକୁଳ, ଯମୁନାପୁଳୀନ, ଦ୍ୱାଦଶ ବନ, ଦ୍ୱାଦଶ ଉପବନ ଏବଂ ପରିଶେଷରେ ଗିରିରାଜ ଗୋବର୍ଦ୍ଧନ ପରିକ୍ରମାନ୍ତେ ଶ୍ରୀ ଗୋପାଳ- ଦେବଙ୍କ ଦର୍ଶନ କରନ୍ତି । ମଥୁରାରେ ଗୁରୁ ଶ୍ରୀ ଶ୍ୟାମାନନ୍ଦଙ୍କ ସହିତ ପୁନର୍ମିଳନ ହୁଏ । ତାପରେ ବନପଥରେ ଉତ୍କଳକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ଦୁର୍ଜନଗଣଙ୍କର ବୈଷ୍ଣବ ନିନ୍ଦା ଶ୍ରବଣରେ ଉତ୍ୟକ୍ତ ହୋଇ ସୁବର୍ଣ୍ଣରେଖା କୂଳସ୍ଥ କାଶୀପୁରରେ କୁଟୀର ନିର୍ମାଣ କରି ବାସ କରିବାକୁ ଲାଗିଲେ । ଶିଷ୍ୟ ଶ୍ରୀରସିକଙ୍କ ଆକର୍ଷଣରେ ଶ୍ରୀ ଶ୍ୟାମାନନ୍ଦଙ୍କର ସେଠାକୁ ଆଗମନରେ ପରସ୍ପରଙ୍କର ଆନନ୍ଦାତିଶଯ୍ୟ ପ୍ରକାଶ ଘଟେ । ଶ୍ରୀ ରସିକଙ୍କ କୌଳିକ ଶ୍ରୀବିଗ୍ରହଙ୍କର ନାମାନ୍ତର ଘଟାଇ ଶ୍ରୀ ଗୋପୀ- ବଲ୍ଲଭ ରାୟ ନାମକରଣ କରନ୍ତି ଏବଂ କାଶୀପୁର ଗ୍ରାମର ନାମ ପରିବର୍ତ୍ତନ କରି ଶ୍ରୀଗୋପୀବଲ୍ଲଭପୁର ନାମ ରଖନ୍ତି ।

ହଠାତ୍ ଦିନେ ଗୁରୁ ଶ୍ରୀ ଶ୍ୟାମାନନ୍ଦ, ଶିଷ୍ୟ ଶ୍ରୀ ରସିକଙ୍କ ନିକଟରେ ଗୋଟିଏ ଭିକ୍ଷା ପ୍ରାର୍ଥନା କରନ୍ତି । ସେତେବେଳେ ଶ୍ରୀ ରସିକ ସବିନୟରେ କରଯୋଡ଼ କରି କହିଲେ. ପ୍ରଭୋ ! ଆପଣଙ୍କୁ ମୋର ଅଦେୟ କିଛି ନାହିଁ । ମୁଁ ମୋର ସର୍ବସ୍ୱ ଆପଣଙ୍କ ଶ୍ରୀଚରଣରେ ସମର୍ପଣ କରିଛି । ଶ୍ରୀ ରସିକଙ୍କ କଥା ଶୁଣି ଶ୍ରୀ ଶ୍ୟାମାନନ୍ଦ କହିଲେ—

ଏଇ ଭିକ୍ଷା—ସବ ଜୀବେ କର ପରିତ୍ରାଣ ।
ସବାକାରେ ଦେହ 'ହରେକୃଷ୍ଣ' ଷୋଳ ନାମ ।। (ରସିକ ମଙ୍ଗଳ)

ଗୁରୁଙ୍କ ଆଦେଶରେ ସମ୍ମତ ହୋଇ ପ୍ରଥମେ ଶିଷ୍ୟ କରନ୍ତି କାଳିନ୍ଦୀକୁ; ତା'ପରେ ବାକି ନଅ ଜଣଙ୍କୁ । କ୍ରମେ ଅସଂଖ୍ୟ ଜୀବ ଶିଷ୍ୟ ହେବାକୁ ଲାଗିଲେ ଶ୍ରୀ ରସିକଙ୍କ ସମୀପରେ । ଏହିଭଳି ଧାରେନ୍ଦାରେ ଭୀମ ଓ ଶ୍ରୀକର ଭ୍ରାତୃଦ୍ୱୟଙ୍କ ଉଦ୍ଧାର ଲାଗି ଶ୍ରୀ ରସମୟଙ୍କ ଗୃହରେ ଉପସ୍ଥିତ ହୁଅନ୍ତି ଏବଂ ତୁଳସୀ ଦାସଙ୍କର କୀର୍ତ୍ତନ ଶୁଣି ଶ୍ରୀ ରସିକଙ୍କର ପ୍ରେମବିକାର ଉଦ୍ରେକ ହୁଏ । କିନ୍ତୁ ଶ୍ରୀ ରସିକଙ୍କ ଆଚରଣରେ ଭୀମ ଓ ଶ୍ରୀକର ଅତ୍ୟନ୍ତ କ୍ଷୁବ୍ଧ ହୋଇ ପଣ୍ଡିତ ଆହ୍ୱାନ କରନ୍ତି । ଶାସ୍ତ୍ର ବିଚାରରେ ଶ୍ରୀ ରସିକ ବିଜୟୀ ହୁଅନ୍ତି । ତତ୍‌ପରେ ସେମାନେ ସବଂଶରେ ଶ୍ରୀ ରସିକଙ୍କ

ଶିଷତ୍ୱ ଗ୍ରହଣ କରନ୍ତି । ତାହା ହେଉଛି—ଶିଶୁଗଣଙ୍କ ସଙ୍ଗେ ଶ୍ରୀକୃଷ୍ଣଙ୍କର ବନବିହାର ଏବଂ ଧାରେନ୍ଦାରେ ଶ୍ରୀ ରାଧିକାଙ୍କର ଶ୍ରୀବିଗ୍ରହ ପ୍ରକାଶ କରି ଶ୍ରୀ ଗୋପୀବଲ୍ଲଭ ରାୟଙ୍କ ସହିତ ପରିଣୟୋତ୍ସବ ସମାପନ କରନ୍ତି । ତା'ପରେ ଯେତେବେଳେ ଧାରେନ୍ଦା ତ୍ୟାଗ କରି ଚାଲିଆସନ୍ତି, ସେତେବେଳେ ଧାରେନ୍ଦାବାସୀ ଶ୍ରୀ ରସିକଙ୍କ ବିରହରେ ବିଧୁର ହୋଇ ତାହାଙ୍କ ନିକଟରେ ବ୍ୟଥିତ ଅନ୍ତରର ବେଦନା ଜ୍ଞାପନ କରି ପତ୍ର ପ୍ରେରଣ କରନ୍ତି । ଏହିରୂପେ ତାଙ୍କ ଜୀବନାଦର୍ଶ ନବ ନବ ଭାବ ପ୍ରକାଶ ପାଉଥାଏ । ସେ ପ୍ରଧାନ ଚତୁଃଷଷ୍ଠ୍ୟଙ୍ଗ ଭକ୍ତିଯାଜନର ଆଦର୍ଶ ପ୍ରଦର୍ଶନ କରି ଅଲୌକିକ ଗୁଣ ପ୍ରକାଶ; ବଡ଼ ବଳରାମପୁରରୁ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କ ଆହ୍ୱାନ ପତ୍ର ପ୍ରାପ୍ତମାତ୍ରେ ପ୍ରଥମ ପ୍ରସାଦଗ୍ରାସ ପରିତ୍ୟାଗ କରି ପଥଶ୍ରମ ଓ ହିଂସ୍ରସଙ୍କୁଳ ବନ୍ୟପ୍ରାଣୀଙ୍କର ଭୀତି ଉପେକ୍ଷା ପୂର୍ବକ ଶ୍ରୀଗୁରୁଙ୍କ ଶ୍ରୀଚରଣ-ସରୋଜ ସନ୍ଦର୍ଶନରେ ଯାତ୍ରାରମ୍ଭ କରିଦେଲେ ବଡ଼କଳା ଗ୍ରାମ ଉଦ୍ଦେଶ୍ୟରେ । ସେଠାରେ ଶ୍ରୀ ଗୁରୁଙ୍କ ଆଦେଶରେ ପଞ୍ଚମ ଦୋଳୋତ୍ସବର ଉପକରଣ ସଂଗ୍ରହରେ ଆତ୍ମନିୟୋଗ କରି ମଧ୍ୟ କର୍ତ୍ତବ୍ୟ ଶେଷ ହେଲା ନାହିଁ । ବୈଷ୍ଣବ ସେବା ଲାଗି ଘୃତ ପ୍ରୟୋଜନ ହେବାରୁ ଏବଂ କେଉଁଠାରେ ଘୃତ ନ ପାଇ ଅବଶେଷରେ ନିଶାର୍ଦ୍ଧରେ ମୋଗଲ ଗୃହରେ ପ୍ରବେଶ ପୂର୍ବକ ବହୁ ଲାଞ୍ଛନା ସହ୍ୟ କରି ଘୃତ ଆଣି ବୈଷ୍ଣବ ସେବାର ବ୍ୟବସ୍ଥା କରନ୍ତି । ଉକ୍ତ ମୋଗଲ ପରେ ନିଜ କୃତ ଅପରାଧ ଲାଗି କ୍ଷମା ପ୍ରାର୍ଥନା ପୂର୍ବକ ଶ୍ରୀ ରସିକଙ୍କ ଚରଣାଶ୍ରିତ ହୁଅନ୍ତି ।

ସେଠାରେ ବିବିଧ ଦ୍ରବ୍ୟ ସଂଗ୍ରହ ସହକାରେ ମହାମହୋତ୍ସବ ସୁସମ୍ପନ୍ନ କରିବା ସଙ୍ଗେ ସଙ୍ଗେ ଶ୍ରୀ ଗୁରୁଦେବଙ୍କର ଆଦେଶ ଓ ବାଣୀ ପ୍ରଚାର କରନ୍ତି । ବଡ଼କୋଲାରେ ଶ୍ରୀ ଶ୍ୟାମାନନ୍ଦଙ୍କ ସମୀପରେ ସମୁପସ୍ଥିତ ହୋଇ ତାହାଙ୍କ ଆଦେଶରେ ପୂଜାମଣ୍ଡପାଦି ନିର୍ମାଣ କରି ଶ୍ରୀ ଶ୍ୟାମ ରାୟ ଶ୍ରୀ ବିଗ୍ରହଙ୍କର ପୂଜା ପ୍ରତିଷ୍ଠା ପୂର୍ବକ ବୈଶାଖୀ ପୂର୍ଣ୍ଣିମା ତିଥିରେ ବହୁ ସଂପ୍ରଦାୟ ସମନ୍ୱିତ ସଂକୀର୍ତ୍ତନ ସମ୍ପାଦନ କରନ୍ତି ଏବଂ ପଞ୍ଚଦୋଳରେ ସମାଗତ ଭକ୍ତଗଣ, ସଙ୍ଗୀତ ବିଶାରଦ ଓ ସର୍ବଶାସ୍ତ୍ରରେ ସୁପଣ୍ଡିତ ବିଶ୍ୱନାଥ ଭୂୟାଁଙ୍କୁ ଶିଷ୍ୟତ୍ୱରେ ଅଙ୍ଗୀକାର କରି ଶ୍ୟାମ ମନୋହର ଦାସ ନାମ ପ୍ରଦାନ କରନ୍ତି । ମହୋତ୍ସବାନ୍ତେ ସସମ୍ମାନରେ ବୈଷ୍ଣବ ବିଦାୟ କରନ୍ତି ।

ତତ୍ପରେ ହରିବୋଲା ଯବନର ଅନୁରୋଧରେ ଏବଂ ତାଙ୍କ ଅର୍ଥାନୁକୂଲ୍ୟରେ ମେଦିନୀପୁରର ଆଲମଗଞ୍ଜରେ ଦିବସତ୍ରୟ ବ୍ୟାପୀ ଜଗତ୍‌ପାବନ ଶ୍ରୀ ହରିନାମ ସଂକୀର୍ତ୍ତନ-ମହାମହୋତ୍ସବ ଉଦ୍‌ଯାପନାନ୍ତେ ଭୀମ ଓ ଶ୍ରୀକରର ଅନୁରୋଧାତିଶଯ୍ୟରେ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଜଗନ୍ନାଥ ଦୁହିତା ଶ୍ୟାମପ୍ରିୟାଙ୍କ ପାଣିଗ୍ରହଣ କରନ୍ତି । ତା'ପରେ ଶ୍ରୀ ରସିକଦେବ ସ୍ୱଭବନକୁ ପ୍ରତ୍ୟାବର୍ତ୍ତନ କରି ଦେଖନ୍ତି ଯେ, ଶ୍ୟାମଦାସୀ

କୃଷ୍ଣସେବାରେ ଅବହେଳା ଓ ପୁତ୍ରପ୍ରୀତ୍ୟାର୍ଥେ ଆତ୍ମନିୟୋଗରେ ଅତୀବ କ୍ଷୁବ୍‌ଧ ହୋଇ ପୁତ୍ର ବିୟୋଗର ଅଭିଶାପ ଦିଅନ୍ତି । ସହସା ଶ୍ରୀ ହୃଦୟାନନ୍ଦ ପ୍ରଭୁ ନାନା ସ୍ଥାନ ଭ୍ରମଣ କରୁ କରୁ ଶ୍ରୀ ଧାରେନ୍ଦାରେ ପଦାର୍ପଣ କରି ଉତ୍କଳବାସୀଙ୍କ ପ୍ରତି ଅକୃପଣ କରୁଣା ଓ ସେମାନଙ୍କ ସମୁଦ୍ଧାର ପାଇଁ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ, ଶ୍ରୀ ରସିକାନନ୍ଦ ପ୍ରଭୁ ଓ ଶ୍ରୀ ଦାମୋଦର ପ୍ରଭୁ— ଏହି ବ୍ୟକ୍ତିତ୍ରୟଙ୍କୁ ଓଡ଼ିଶାରେ ଧର୍ମପ୍ରଚାର ଓ ଜୀବ ଉଦ୍ଧାର କରିବାକୁ ଆଦେଶ ପ୍ରଦାନ କରି ସ୍ୱଦେଶାଭିମୁଖେ ପ୍ରତ୍ୟାବର୍ତ୍ତନ କରନ୍ତି ।

ଉତ୍କଳର ବିଭିନ୍ନ ସ୍ଥାନରେ ଶ୍ରୀ ଶ୍ୟାମାନନ୍ଦ ଓ ଶ୍ରୀ ରସିକାନନ୍ଦ ଉତ୍କଳ-ବାସୀଙ୍କର ସୌଭାଗ୍ୟାକାଶରେ ସମୁଦିତ ହୋଇ ଶ୍ରୀଭଗବନ୍ନାମପ୍ରେମ ପ୍ରଚାର ମାଧ୍ୟମରେ ଶ୍ରୀକୃଷ୍ଣ ବହିର୍ମୁଖ ଜୀବଗଣଙ୍କୁ ଶ୍ରୀକୃଷ୍ଣୋନ୍ମୁଖ କରନ୍ତି ଏବଂ ଶ୍ରୀରସିକାନନ୍ଦ ରଜା ବୈଦ୍ୟନାଥ ଭଞ୍ଜଙ୍କ ସଭାରେ ଉପସ୍ଥିତ ହୋଇ ଓ ଐଶ୍ୱର୍ଯ୍ୟ ପ୍ରକାଶ କରି ରଜା ବୈଦ୍ୟନାଥ ଭଞ୍ଜ ଓ ତାଙ୍କର ଦୁଇଭ୍ରାତାଙ୍କୁ ଶିଷ୍ୟତ୍ୱରେ ଅଙ୍ଗୀକାର କରନ୍ତି ଏବଂ ଶ୍ରୀକୃଷ୍ଣଙ୍କ ଠାରେ ଅନନ୍ୟ ଭକ୍ତିର ଉପଦେଶ ଦେଇ ପଣ୍ଡିତଗଣଙ୍କ ସହିତ ଶାସ୍ତ୍ରବିଚାରରେ ଶ୍ରୀକୃଷ୍ଣ ଭକ୍ତିର ସର୍ବଶ୍ରେଷ୍ଠତ୍ୱ ସ୍ଥାପନ କରି ଗର୍ଭାଶୟରେ ଜୀବର ଯେଉଁ ଭୟଙ୍କର କ୍ଳେଶ, ତାର ଭୀତିପ୍ରଦ ବର୍ଣ୍ଣନ ଦେଇ ଜୀବର ଗତି ଓ କୃଷ୍ଣଭଜନର ଏକମାତ୍ର ଅଭିଧେୟତ୍ୱ ସ୍ଥାପନ କରନ୍ତି । ତାହାଙ୍କ ମୁଖରେ ସାଧୁସଙ୍ଗର ମହିମା, ଜାତି-ବର୍ଣ୍ଣ ନିର୍ବିଶେଷରେ କୃଷ୍ଣଭଜନର ଅଧିକାର ଓ ପ୍ରାଣୀହତ୍ୟାଦିଜନିତ ମହାପାପର ବ୍ୟାଖ୍ୟା ଶ୍ରବଣ କରି ସଭାସ୍ଥ ପଣ୍ଡିତଗଣ ଓ ସମବେତ ଶ୍ରୋତୃବର୍ଗ ତାହାଙ୍କୁ ବ୍ୟାସ, ଶୁକ ବା ଶ୍ରୀ ନାରାୟଣ ସମଜ୍ଞାନ କରନ୍ତି । ତା'ପରେ ସେ ରଜଭ୍ରାତୃତ୍ରୟଙ୍କୁ କୃଷ୍ଣମନ୍ତ୍ରରେ ଦୀକ୍ଷା ଦେଇ ଶ୍ରୀ ବୃନ୍ଦାବନ ଧ୍ୟାନ ଭଜନର ଉପଦେଶ ଦିଅନ୍ତି ।

ସେହିଦିନଠାରୁ ଭଞ୍ଜଭୂମିରୁ ଜୀବହିଂସାର ନିର୍ବାସ ହେଲା । କିନ୍ତୁ ଶ୍ରୀମଦ୍‌ଭାଗବତ ଶ୍ରବଣରେ ଅତ୍ୟନ୍ତ ଅମନୋଯୋଗିତା ଫଳରେ ଶ୍ରୀରସିକଙ୍କର ଶିଷ୍ୟ ରାମକୃଷ୍ଣ ଭୁବନମଙ୍ଗଳର ହାତରେ ଚପୋଟାଘାତ ପାଇ ରଜା ମୂର୍ଚ୍ଛିତ ହୋଇପଡ଼ନ୍ତି; କିଛିକ୍ଷଣ ପରେ ଚୈତନ୍ୟଲାଭ କରି ରାମକୃଷ୍ଣଙ୍କ ନିକଟରେ କ୍ଷମାପ୍ରାର୍ଥନା କରନ୍ତି । ରଜା ସ୍ଥିର କଲେ ଯେ, ଶ୍ରୀ ରସିକାନନ୍ଦଙ୍କର ଚରଣାଶ୍ରୟ ଭିନ୍ନ ମୋର ଅନ୍ୟ ଗତି ନାହିଁ । ଏହି ଘଟଣାନ୍ତେ ଗୋବିନ୍ଦପୁରରେ ଶ୍ରୀ ରସିକାନନ୍ଦ ପ୍ରଭୁଙ୍କର ଦର୍ଶନ ପାଆନ୍ତି । ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ନୃସିଂହପୁରର ବୈଷ୍ଣବବିଦ୍ୱେଷୀ ରଜା ଉଦଣ୍ଡରାୟଙ୍କୁ ଉଦ୍ଧାର କରନ୍ତି । ଶ୍ରୀ ଶ୍ରୀ ଶ୍ୟାମ ରାୟ ବିଗ୍ରହ ସହ ଶ୍ରୀ ଶ୍ୟାମାନନ୍ଦ ଦେବ କେଶିୟାଡ଼ିରେ ଉପସ୍ଥିତ ହୋଇ ଠାକୁରାଣୀ ମୂର୍ତ୍ତି ପ୍ରକାଶ କରନ୍ତି ଏବଂ ଶ୍ରୀ ଶ୍ୟାମ ରାୟ ଶ୍ରୀ ବିଗ୍ରହଙ୍କ ସହ ବିବାହ ଦେଇ ଶ୍ରୀମତୀ ଠାକୁରାଣୀ ସହ ଶ୍ରୀ ଶ୍ୟାମ ରାୟଙ୍କୁ ସଙ୍ଗରେ ନେଇ ଧାରନ୍ଦାକୁ ଗମନ କରନ୍ତି ଓ ସେଠାକୁ ଯାଇ ବୈଶାଖୀ ପୂର୍ଣ୍ଣିମାରେ ଶ୍ରୀ ଗୋପୀବଲ୍ଲଭ-

ପୁଟରେ ମହାରାସୋତ୍ସବର ପ୍ରସ୍ତାବ କରନ୍ତି । ଏହା ଶୁଣି ଶ୍ରୀ ରସିକାନନ୍ଦ ଦେବ ସେହି ମହାରାସୋତ୍ସବର ପ୍ରୟୋଜନୀୟ ଦ୍ରବ୍ୟ ସଂଗ୍ରହରେ ଏବଂ ମଣ୍ଡପାଦି ନିର୍ମାଣ କାର୍ଯ୍ୟରେ ତତ୍ପର ହୁଅନ୍ତି ।

ସେହି ଉତ୍ସବରେ ଉପସ୍ଥିତି ଲାଗି ଶ୍ରୀ ଶ୍ୟାମାନନ୍ଦ ଦେବ, ଗୁରୁ ଶ୍ରୀ ହୃଦୟାନନ୍ଦ ଓ ମହାଜନଗଣଙ୍କୁ ଆନୟନର ସମସ୍ତ ବ୍ୟବସ୍ଥା କରନ୍ତି । ସେମାନେ ପଦାର୍ପଣାନ୍ତେ ସାୟଂକାଳରେ ଅଧିବାସର ଶୁଭାରମ୍ଭ ହୁଏ ; ପରଦିବସ ପ୍ରଭାତରୁ ଶ୍ରୀ ମହାନାମଯଜ୍ଞ ଅନୁଷ୍ଠାନ ସଙ୍ଗେ ସଙ୍ଗେ ବିଚିତ୍ର ସାମଗ୍ରୀ ସହଯୋଗରେ ନୈବେଦ୍ୟ ନିବେଦନ କରାହୁଏ ଶ୍ରୀ ବିଗ୍ରହଙ୍କ ପୁରୋଭାଗରେ । ଶ୍ରୀ ବିଗ୍ରହଙ୍କ ନିବେଦିତାବଶେଷ ପ୍ରସାଦାନ୍ନ ଜାତିବର୍ଣ୍ଣନିର୍ବିଶେଷରେ ଆବାଳ-ବୃଦ୍ଧ-ବନିତାଗଣଙ୍କୁ ବିତରଣ କରନ୍ତି । ତତ୍ପରେ ସେହି ରାସୋତ୍ସବକୁ ସର୍ବସାଧାରଣଙ୍କ ହୃଦୟଗ୍ରାହୀ ଓ ବାସ୍ତବଧର୍ମୀ କରିବାଲାଗି ଅଷ୍ଟସଖୀ ଓ ଶ୍ରୀ ରାଧାକୃଷ୍ଣ ସାଜରେ ଶିଶୁଗଣଙ୍କୁ ସୁସଜ୍ଜିତ କରି ଶ୍ରୀ ରାସଲୀଳାର ଅଭିନୟ ଶ୍ରୀ ଗୋପୀବଲ୍ଲଭପୁରରେ କରନ୍ତି । ଶିଶୁଗଣ କର୍ତ୍ତୃକ ମଞ୍ଚସ୍ଥ ରାସଲୀଳାଭିନୟ ଓ ତଦଙ୍ଗୀଭୂତ ନୃତ୍ୟଗୀତାଦିର ଅନୁକରଣନୈପୁଣ୍ୟ ଦର୍ଶନ ସମୟରେ ଶ୍ରୀ ରସିକାନନ୍ଦ ଦେବଙ୍କୁ ସେହି ରାସସ୍ଥଳୀରେ ହିଁ ଗୋଖୁରସର୍ପ ଦଂଶନ କରେ ଶ୍ରୀଚରଣରେ ; କିନ୍ତୁ ଶ୍ରୀକୃଷ୍ଣସୁଖୋଲ୍ଲାସରେ ତନ୍ମୟହୋଇ ଚିନ୍ମୟଭବରାଜ୍ୟରେ ପ୍ରବିଷ୍ଟଥିବା ହେତୁ ପ୍ରାକୃତ ଦେହ ବ୍ୟାପାରରେ ସେ ଅନବହିତ ଥିଲେ । ସେହି ଭାବବିଭୋର ଅବସ୍ଥା ମଧ୍ୟରେ ହିଁ ରାତ୍ରିଯାପନ କରନ୍ତି । ପ୍ରଭାତରେ ସମସ୍ତେ ଦେଖିଲେ ଯେ ଶ୍ରୀ ରସିକଙ୍କ ଶ୍ରୀଚରଣର କ୍ଷତସ୍ଥାନରେ ସର୍ପଦନ୍ତଦ୍ୱୟ ବିଦ୍ଧହୋଇ ରହିଛି । ତତ୍କ୍ଷଣାତ୍ ଦନ୍ତଦ୍ୱୟ ଉତ୍ପାଟିତ କରାହୁଏ ଏବଂ ଚିକିତ୍ସା ବ୍ୟତୀତ ନିର୍ବିଷତା ପ୍ରମାଣିତ ହୁଏ ।

ମହାରାସ ଅଭିନୟ ସମାପନର ପରଦିନ ପୂର୍ବାନୁଷ୍ଠିତ ରାସାଭିନୟର ପୁନରନୁଷ୍ଠାନର ଅନୁରୋଧ ଆସିବାକୁ ଲାଗେ ସମବେତ ଭକ୍ତମଣ୍ଡଳୀ ଓ ଦର୍ଶକ ସାଧାରଣଙ୍କ ପକ୍ଷରୁ । କିନ୍ତୁ ଝଡ଼-ବୃଷ୍ଟି ପ୍ରଭୃତି ପ୍ରାକୃତିକ ଦୁର୍ଯୋଗବଶତଃ ଏବଂ ଶ୍ରୀ ଶ୍ୟାମରାୟଙ୍କ ଅନଭିପ୍ରାୟ ବୁଝିପାରି ଉକ୍ତ ଅନୁଷ୍ଠାନ ବର୍ଜ୍ଜନକରି ଦଧିକର୍ଦ୍ଦମୋତ୍ସବ ଓ ବୈଷ୍ଣବଗଣଙ୍କର ଜଳବିହାରୋତ୍ସବ ମହାସମାରୋହରେ ସୁସମ୍ପନ୍ନ ହୁଏ । ତା'ପରେ ବୈଷ୍ଣବଗଣଙ୍କର ମହାପ୍ରସାଦ ସେବନାନ୍ତେ ଯଥାଯୋଗ୍ୟ ସମ୍ମାନ ସହିତ ମହାନ୍ତ ବିଦାୟ କରାହୁଏ । ଶ୍ରୀ ରସିକଙ୍କର ଆତ୍ୟନ୍ତିକ ଗୁରୁଭକ୍ତି ପ୍ରଦର୍ଶନରେ ସମୁପସ୍ଥିତ ସାଧୁ-ସଜ୍ଜନଗଣ ବିସ୍ମିତ ହୁଅନ୍ତି । ଶ୍ରୀ ଶ୍ୟାମାନନ୍ଦଙ୍କ ଇଙ୍ଗିତରେ ସୁବା ଅହମ୍ମଦ ବେଗ୍ଙ୍କର ଉତ୍ପୀଡ଼ନ ଦମନ ପାଇଁ ବାଣପୁରକୁ ଶ୍ରୀରସିକଙ୍କୁ ପ୍ରେରଣ କରନ୍ତି ।

ଶ୍ରୀ ଶ୍ୟାମାନନ୍ଦ ଦେବ ଯେପରି ଶ୍ରୀରସିକଙ୍କ ନିକଟରେ ଶିଷ୍ୟ କରିବାପାଇଁ ଅନୁମତି ଭିକ୍ଷା କରିଥିଲେ, ସେହିପରି ଶ୍ରୀ ରାଧିକମୁରାରି ଜୀବେଶ୍ୱର ପାଇଁ ରାମକୃଷ୍ଣ

ଓ ଦୀନ ଶ୍ୟାମଦାସଙ୍କ ନିକଟରେ ଶିଷ୍ୟ କରିବାର ଅନୁମତି ଗ୍ରହିଁ ଉତ୍କଳର ଜୀବ-ତାରଣ ଲାଗି ଆଦେଶ ପ୍ରଦାନ କଲେ । ବାଣପୁରର ବହୁ ହିନ୍ଦୁ-ମୁସଲମାନ ଓ ଯବନଗଣଙ୍କୁ ନିର୍ବିଘ୍ନରେ ଶିଷ୍ୟତ୍ୱରେ ଅଙ୍ଗୀକାର କରନ୍ତି । ତତ୍‌ଶ୍ରବଣରେ ସୁବା ଅହମ୍ମଦ ବେଗ୍ ଶ୍ରୀରସିକଙ୍କୁ ପରୀକ୍ଷା କରିବାର ବାସନାରେ ତାଙ୍କୁ ତାଙ୍କ ନିକଟକୁ ଆସିବାକୁ ଆହ୍ୱାନ କରଥିଲେ ସମସ୍ତଙ୍କର ବାଧା ଅଗ୍ରାହ୍ୟ କରି ସେ ସୁବାଙ୍କ ସମୀପରେ ଉପସ୍ଥିତ ହୁଅନ୍ତି । ଏତଦ ଅଞ୍ଚଳର ଉପଦ୍ରବକାରୀ ମତ୍ତବାରଣଙ୍କୁ ଯଦି ଶାନ୍ତ ଓ ପ୍ରତିହିଂସାରୁ ଶ୍ରୀରସିକ ବିରତ କରିପାରନ୍ତି, ତେବେ ହିଁ ତାଙ୍କର କ୍ଷମତା ବୁଝାଯିବ ।

ଶ୍ରୀରସିକ ସୁବା ନିକଟକୁ ଯିବା ସମୟରେ ରାସ୍ତାରେ ସେହି ପ୍ରମତ୍ତମାତଙ୍ଗ ସହିତ ସାକ୍ଷାତକାର ସଂଘଟିତ ହେବା ମାତ୍ରେ ହିଁ ସଲିଳସିକ୍ତ ଅନଳବତ ଶାନ୍ତ, ସଂଯତ ଓ ବିନୀତଭାବ ଧାରଣ ପୂର୍ବକ ଶ୍ରୀ ରସିକଙ୍କ ସମ୍ମୁଖରେ ସେ ଥକ୍‌କା ହୋଇ ଛିଡ଼ା ହେଲେ । ସେତେବେଳେ ଶ୍ରୀ ରସିକ ସେହି ମତ୍ତ ମାତଙ୍ଗର କର୍ଣ୍ଣରେ ଶ୍ରୀହରିନାମ ମହାମନ୍ତ୍ର ଶୁଣାଇ ଶ୍ରୀକୃଷ୍ଣଭଜନର ମହୋପଦେଶ ପ୍ରଦାନ କରନ୍ତି ଏବଂ ହସ୍ତୀର ନାମ ଶ୍ରୀଗୋପାଳ ଦାସ ରଖିଥିଲେ । ତତ୍‌କ୍ଷଣାତ ହସ୍ତୀ ସଶ୍ରଦ୍ଧ ପ୍ରଣାମ କରି କୃଷ୍ଣପ୍ରେମ ଲାଭ କରେ । ଏହି ଅତ୍ୟାଶ୍ଚର୍ଯ୍ୟ ଓ ଅଭୂତପୂର୍ବ ଶ୍ରୀରସିକଙ୍କର ଅତିମର୍ତ୍ତ୍ୟ ଜୀବୋଦ୍ଧାରଣ ଲୀଳା ସନ୍ଦର୍ଶନ କରି ସ୍ୱକୃତ ଅପରାଧ ଲାଗି କ୍ଷମାଭିକ୍ଷା ପ୍ରାର୍ଥନା କଲେ ସୁବା ଅହମ୍ମଦ ବେଗ୍ । ସେତେବେଳେ ଶ୍ରୀରସିକ ବିନୀତ ଓ ବୀନତ ସୁବାକୁ ସଦୁପଦେଶ ଦାନରେ କୃତାର୍ଥ କଲେ । ଶ୍ରୀଜଗନ୍ନାଥଙ୍କ ଅଧିକାରୀ ଗଜପତି ନୃସିଂହଦେବଙ୍କ ସମ୍ମୁଖରେ ଶ୍ରୀରସିକଙ୍କର ବଂଶୀବାଦନ ଯେପରି ଶ୍ରୀବୃନ୍ଦାବନବିହାରୀ ସର୍ବମନୋହର ବେଣୁ-ନିନାଦର ସମତୁଲ୍ୟ ହୋଇଥିଲା । ତା'ପରେ ସମସ୍ତଙ୍କୁ କୃଷ୍ଣକଥା ଉପଦେଶ, ସାଧୁମହିମା କୀର୍ତ୍ତନ ଏବଂ ରାଜାଙ୍କ ନିକଟରେ ଜୀବହିଂସା ନିବାରଣ ପ୍ରାର୍ଥନା ଜଣାଇ ଅପରାପର ରାଜଗଣଙ୍କୁ ଶିଷ୍ୟତ୍ୱରେ ଅଙ୍ଗୀକାର କରନ୍ତି ଶ୍ରୀରସିକମୁରାରି ।

ଗୋପାଳ ଦାସ ହସ୍ତୀ ଶ୍ରୀରସିକଙ୍କ ନିକଟରୁ କୃଷ୍ଣକଥା ଶ୍ରବଣ କରେ । ତାପରେ ହସ୍ତୀର ମନୁଷ୍ୟବତ ସାଧୁ ବ୍ୟବହାର ଯେଉଁମାନେ ପ୍ରତ୍ୟକ୍ଷ କରିଛନ୍ତି ସେମାନେ ବିସ୍ମୟ ବିସ୍ଫାରିତ ନେତ୍ରରେ ସ୍ତମ୍ଭିତ ହୋଇ କହିଛନ୍ତି—ଏ ପ୍ରକାର ଘଟଣା ପୃଥିବୀରେ ବିରଳ । ଥରେ ଯେତେବେଳେ ଶ୍ରୀରସିକ ଅରଣ୍ୟ ପଥରେ ହଜିଯାଇ ଏକ ତରୁତଳେ ଉପବାସରେ ବୈଷ୍ଣବଗଣଙ୍କ ସହ ରାତ୍ରି ଯାପନ କରୁଥିଲେ ସହସା ସେହି ଭକ୍ତଶ୍ରେଷ୍ଠ ହସ୍ତୀ ସେଠାରେ ଉପସ୍ଥିତ ହୋଇ ସମସ୍ତ ବୃତାନ୍ତ ଶୁଣି ତତ୍‌କ୍ଷଣାତ୍ ସାଧୁ ଗୁରୁଙ୍କ ସେବା ଲାଗି ସେବାସାମଗ୍ରୀ ସଂଗ୍ରହ ଉଦ୍ଦେଶ୍ୟରେ ବହିର୍ଗତ ହେଲେ । ଗୋଟିଏ ଗୃହସ୍ଥ ଘରକୁ ଯାଇ ତଣ୍ଡୁଳ ଭିକ୍ଷା କରି ଆଣି

ଇଷ୍ଟସେବାର ବ୍ୟବସ୍ଥା କଲେ । ତତ୍‌ପରେ ଶ୍ରୀରସିକଙ୍କର ପଦତଳେ ପ୍ରଣାମ କରି ଦଣ୍ଡାୟମାନ ହୋଇ ରହିଲା । ଶ୍ରୀରସିକ ସେବା ସାମଗ୍ରୀ ଦେଖି ପାଚକ ବ୍ରାହ୍ମଣକୁ ରୋଷେଇ କରିବାକୁ କହିଲେ । ସେହି ହସ୍ତୀ ସାଧୁ ଗୁରୁ ବୈଷ୍ଣବ ସେବା ସନ୍ଦର୍ଶନ କରିବାକୁ ଲାଗିଲା । ଅବଶେଷରେ ଇଷ୍ଟଗଣଙ୍କ ପ୍ରତି ଭୂଲୁଣ୍ଠିତ ହୋଇ ଦଣ୍ଡବତ ପ୍ରଣାମ କଲା ଏବଂ ସେହି ଭାଗ୍ୟବାନ ଗଜରାଜ ଶ୍ରୀଗୁରୁଚରଣ ତ୍ୟାଗକରି ଅନ୍ୟତ୍ର ଯିବାକୁ ଅନିଚ୍ଛୁକ ଦେଖି ଶ୍ରୀରସିକ ତା ମସ୍ତକରେ ହସ୍ତ ଅର୍ପଣ କରି ପରମଭକ୍ତକୁ ଆଶୀର୍ବାଦ ପୂର୍ବକ କହିଲେ–"ନିରନ୍ତର ସାଧୁସେବା ତୀର୍ଥ ପର୍ଯ୍ୟଟନ ଓ କୃଷ୍ଣନାମ ଶ୍ରବଣରେ କାଳାତିପାତ କର । ଏହି କଥା କହିସାରି ଶ୍ରୀରସିକ ଅନ୍ୟତ୍ର ଗମନ କଲେ । ପଥରେ ବିଶ୍ରାମ ଓ ରାତ୍ରିଯାପନ କାଳରେ ଶ୍ରୀ ଜଗନ୍ନାଥ ଦେବଙ୍କଠାରୁ ସ୍ୱପ୍ନରେ ଆଦେଶ ପାଇଲେ ଯେ, ଶ୍ରୀଗୋବିନ୍ଦ ବିଗ୍ରହ ପ୍ରକାଶ କର । ସେତେବେଳେ କାରିଗର ରଘୁନାଥ ଓ ଆନନ୍ଦ କମିଲଙ୍କ ଦ୍ୱାରା ଶ୍ରୀବିଗ୍ରହ ନିର୍ମାଣ ଓ ପ୍ରତିଷ୍ଠା କଲେ । ତତ୍‌ପରେ ଧାରିଆକୁ ଆସି ଶ୍ରୀଶ୍ୟାମାନନ୍ଦ ପ୍ରଭୁଙ୍କୁ ଦର୍ଶନ କରି ପରମାନନ୍ଦ ଲାଭ କଲେ ଏବଂ ସେଠାରେ ରଘୁନାଥ କାରିଗରଙ୍କଦ୍ୱାରା ଶ୍ରୀବୃନ୍ଦାବନଚନ୍ଦ୍ର ଶ୍ରୀମୂର୍ତ୍ତି ପ୍ରକାଶ କରି ଶ୍ରୀଗୋପୀବଲ୍ଲଭପୁରରେ ଶ୍ରୀଗୋବିନ୍ଦଜୀଉଙ୍କର ଶ୍ରୀବିଗ୍ରହ ପ୍ରକାଶ ଓ ପ୍ରତିଷ୍ଠା ଉପଲକ୍ଷରେ ମହାମହୋତ୍ସବର ଆୟୋଜନ କରନ୍ତି ।

ଶ୍ରୀଶ୍ୟାମାନନ୍ଦପ୍ରଭୁ ଶ୍ରୀରସିକଙ୍କ ସହ ଘାଟଶିଳାସ୍ଥ ରାଜାଙ୍କ ନିକଟରୁ 'ସାତୁଟୀ' ଗ୍ରାମ ଭିକ୍ଷାକରି ସେହି ଗ୍ରାମର ନାମକରଣ କରନ୍ତି ଶ୍ରୀଶ୍ୟାମସୁନ୍ଦର ଏବଂ ସେଠାରେ ଗୋଟିଏ ମନୋରମ ଆଶ୍ରମ ସ୍ଥାପନ କରନ୍ତି । ପ୍ରଭୁ ଶ୍ରୀଶ୍ୟାମାନନ୍ଦ ଅଯୋଧ୍ୟା ଓ ଛୋଟ ଗୋବିନ୍ଦପୁରରେ ଆଉ ଗୋଟିଏ ଆବାସ ନିର୍ମାଣ କରି ଶ୍ରୀରସିକାନନ୍ଦଦେବଙ୍କୁ "ଠାକୁର ଗୋସେଇଁ" ନାମ ପ୍ରଦାନ କରିଥିଲେ । ହଠାତ୍ ଶ୍ରୀବ୍ରଜଧାମ ଯାତ୍ରାର ଅଲକ୍ଷିତ ଆଦେଶ ପାଇ ଅସ୍ଥିର ହେଲେ ଶ୍ରୀବ୍ରଜଧାମକୁ ଯିବା ଲାଗି; କିନ୍ତୁ ଶିଷ୍ୟ-ଗଣଙ୍କର ଅନୁରୋଧାତିଶଯ୍ୟରେ ବ୍ରଜଧାମ ଯିବାର ଉପାୟ ନ ଦେଖି ବାୟୁରୋଗାକ୍ରାନ୍ତ ହେବାର ଅଭିନୟ କରିବାରୁ ହେମସାଗର ତୈଳ ମର୍ଦ୍ଦନରେ ସୁସ୍ଥ ହୋଇଉଠନ୍ତି ପ୍ରଭୁ ଶ୍ୟାମାନନ୍ଦ ।

ତାପରେ କାଶିୟାଡ଼ିକୁ ଯାଇ ମୋଗଲ ପ୍ରତି ଅପାର କରୁଣା କରନ୍ତି କରୁଣାମୟ ଶ୍ରୀଶ୍ୟାମାନନ୍ଦ । ସହସା ଶ୍ରୀଗୁରୁଦେବ ହୃଦାୟାନନ୍ଦ ଅଧିକାରୀଙ୍କର ଶ୍ରୀଗୋଲୋକପ୍ରାପ୍ତି ସମ୍ବାଦରେ ମର୍ମାହତ ହୋଇ ତାହାଙ୍କର ବିରହୋତ୍ସବ ମହୋତ୍ସବର ଆୟୋଜନ କରନ୍ତି ଶ୍ୟାମାନନ୍ଦପୁରରେ ଶ୍ରୀଳ ଶ୍ୟାମାନନ୍ଦ ପ୍ରଭୁ । ଇତ୍ୟବସରରେ ଶ୍ରୀଦାମୋଦରଜୀଙ୍କର ଅନ୍ତର୍ଦ୍ଧାନ ସମ୍ବାଦ ଶ୍ରବଣ କରି ମର୍ମାନ୍ତିକ ମନଃକଷ୍ଟରେ ଦିନଯାପନ କରି ତାହାଙ୍କର ବିରହମହୋତ୍ସବ ପୁନରନୁଷ୍ଠାନ

କରନ୍ତି । ତା'ପରେ ଶ୍ରୀ ରସକଙ୍କୁ ନିକଟକୁ ଡାକି ଆଦେଶ କରନ୍ତି—"ମୁଁ ଯେପରି ଶ୍ରୀ ଭଗବଦାଦେଶରେ ତୁମଦ୍ୱାର ଜୀବୋଦ୍ଧାର ଉଦ୍ଦେଶ୍ୟରେ ଉତ୍କଳକୁ ଆସିଲି, ସେହିପରି ସପାର୍ଷଦ ତୁମେ ଜୀବର ହିତବ୍ରତ ସାଧନରେ ବ୍ରତୀ ହୁଅ ।" ପୁଣି କହିଲେ—"ଶ୍ରୀକୃଷ୍ଣଙ୍କର ଆଦେଶ ଯେ, ଅନତିବିଳମ୍ବରେ ପାର୍ଥିବ ଲୀଳା ସମ୍ବରଣ କରି ନିତ୍ୟଧାମରେ ମୋତେ ପ୍ରବେଶ କରିବାକୁ ।" ଏହି କଥା କହିବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ଅସୁସ୍ଥ ହୋଇ ଉଦଣ୍ଡ ରାୟଙ୍କ ଭବନରେ ଶ୍ରୀ ରସିକଙ୍କ ସହ ସମସ୍ତେ ଉପସ୍ଥିତ ହୋଇ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କର ଚିକିତ୍ସାଲାଗି ସୁଚିକିତ୍ସକଙ୍କ ଦ୍ୱାରା ରୋଗ ନିରାମୟର ବ୍ୟବସ୍ଥା କରି ମଧ୍ୟ ଯେତେବେଳେ କୌଣସି ସୁଫଳ ହେଲନାହିଁ, ସେତେବେଳେ ପ୍ରଭୁ କହିଲେ ଯେ, "ତୁମ୍ଭମାନଙ୍କର ଏହା ବୃଥା ଚେଷ୍ଟା । ଶ୍ରୀକୃଷ୍ଣାଦେଶ ଅନ୍ୟଥା ହେବାର ନୁହେଁ । ଅତଏବ ଅହରହ ଶ୍ରୀକୃଷ୍ଣନାମ ସଂକୀର୍ତ୍ତନ କର, ଯାହା କି ଭବରୋଗ ନିବାରକ ଅଟେ । ଏକଥା ଶୁଣି ବିକ୍ଷୁବ୍ଧ ମନରେ ଶ୍ରୀ ରସିକ ଗୁରୁଙ୍କ ନିକଟରେ ପ୍ରାର୍ଥନା ଜଣାଇଲେ—"ଏଣିକି ଆପଣଙ୍କର ବିରହରେ ଉତ୍କଳରେ ରହିବା ମୋ ପକ୍ଷେ ଦୁର୍ବିସହ ।" ଏହି ପ୍ରାର୍ଥନା ପରେ ଶ୍ରୀ ଶ୍ୟାମାନନ୍ଦ ଜୀବୋଦ୍ଧାର ପ୍ରତି ଦୃଷ୍ଟିରଖି ଉପଦେଶ ଦେଲେ ଯେ, "ଏହି ଉତ୍କଳକୁ ଶ୍ରୀ ବ୍ରଜଧାମ ମନେକରି କୃଷ୍ଣ-ପ୍ରେମଭକ୍ତି ପ୍ରଚାର, ଶ୍ରୀଭାଗବତାଦି ପାଠ ମାଧ୍ୟମରେ ଶ୍ରୀ ଭଗବଲ୍ଲୀଳା ପ୍ରଚାର ଓ ଦେବ-ସିଦ୍ଧ-ଗୁରୁ-ବୈଷ୍ଣବଙ୍କ ପ୍ରତି ତତ୍ପର ରହିବ ନିରନ୍ତର ।" ଏହି ଉପଦେଶ ଦାନ ସଙ୍ଗେ ସଙ୍ଗେ ପାର୍ଥିବଲୀଳା-ନାଟ୍ୟର ଯବନିକା ପାତ ହେଲା ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କର ଶ୍ରୀଶ୍ରୀ ଜଗନ୍ନାଥ ଦେବଙ୍କର ସ୍ନାନପୂର୍ଣ୍ଣିମା ପରଦିବସ କୃଷ୍ଣାପ୍ରତିପଦ ତିଥିରେ ୧୫୫୨ ଶକାବ୍ଦରେ । ଶ୍ରୀ ରସିକ ମୁରାରି ମର୍ମନ୍ତୁଦ ଶ୍ରୀଗୁରୁବିରହଦଶା ଅନ୍ତରରେ ବହନ କରି ଶ୍ରୀ ଶ୍ୟାମାନନ୍ଦ ବିରହୋତ୍ସବ ସମ୍ପନ୍ନ କରନ୍ତି ମହାସମାରୋହରେ ଶ୍ରୀଗୋବିନ୍ଦପୁରରେ ।

ମହୋତ୍ସବାନ୍ତେ ଦଧିକର୍ଦ୍ଦମ, ବୈଷ୍ଣବ ଭୋଜନ ଓ ମହାନ୍ତ ବିଦାୟ କଲେ । ଏହା ପରେ ପରେ ହିଁ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କ ଜ୍ୟେଷ୍ଠଶିଷ୍ୟଦ୍ୱୟ—"ଶ୍ରୀ କିଶୋର" ଓ "ଶ୍ରୀ ଚିନ୍ତାମଣି"ଙ୍କର ଶ୍ରୀ ବୃନ୍ଦାବନପ୍ରାପ୍ତି ଘଟେ । ସେମାନଙ୍କର ତିରୋଧାନ ମହୋତ୍ସବ ମଧ୍ୟ ସୁସମ୍ପନ୍ନ କରନ୍ତି ଶ୍ରୀ ରସିକ ମୁରାରି । ତତ୍ପରବର୍ଷ ମଧ୍ୟ ଯାହାଙ୍କର ଯେଉଁଦିନ ଆବିର୍ଭାବ ଓ ତିରୋଭାବ ତିଥି, ତାହା ଯଥାଯୋଗ୍ୟ ମର୍ଯ୍ୟାଦାରେ ପାଳନ କରନ୍ତି ଓ ଶିଷ୍ୟ ପ୍ରଶିଷ୍ୟାନୁଶିଷ୍ୟଗଣଙ୍କୁ ସମ୍ମାନରେ ପାଳନ କରିବାର ପରାମର୍ଶ ଦେଲେ । ଅନନ୍ତର ସେ ଗୁରୁପତ୍ନୀଙ୍କୁ ତିଳିକାରୁ ଆଣି ଏକତ୍ରାବସ୍ଥାନର ବ୍ୟବସ୍ଥା କରନ୍ତି ଶ୍ୟାମସୁନ୍ଦରପୁରରେ । ଏଣେ ଉଦ୍ଦଣ୍ଡ ରାୟ ଶ୍ରୀ ରସିକଙ୍କ ଆଜ୍ଞା ଲଂଘନ କରିବାରୁ ହିଜଲୀରେ ଉପସ୍ଥିତ ହୁଅନ୍ତି ଶ୍ରୀ ରସିକ । ପୁଣି ତିନି ଗୁରୁପତ୍ନୀଙ୍କର ପରସ୍ପର କଳହରେ ଶ୍ରୀ ରସିକବିରୋଧୀ-ଗୌରାଙ୍ଗଦାସୀ ଷଡ଼ଯନ୍ତ୍ର କରି ବୈଷ୍ଣବସଙ୍ଘରେ କୃତ୍ରିମ ପତ୍ରିକା ପ୍ରେରଣ କରିବାରୁ ଏକ ଅଭୂତପୂର୍ବ ଘଟଣା ଘଟେ । ସେହି

ପତ୍ରିକା ଯେତେବେଳେ ଶ୍ରୀପଦ୍ମନାଭ ସଭରେ ପାଠ କଲେ ସେତେବେଳେ ପତ୍ରିକାର ଅଭଯୋଗଗୁଡ଼ିକ ଶ୍ରୀମଦ୍ ଭଗବତର ଶ୍ଳୋକାକାରରେ ରୂପାନ୍ତରିତ ହେବାର ଶୁଣି ଦୁଷ୍ଟମାନେ ପଳାୟନ କରନ୍ତି ଓ ଗୌରଙ୍ଗଦାସୀଙ୍କର ଗର୍ବ ଖର୍ବ ହୁଏ । ଶ୍ରୀ ରସିକ ତତ୍‌କ୍ଷଣାତ୍ ସେହି ସ୍ଥାନ ତ୍ୟାଗକରି ଗୋପୀବଲ୍ଲଭପୁରରେ ଶ୍ରୀ ଶ୍ୟାମାନନ୍ଦ ଗୋଷ୍ଠୀଙ୍କୁ ନେଇ ଏକ ମହୋତ୍ସବର ପରିକଳ୍ପନା କରି ରଜା ଶ୍ରୀ ରମଚନ୍ଦ୍ର ଧଳଙ୍କ ନିକଟକୁ ଯାଆନ୍ତି । କିନ୍ତୁ ରଜାଙ୍କର ଉତ୍ସବରେ ଅବହେଳା ଦେଖି ସେଠାରୁ ପ୍ରତ୍ୟାବର୍ତ୍ତନ କରନ୍ତି ବ୍ୟର୍ଥମନୋରଥ ହୋଇ । ଗୋପୀବଲ୍ଲଭପୁରକୁ ଫେରିଆସି ଦ୍ୱାଦଶ ମହା- ମହୋତ୍ସବର ବିପୁଳ ଆୟୋଜନ କରିବାକୁ ଯାଇ ଦେଖିଲେ ଅସମୟରେ ପ୍ରବଳ ବର୍ଷଣ; କିନ୍ତୁ ଶ୍ରୀ ରସିକଙ୍କର ଅତି ମାନସିକ ପ୍ରଭାବରେ ବର୍ଷଣ ଶାନ୍ତ ହୁଏ ଏବଂ ମହୋତ୍ସବ ସାଡ଼ମ୍ବରରେ ଚାଲିବାକୁ ଲାଗିଲା । ସେହି ଉତ୍ସବକୁ ଗୋପାଳହସ୍ତୀର ଆଗମନ ଓ ଶ୍ରୀ ରସିକଙ୍କ ଦର୍ଶନାନ୍ତେ ମହାପ୍ରସାଦ ସେବନ କଲେ ଭକ୍ତପ୍ରଧାନ ଗଜରଜ ଗୋପାଳଦାସ ।

ଇତ୍ୟବସରରେ ଶ୍ରୀଶ୍ରୀ ଜଗନ୍ନାଥ ଦେବଙ୍କର ଆଦେଶ ପାଇ ସେବକ ଶ୍ରୀ ରସକଙ୍କୁ ଶ୍ରୀରଥଯାତ୍ରାକୁ ଆହ୍ୱାନ କରିବାକୁ ଗଲେ 'ନେତ' ଶାଢ଼ୀ ନେଇ ।

ହେନ କାଳେ ନୀଳାଚଳେ ଦେବ ଜଗନ୍ନାଥ ।।  
* ମୁଦି-ରଥେ ଆଜ୍ଞାଦିଲ ନିଶାତେ ସାକ୍ଷାତ ।।  
ମୋର ପ୍ରିୟ ନିଜ ଭକ୍ତ ରସିକ ଶେଖର ।  
ତାରେ ଦେଖିବାରେ ମୋର ଶ୍ରଦ୍ଧା ବହୁତର ।।  
×                ×                ×  
ମୋର ଶ୍ରୀଅଙ୍ଗେର ନେତଶାଢ଼ୀ ଦିବ ତାରେ ।  
ତୁଟି ରଥଯାତ୍ରାତେ ଏଥେ ଦେଖିବେ ମୋତେ ।।  
ଆଜ୍ଞା ଶୁନେ ମୁଦ୍ରିରଥ * କହିଲ ରଜାରେ ।  
ଶୁନିୟା ଆନନ୍ଦ ରଜା ହଇଲ ଅନ୍ତରେ  
ସେଇ ରତ୍ରେ ପ୍ରତ୍ୟାଦେଶ ହଇଲା ରଜାରେ  
ଦୂତ ପଠାଇୟା ଆନ ରସିକ ଶେଖର ।।  
×                ×                ×  
ଦୁଇ ଦ୍ୱିଜେ ପଠାଇଲା ରସିକେର ସ୍ଥାନେ ।  
ଶ୍ରୀଅଙ୍ଗେର ନେତଶାଢ଼ୀ ପାଠାୟ ଯତନେ ।।

---

* ମୁଦିରଥ = ସେବକ ।

ହେଥା ମହୋତ୍ସବ ରସେ ନିଶି ଉଜାଗରେ
ନିଗମେ ଆଛିଲ ବସି ରସିକ ଶେଖରେ ।।
ଆଚମ୍ବିତେ ଆଜ୍ଞା ଶୁଣିଲେନ ରସିକେନ୍ଦ୍ର ।
ଶୀଘ୍ର ଆସି ଦେଖ ମୋର ଚରଣ ରବିନ୍ଦ ।।

(ର.ମ— ଭ,ବି—୭ମ ଲହରୀ)

ଶ୍ରୀଜଗନ୍ନାଥଦେବଙ୍କ ଆଦେଶରେ ଶ୍ରୀରସିକ ଶ୍ରୀକ୍ଷେତ୍ରଗମନ ସମୟରେ ଗସ୍ତାରେ ମୁକ୍ତାପୁରଠାରେ ଦୁର୍ଜନମାନଙ୍କର ଉପଦ୍ରବ ସ୍ୱପ୍ରଭାବରେ ଦମନ କରି ଯେତେବେଳେ ଦେଖିବାକୁ ପାଇଲେ ଯେ, ଉକ୍ତ ଗ୍ରାମଟି ସବଗ୍ରାସୀ ବହ୍ନିର ଲେଲିହାନ ଶିଖାରେ ଭସ୍ମପ୍ରାୟ ହେବାକୁ ଗ୍ଭଲିଛି, ସେତେବେଳେ ତଥାକାର ଗ୍ରାମ-ବାସୀଗଣ ଶ୍ରୀ ରସିକଙ୍କ ନିକଟରେ ଆକୁଳ ପ୍ରାର୍ଥନା ନବେଦନ କରନ୍ତେ ନିଜ ଗୁଣରେ ସଦୟ ହୋଇ ସେହି ଅଗ୍ନିକୁ ନିର୍ବାପିତ କରନ୍ତି ।

ଶ୍ରୀରସିକ ଶ୍ରୀପୁରୁଷୋତ୍ତମ ତୀର୍ଥପଥରେ ବୈତରଣୀରେ ସ୍ନାନ ସମାପନ କରି ଶ୍ରୀ ବରାହଦେବଙ୍କ ଦର୍ଶନ କରନ୍ତି ଏବଂ ବନ୍ୟାପ୍ଲାବିତ ବୈତରଣୀ ନଦୀରେ ନୌକାଯୋଗେ ଉତ୍ତରଣକାଳରେ ଅଗାଧ ଜଳ ମଧ୍ୟରେ ତରଣୀର ବିପର୍ଯ୍ୟୟ ଘଟେ । ସେତେବେଳେ ଶ୍ରୀରସିକଙ୍କ ସ୍ୱଭାବ ବଳରେ ଅନୁଚରବର୍ଗଙ୍କ ସହ ଜାନୁମାତ୍ର ଜଳ ମଧ୍ୟରେ ଦଣ୍ଡାୟମାନ ଅବସ୍ଥାରେ ମହାଗୁରୁଭାର ଶ୍ରୀଭାଗବତାଦି ଗ୍ରନ୍ଥ ମଞ୍ଜୁଷା ଶ୍ରୀରସିକଙ୍କ ସ୍ପର୍ଶରେ ଅସିକ୍ତଭାବେ ଉଦ୍ଧାର ପାଇଥିଲା । ତା'ପରେ ଭୟାବହ ଦୁସ୍ତର ନଦୀ ଉତ୍ତୀର୍ଣ୍ଣ ହୋଇ ପଦବ୍ରଜରେ ଦ୍ରୁତବେଗ ସହକାରେ ଶ୍ରୀନୀଳାଚଳାଭିମୁଖେ ଯାତ୍ରା କରିବାକୁ ଲାଗଲେ । ଶ୍ରୀରଥଯାତ୍ରା ଦିନ ତୁଳସୀଚୌରାରେ ପହଞ୍ଚି ପଥଶ୍ରାନ୍ତି ହେତୁ ସେଠାରେ ସ୍ନାନ ଓ ନିତ୍ୟକର୍ମାଦି ସମାପନ କରନ୍ତି । ସେହି ସମୟରେ ଶ୍ରୀଜଗନ୍ନାଥଦେବ, ଶ୍ରୀବଳଦେବ ଓ ଶ୍ରୀସୁଭଦ୍ରା ଦେବୀଙ୍କର ତିନୋଟି ରଥ ଗ୍ଭଲୁ ଗ୍ଭଲ ବଡଗଣ୍ଡଠାକୁ ଆସି ରଥତ୍ରୟ ଆଉ ଗ୍ଭଲିଲା ନାହିଁ । ସେତେବେଳେ ଗଜପତି ରାଜା-ଦେଶରେ ଶତସହସ୍ର ଲୋକ, ଶତ ଶତ ଗଜାଶ୍ୱ ସାହାଯ୍ୟରେ ମଧ୍ୟ ରଥ ଅଚଳ ଓ ଅବିଚଳ ହୋଇ ରହିଲା । ସେହି ସମୟରେ ସହସା ଶ୍ରୀଜଗନ୍ନାଥଦେବ ତାଙ୍କର ସେବକକୁ ଆଦେଶ କଲେ, "ମୋର ପ୍ରିୟଭକ୍ତ ରସିକମୁରାରି ତୁଳସୀଚୌରାରେ ଆସି ଉପସ୍ଥିତ ହୋଇଛି ମାତ୍ର; ସେ ଆସି ରଥ ଦର୍ଶନ ଓ ସ୍ପର୍ଶ କଲେ, ତାପରେ ରଥ ଗ୍ଭଲିବ । ବର୍ତ୍ତମାନ ରାଜାଙ୍କୁ କୁହ—ଯେତେଶୀଘ୍ର ପାରନ୍ତି ରସିକଙ୍କୁ ନେଇଆସି ରଥ ଗ୍ଭଲିବାର ବ୍ୟବସ୍ଥା କରିବେ ।" ସମ୍ଭ୍ରମରେ ରାଜା ସାଙ୍ଗୋପାଙ୍ଗ ସହ ଶ୍ରୀ ରସିକଙ୍କୁ ଶ୍ରୀ ଜଗନ୍ନାଥ ଦେବଙ୍କ ଆଦେଶ ସମ୍ବାଦ ଜଣାଇଲେ । ଶ୍ରୀରସିକ ଏହା ଶ୍ରବଣମାତ୍ରେ ବାୟୁବେଗରେ ରଥଦର୍ଶନ କରିବାକୁ ଗ୍ଭଲିଲେ । ରାଜା ଗଜପତିଙ୍କର ସ୍ତବସ୍ତୁତି ଓ ପ୍ରଣତିରେ ଶ୍ରୀରସିକେନ୍ଦ୍ର ଆନନ୍ଦିତ ହେଲେ । ଏହି ଅଲୌକିକ ଓ ଅଦୃଷ୍ଟପୂର୍ବ ଘଟଣାର

ପ୍ରଚାରରେ ବଙ୍ଗେ ବଙ୍ଗେ ଶ୍ରୀ ରସିକଙ୍କ ନାମ ଶ୍ରବଣମାତ୍ରେ ନାନା ଦିଗ୍‌ଦେଶାଗତ ଅଗଣିତ ଯାତ୍ରୀ ସାଧାରଣ ରଥ ଓ ଶ୍ରୀ ଭଗବାନଙ୍କ ଦର୍ଶନ ବର୍ଜନ କରି ଭକ୍ତ ଶ୍ରୀରସିକଙ୍କ ଦର୍ଶନ ଲାଗି ସମବେତ ହୁଅନ୍ତି ।

ସବେ ବଲେ ଏଇ ପ୍ରଭୁ ଦ୍ୱିତୀୟ ନାରାୟଣ ।
ଜଗନ୍ନାଥ ସଙ୍ଗେ ଯାର ଅଭେଦ ମିଲନ ।।
(ର. ମ.—ଖ. ବି.—୧୦ମ ଲହରୀ)

ଏକ ଆରେ ସବେ କହେ ରସିକେର କଥା ।
ହେନକାଲେ ପ୍ରତିହାରୀ ଜାନାଇଲ ବାର୍ତ୍ତା ।।
ତୋମାର କାରଣେ ରଥ ରହିଲ୍ ଏଖାନେ ।
ଏବେ ରଥ ଦଡ଼ି ତୁମି ଟାନହେ ଆପନେ ।।
ଶନୟା ରସିକ ମହା ଆନନ୍ଦେ ଉଲ୍ଲାସ ।
ରଥସ୍ତମ୍ଭେ ମାଥା ଦୟା ଠେଲେ ଏକ ପାଶ ।।
ରସିକ ପରଶେ ରଥ ପବନ ଗମନେ ।
ତିନି ରଥ ଉତ୍ତରିଲ ବାଲିନର ସ୍ଥାନେ ।।
ରସିକ ପ୍ରକାଶ ଦେଖି ସବେ ଚମତ୍କାର ।
ସବେ ବଲେ ରସିକେନ୍ଦ୍ର ଅଂଶ ଅବତାର ।।
ବହୁରୂପେ ବିଶ୍ୱାସ ହେଲ ଗଜପତି ।
ନାରାୟଣ ସ୍ୱରୂପେ ରସିକେ କୈଲ ସ୍ତୁତି ।।
(ର. ମ.—ଉ. ବି.—୧୦ମ ଲହରୀ)

ଶ୍ରୀହରିନାମ ସଂକୀର୍ତ୍ତନ ସହ ନଅଦିବସ ବ୍ୟାପୀ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିଥିଲେ ଶ୍ରୀରସିକ । ରାଜା ଫୁଲତୋଟାଠାରେ ଶ୍ରୀରସିକଙ୍କ ଲାଗି ମଠ ସ୍ଥାପନ କରିଦେଲେ ଏବଂ ପ୍ରତିବର୍ଷ ଶ୍ରୀରଥଯାତ୍ରା ଦର୍ଶନ ଲାଗି ଆସିବାକୁ ପ୍ରତିଜ୍ଞା କଲେ ଶ୍ରୀରସିକ-ମୁରାରି ।

ସାରା ଦେଶରେ ଶ୍ରୀହରିନାମ ସଂକୀର୍ତ୍ତନ ପ୍ରଚାର କରୁଥିବାରୁ ସାହସୁଜା ଶ୍ରୀରସିକଙ୍କୁ ପରୀକ୍ଷା କରିବାକୁ ଯାଇ ଗୋପାଳଦାସ ହସ୍ତୀ ସାହାଯ୍ୟରେ ଯଥୋଚିତ ଶିକ୍ଷା ପାଇଲେ ଚତୁର୍ଦ୍ଦଶ ବନ୍ୟହସ୍ତୀ ପ୍ରେରଣ ମାଧ୍ୟମରେ । ଅବଶେଷରେ ଶ୍ରୀରସିକଙ୍କୁ ଶ୍ରୀନାରାୟଣ ଜ୍ଞାନରେ କ୍ଷମାଭିକ୍ଷା ମାଗିଲେ । ସେଠାରୁ ବାହାରି ବାହକଗଣ ଯେତେବେଳେ ଶ୍ୱାପଦସଂକୁଳ ଅରଣ୍ୟପଥରେ ଯାଉ ଯାଉ ପଥ ଭୁଲି ହିଂସ୍ର ବ୍ୟାଘ୍ର ଦ୍ୱୟର ସମ୍ମୁଖୀନ ହୁଅନ୍ତି, ସେତେବେଳେ ଶ୍ରୀ ରସିକାନନ୍ଦ ସେହି ବ୍ୟାଘ୍ରଦ୍ୱୟଙ୍କୁ କୃଷ୍ଣ

ଭଜନର ଉପଦେଶ ଦିଅନ୍ତି ଏବଂ ବ୍ୟାଘ୍ରଦ୍ୱୟ ଶ୍ରୀରସିକଙ୍କୁ ପ୍ରଦକ୍ଷିଣ ଓ ପ୍ରଣାମ କରି ଯଥାଭିଳଷିତ ଦେଶକୁ ପ୍ରସ୍ଥାନ କଲେ । ତତ୍ପରେ ନାଗପୁର ରାସ୍ତାରେ ଯିବାବେଳେ ଦଳବଳ ସହ ଦୁରନ୍ତ କୋଳାଧିର ସମ୍ମୁଖୀନ ହୁଅନ୍ତି । କିନ୍ତୁ ଶ୍ରୀ ଭଗବଦିଚ୍ଛାରେ ଅବଲୀଳା କ୍ରମେ ସେମାନଙ୍କର ଦରଶା ନିଷ୍ଫଳ କରି ମନ୍ତ୍ରଦୀକ୍ଷା ଦେଇ ସେମାନଙ୍କୁ ଶିଷ୍ୟତ୍ୱରେ ବରଣ କରନ୍ତି ଏବଂ ପରମ ବୈଷ୍ଣବତ୍ୱରେ ପରିବର୍ତ୍ତିତ କରନ୍ତି । ଏ ପ୍ରକାରେ ଶେଖରଭୂମି ରାଜାଙ୍କର ପ୍ରାର୍ଥନାରେ ତାଙ୍କ ଦେଶରେ ବର୍ଷତ୍ରୟ ବ୍ୟାପୀ ଅନାବୃଷ୍ଟି ଦୂର ହୁଏ ହରିନାମ-ସଂକୀର୍ତ୍ତନ ମହାମହୋତ୍ସବ ମାଧ୍ୟମରେ । ବହୁ ଦେଶରେ ହରିନାମ ପ୍ରଚାର ଉଦ୍ଦେଶ୍ୟରେ ବିଚରଣ କରୁ କରୁ କେନ୍ଦୁବିଲ, ବିଷ୍ଣୁପୁର, ଅମ୍ବିକା କାଲନା, ଶ୍ରୀମନ୍ମହାପ୍ରଭୁଙ୍କର ନିତ୍ୟଲୀଳାସ୍ଥଳୀ ଶ୍ରୀଧାମ ନବଦ୍ୱୀପ ଓ ମହାନ୍ତଗଣଙ୍କର ଶ୍ରୀପାଟ ଦର୍ଶନ ପରେ ଦୈନିକ ଭଜନପ୍ରଣାଳୀ ଓ ନିତ୍ୟଲୀଳା ପ୍ରବେଶ ଚିନ୍ତାରେ ଅଧୀର ହୋଇ ଶ୍ରୀ ଗୋପୀଜନବଲ୍ଲଭ ଓ ଶ୍ରୀତୁଳସୀଙ୍କ ନିକଟରେ ନିଜାଭୀଷ୍ଟ ବ୍ୟକ୍ତ କରି ଆତ୍ମୀୟ-ସ୍ୱଜନଗଣଙ୍କ ସମୀପରେ ଜନ୍ମାବଧି ସମୁଦାୟ ଲୀଳା ସଂକ୍ଷେପରେ ବର୍ଣ୍ଣନା କରନ୍ତି ଶ୍ରୀ ରସିକାନନ୍ଦଦେବ । ପୁଣି ଥରେ ଶ୍ରୀ ବୃନ୍ଦାବନଧାମ ଦର୍ଶନ, ଗଙ୍ଗାତୀରରେ ବାସ, ବିଭିନ୍ନ ଦେବାଳୟ ଦର୍ଶନ ଓ ବୈଷ୍ଣବସେବା—ଏହି ଅଭିଳାଷ ଚତୁଷ୍ଟୟ ଅପୂର୍ଣ୍ଣ ରଖି ଶ୍ରୀଭଗବାନଙ୍କର ସୁସ୍ପଷ୍ଟ ଇଙ୍ଗିତରେ ନିତ୍ୟଲୀଳା ପ୍ରବେଶର ସମୟ ସମାସନ୍ନ ବୁଝିପାରି ରେମୁଣାସ୍ଥ ଶ୍ରୀ କ୍ଷୀରଚୋରା ଗୋପୀନାଥଜୀଉଙ୍କ ସମ୍ମୁଖରେ ସମାଧି ଗ୍ରହଣର ପ୍ରସ୍ତାବ ପ୍ରକାଶ କରନ୍ତି ଅନ୍ତରଙ୍ଗ ଶିଷ୍ୟଗଣଙ୍କ ନିକଟରେ ଶ୍ରୀ ରସିକାନନ୍ଦ ପ୍ରଭୁ ।

"ଶୁନ ସବେ ଆତ୍ମଗଣ ଆମାର ବଚନେ ।
ସମାଧି କରିବେ ଆମାୟ ଗୋପାଲେର * ସ୍ଥାନେ ।।
ଚୈତନ୍ୟ ଗୋସାଇଁ ଆଜ୍ଞା ଦିଲେନ ଶ୍ରୀମୁଖେ ।
ନିଜେ ଗୋପାଲ ଆମାର ଏ ଜାନି ପ୍ରତ୍ୟକ୍ଷେ ।।
ମାଧବେନ୍ଦ୍ରପୁରୀ ଆଦ ଯତ ମହାଜନ ।
ରେମୁଣାତେ ପୁଜିଲ ସେ ଗୋପାଲ-ଚରଣ ।।
ଭକ୍ତବଶ ବଡ଼ ଏଇ କ୍ଷୀର ଚୁରି କରି ।
ଦିଲେନ ଆନିୟା ପ୍ରେମେ ମାଧବେନ୍ଦ୍ରପୁରୀ ।।
ସେଇ ହୈତେ କ୍ଷୀରଚୋରା ଗୋପାଲ ବଲିୟା ।
ସର୍ବଜନ ସେବା କରେ ପ୍ରକାଶ ଦେଖିୟା ।।
ଆମାର ସମାଧି ସବେ ଦେଖିବେ ସେ ସ୍ଥାନେ ।
ସବାରେ କହିଲୁଁ ତତ୍ତ୍ୱ ବସିୟା ନିଗମେ ।।

* 'ଗୋପୀନାଥ' ଇତି ପାଠାନ୍ତର ।

ଶୁଣିୟା ସେ ମହାତ୍ରାସେ ସବ ଆତ୍ମଗଣ ।
ଭୂମିତେ ଲୋଟାୟା କାଁଦେ ସଜଲ ନୟନ ॥"

(ରେ· ମ· — ଭ· ବି· — ୧୫ଶ ଲହରୀ)

ଶ୍ରୀରସିକାନନ୍ଦ ଦେବ ରେମୁଣା ଆସିବା ସମୟରେ ପଥ ମଧ୍ୟରେ ବାଁଶଦା ଗ୍ରାମଠାରେ ଶ୍ରୀଚରଣରେ କଣ୍ଟକ ବିଦ୍ଧ ହୁଏ । ତତ୍‌ଫଳରେ ତାଙ୍କ ଶ୍ରୀଅଙ୍ଗରେ ଜ୍ୱରର ପ୍ରକୋପ ଦେଖାଦିଏ । ସେହି ସମୟରେ ସେ ଜୀବନ ମହୋତ୍ସବ ଆରମ୍ଭ କରନ୍ତି । ତାହା ଦର୍ଶନକରି ତାଙ୍କ ଶିଷ୍ୟଗଣ ତାଙ୍କୁ ଗୋପୀବଲ୍ଲଭପୁରକୁ ନେଇଯିବାକୁ ବହୁ ଚେଷ୍ଟା କରନ୍ତି । କିନ୍ତୁ ସମସ୍ତ ଚେଷ୍ଟା ବ୍ୟର୍ଥତାରେ ପର୍ଯ୍ୟବସିତ ହୁଏ । ସାରତା ଗ୍ରାମଠାରେ ସମସ୍ତଙ୍କ ଅଜ୍ଞାତସାରରେ ଆଶ୍ଚର୍ଯ୍ୟଜନକ ଭାବେ ଶିବିକା ପରିତ୍ୟାଗ କରି ଶ୍ରୀକ୍ଷୀରଚୋର ଗୋପୀନାଥ ଜୀଉଙ୍କ ଶ୍ରୀମନ୍ଦିରରେ ଆସି ଉପସ୍ଥିତ ହୁଅନ୍ତି ।

ସାୟତା ଛାଡ଼ିୟା ରେମୁଣାତେ ପ୍ରଭୁ ଗେଲା ।
ତଥା ଏକା ଗିୟା ପ୍ରଭୁ ମନ୍ଦିରେ ପଶିଲା ।
ବ୍ରାହ୍ମଣ ଦେଖିଲା ମାତ୍ର ମନ୍ଦିରେ ପଶିତେ ।
ରହିଲେନ ଅନ୍ତର୍ଧାନ ଗୋପାଲ ଅଙ୍ଗତେ ॥
ଦ୍ୱିଜ ବଲେ କୋଥା ଗେଲ ରସିକ ଶେଖର ।
ଦେଖିଲାମ ପଶିଲେନ ମନ୍ଦିର ଭିତର ॥
ମନ୍ଦିରେ ଦେଖିଲ ଦ୍ୱିଜ କେହି ନାହି ତଥା ।
ଗୋପାଲ ଅଙ୍ଗେତେ ପ୍ରବେଶିଲା ସରବଥା ॥
ସବାକାରେ କହେ ବିପ୍ର ପ୍ରେମେତେ ବ୍ୟାକୁଲ ।
ଗୋପାଲେର ଅଙ୍ଗେତେ ଲୀନ ରସିକ ଠାକୁର ॥
ହେନକାଲେ ପ୍ରବେଶିଲା ସବେ ସେଇ ସ୍ଥାନେ ।
ସୁକପାଲେ କେହ ନାଇ ଦେଖେ ସବ ଜନେ ॥
ଚମତ୍କାର ହୈୟା ସବେ ନା କୈଲ ପ୍ରକାଶ ।
ଲୁଗାର କାଣ୍ଡାରି ଦିଲ ଶୀଘ୍ର ଗ୍ରୀପାଶ ॥
ବସ୍ତ୍ର ଆଭରଣ ମାଲା ଯତ ଯତ ଛିଲ ।
ଚନ୍ଦନ କୁଙ୍କୁମ ଦିୟା ଆସନ ପାତିଲ ॥
ଅଗୁରୁ କସ୍ତୁରୀ ଚୁୟା ଚନ୍ଦନ ସହିତେ ।
ସମାଧି ସ୍ଥାପିଲ ତଥା ଗୋପାଲ ଅଗ୍ରତେ ॥
ସ୍ୱଦେହ ସହିତେ ପ୍ରଭୁ ଅନ୍ତର୍ଧାନ ହେଲା ।
ଗୋପାଲେର ଶ୍ରୀଅଙ୍ଗେତେ ପରବେଶ କୈଲା

ଆତ୍ମଗଣ ବିନା କେହ ଇହା ନାହି ଜାଣେ ।
ପ୍ରକାଶ ନା କୈଲ କେହ ଦେଖିଲ ନୟନେ ॥
ଲୋକ ଭଣ୍ଡିବାରେ କୈଲ ନାନା ପରକାର ।
କୁହକେର ମତ ଦେଖେ ସକଲ ସଂସାର ॥
ହେନ ରୂପେ ସମାଧି କୈଲ ସେଇ ସ୍ଥାନେ ।
ଏ ସକଲ ତତ୍ତ୍ୱ କଥା ଜାନେ ସାଧୁଜନେ ॥
ରସିକ ମହିମା ଦେବେନ୍ଦ୍ରାଦି ଆଗୋଚରେ ।
କୁହକ ସଦୃଶ ଜନ୍ମ-ମୃତ୍ୟୁ ଦେହ ଧରେ ॥

---

# ଶ୍ରୀ ରସିକାନନ୍ଦ କୃତଂ ଶ୍ରୀ ଭାଗବତାଷ୍ଟକମ୍

ଶ୍ରୀଗୋବିନ୍ଦ ପଦାରବିନ୍ଦ ମଧୁପାନନ୍ୟାଭିଲକ୍ଷୋଜ୍ଜ୍ୱିତାନ୍ ।
ପୂର୍ଣ୍ଣପ୍ରେମ ରସୋତ୍‌ସବୋଜ୍ଜ୍ୱଳ ମନୋବୃତ୍ତି ପ୍ରସନ୍ନାନନାନ୍ ।
ଶଶ୍ୱତ୍ କୃଷ୍ଣକଥାମହାମୃତ ପୟୋଗର୍ଣୌ ମୁଦା ଖେଲତୋ-
ବନ୍ଦେ ଭଗବତାନିମାନନୁ ଲବଂ ମୂର୍ଦ୍ଧ୍ନା ନିପତ୍ୟ କ୍ଷିତୌ ॥ ୧ ॥

ପାଦାବ୍‌ଜେକୃତ ସତ୍‌କୃତାବାର୍ପି ଚତୁର୍ବର୍ଗେ ଘୃଣାଂ କୁର୍ବତୋ
ଦୃକ୍‌ପାତେଽପି ଗତବ୍ୟଥାନ୍ ବ୍ରଜପତିପ୍ରେମାମୃତ ସ୍ୱାଦକାନ୍ ।
ମନ୍ୱନାନତିଦୁସ୍ତରଂ ଭବମହାପାଥୋ ନିଧିଂ ଗୋଷ୍ପଦମ୍-
ବନ୍ଦେ ଭଗବତାନିମାନନୁ ଲବଂ ମୂର୍ଦ୍ଧ୍ନା ନିପତ୍ୟ କ୍ଷିତୌ ॥ ୨ ॥

ମୃଗ୍ୟାଂ ବ୍ରହ୍ମଭବାଦିଭିର୍ବ୍ରଜବଧୂନାମଙ୍ଘ୍ରିଂକଞ୍ଜ ଦ୍ୱୟୀଂ-
ସ୍ୱାତନ୍ତ୍ର୍ୟାତ୍ ପ୍ରଣୟୋତ୍ଥ ରଜ୍ଜୁଭିରହୋ ବଦ୍ଧାବଲମ୍ବିଭିରମ୍ ।
ସ୍ୱଚ୍ଛନ୍ଦଂ ପିବତସ୍ତଦାସବରସଂ ପ୍ରସ୍ୟନ୍ଦମାନଂ ସଦା-
ବନ୍ଦେ ଭଗବତାନିମାନନୁଲବଂ ମୂର୍ଦ୍ଧ୍ନା ନିପତ୍ୟ କ୍ଷିତୌ ॥ ୩ ॥

ବିଶ୍ୱେଷାଂ ହୃଦୟୋତ୍‌ସବାନ ସୁସୁଖଦାନ୍, ମାୟାମନୁଷ୍ୟ କୃତୀନ୍
କୃଷ୍ଣେନଧ୍ୟବତାରିତାନ୍ ଜନସମୁଦ୍ଧାରୟ ପୃଥ୍ୱୀ ତଳେ ।
ସଂସର୍ଗଭି ବହିତ୍ର ପାଦକମଲଂ ତ୍ରୈଲୋକ୍ୟଭଗ୍ୟୋ ଦୟାନ୍
ବନ୍ଦେ ଭଗବତାନିମାନନୁଲବଂ ମୂର୍ଦ୍ଧ୍ନା ନିପତ୍ୟ କ୍ଷିତୌ ॥ ୪ ॥

ଆଲୋକାମୃତଦାନ ତୋ ଭବମହା ବନ୍ଧଂ ନୃଣାଂ ଛିନ୍ଦତଃ-
ସ୍ପର୍ଶାତ୍ ପାଦସରେଜ ଶୌଚ ପୟସାଂ ତାପତ୍ରୟଂ ଭିନ୍ଦତଃ ।
ଆଲପାଦ୍ ବ୍ରଜନାଗରଧ୍ୟ ପଦୟୋଃ ପ୍ରେମାନ ମାତନ୍ୱତୋ-
ବନ୍ଦେ ଭଗବତାନିମାନନୁଲବଂ ମୂର୍ଦ୍ଧ୍ନା ନିପତ୍ୟ କ୍ଷିତୌ ।। ୫ ।।

ଭବାବେଶସମୁଜ୍ଜ୍ୱଲନ୍ ପୁଲକିନୋହର୍ଷାଶ୍ରୁଧାରବଲୀ-
ନିର୍ଧୌତାନନ ପଙ୍କଜାନ୍ନବନବାନନ୍ଦାଦ୍ଭୃଶଂ ନୃତ୍ୟତଃ ।
ପ୍ରେମୋଚ୍ଛୈଶ୍ଚାରିତଂ ସଗଦ୍ଗଦପଦଂ ଗୋପୀପତେ ର୍ଗାୟତୋ-
ବନ୍ଦେ ଭଗବତାନିମାନନୁଲବଂ ମୂର୍ଦ୍ଧ୍ନା ନିପତ୍ୟ କ୍ଷିତୌ ।। ୬ ।।

ପ୍ରେମାସ୍ୱାଦ ପରାୟନାନ୍ ହରିପଦସ୍ଫୂର୍ତ୍ତି ସ୍ଫୁରନ୍ମାନସାନ୍
ଆନନ୍ଦୈକ ପୟୋନିଧିନ୍ ରସ ସମୁଲ୍ଲାସିସ୍ମିତ ଶ୍ରୀମୁଖାନ୍ ।
ଧନ୍ୟାନ୍ ସଚ୍ଛରିତୌଘନନ୍ଦିତଜନାନ୍ କାରୁଣ୍ୟ ପୂରଶ୍ରୟାନ୍
ବନ୍ଦେ ଭଗବତାନିମାନନୁଲବଂ ମୂର୍ଦ୍ଧ୍ନା ନିପତ୍ୟ କ୍ଷିତୌ ।। ୭ ।।

କୃଷ୍ଣାଦନ୍ୟମଜାନତଃ କ୍ଷଣମପି ସ୍ୱପ୍ନେଽପି ବିଶ୍ୱେଶ୍ୱରେ-
ତସ୍ମିନ ଭକ୍ତିମହୈତୁକୀଂ ବିଦଧତୋ ହୃତ୍କାୟ ବାଗ୍‌ଭିଃ ସଦା ।
ଶ୍ରୀଲନ ସଦଗୁଣପୁଞ୍ଜ କେଳିନିଳୟାନ୍ ପ୍ରେମବତାରନହଂ-
ବନ୍ଦେ ଭଗବତାନିମାନନୁଲବଂ ମୂର୍ଦ୍ଧ୍ନା ନିପତ୍ୟ କ୍ଷିତୌ ।। ୮ ।।

ଏତଦ ଭଗବତାଷ୍ଟକଂ ପଠତି ଯଃ ଶ୍ରଦ୍ଧାନ୍ୱିତଂ କ୍ଷେମଦଂ-
ଭକ୍ତ୍ୟୁଦ୍ରେକବିବର୍ଦ୍ଧନଂ ପ୍ରତିପଦଂ ପ୍ରେମ ପ୍ରମୋଦପ୍ରଦମ୍ ।
ପ୍ରେମାନଂ ପରମଂ ଧ୍ରୁବଂ ସ ଲଭତେ ବୃନ୍ଦାବନେଶାତ୍ସୁ-
କ୍ଷିପ୍ରଂ ଭଗବତେଷ୍ଟୁ ଯେନ ବଶଗୋ ଗୋପାଙ୍ଗନାବଲ୍ଲଭଃ ।। ୯ ।।

ଇତି ଶ୍ରୀମଦ୍ ରସିକାନନ୍ଦଦେବଗୋସ୍ୱାମୀ ବିରଚିତଂ
ଶ୍ରୀଭଗବତାଷ୍ଟକଂ ସଂପୂର୍ଣ୍ଣମ୍ ।



ବିଦ୍ୟନ୍ତେ ନୈବଲୋକେ କତି କତି ନ ପୁରାଣେତିହାସୋହିତେଷୁ-
ନ କିଞ୍ଚିତ୍ କ୍ୱାପି କୃଷ୍ଣଃ ସ୍ୱୟମଲିଖଦ୍ଭ୍ରେ ଗୀତଗୋବିନ୍ଦତୋଽସୌ
ଭକ୍ତେଷ୍ୱେବଂ ନ କୁତ୍ରାପି ନିଜକର କୃତଂ ଲିଖ୍ୟତେ ବିନ୍ଦୁରୂପଂ
ଶ୍ରୀଶ୍ୟାମାନନ୍ଦ ଏବ ଜୟମକୃତମୁଦ୍ରା ଶ୍ରୀମତୀ ଶ୍ରୀରାଧିକୈବ
ସାନ୍ଦ୍ରାନନ୍ଦନିଧିଃ ପ୍ରସାଦଜଲଧେ ସ୍ତ୍ରୈଲୋକ୍ୟଶୋଭନିଧିଃ-
ପୂର୍ଣ୍ଣପ୍ରେମରସାମୃତକ୍ଷୟନିଧିଃ ସୌଭାଗ୍ୟଲକ୍ଷ୍ମୀନିଧିଃ ।।
ସନ୍ତପୈକ ମହାନିଧିର୍ଦ୍ଧନନିଧିଃ କାରୁଣ୍ୟଲୀଳାନିଭିଃ-
ଶ୍ୟାମାନନ୍ଦ ଦୟ ନିଧିର୍ବିଜୟତେ ମାଧୁର୍ଯ୍ୟ ସମ୍ପୂର୍ଣ୍ଣଧୀଃ ।।
ସାନ୍ଦ୍ରାନନ୍ଦକରଂ ରସୋନ୍ନତିକରଂ ଶ୍ରୀକୃଷ୍ଣଭକ୍ତାକରମ୍-
ଚେତ ଶାନ୍ତିକରଂ ତମଃକ୍ଷୟକରଂ ଭକ୍ତାବଳୀ ଶଙ୍କରମ୍ ।
ଦୁଃଖଚ୍ଛେଦକରଂ ସୁଖାନ୍ୱୟକରଂ କାରୁଣ୍ୟ ସମ୍ପତ୍କରଂ-
ଦୀନୋଦ୍ଧାରକରଂ ନମାମି ରସିକାନନ୍ଦଂ ପ୍ରଭୁଭସ୍କରମ୍ ।।

## ଅନୁବାଦ :

ଯେଉଁମାନେ ଶ୍ରୀଗୋବିନ୍ଦଙ୍କର ପାଦପଦ୍ମର ଭ୍ରମର, କୃଷ୍ଣେତର ଅଭିଳାଷବର୍ଜ୍ଜିତ, ପୂର୍ଣ୍ଣପ୍ରେମର ଆସ୍ୱାଦନଜନିତ ଆନନ୍ଦଦ୍ୱାରା ଦେଦୀପ୍ୟମାନ ମନୋବୃତ୍ତି ହେତୁ ଯେଉଁମାନଙ୍କର ବଦନମଣ୍ଡଳ ଉତ୍ଫୁଲ୍ଲ ରହିଛି ଏବଂ ନିରନ୍ତର କୃଷ୍ଣକଥା ରୂପ ଶ୍ରେଷ୍ଠ ସୁଧାସମୁଦ୍ରରେ ଯେଉଁମାନେ ହର୍ଷ ସହକାରେ ନିରନ୍ତର କ୍ରୀଡ଼ା କରୁଛନ୍ତି, ସେହି ଭଗବତଗଣଙ୍କୁ ଭୂଲୁଣ୍ଠିତ ହୋଇ ମସ୍ତକଦ୍ୱାରା ସଦା ସାଷ୍ଟାଙ୍ଗ ପ୍ରଣିପାତ କରେ ।।୧।।

ଧର୍ମ, ଅର୍ଥ, କାମ ଓ ମୋକ୍ଷ—ଏହି ଚତୁର୍ବର୍ଗ ଯେଉଁମାନଙ୍କର ପାଦପଦ୍ମରେ ପୂଜା ସହକାରେ ଲୁଣ୍ଠନ କରୁଥିଲେ ମଧ୍ୟ ତହିଁରେ ଦୃଷ୍ଟିପାତ କରିବାକୁ ବି ଯେଉଁମାନେ ଅବଜ୍ଞା ପ୍ରକାଶ କରନ୍ତି ; ଯେଉଁମାନଙ୍କର ନିଖିଳ କ୍ଳେଶ ବିନଷ୍ଟ ହୋଇଛି, ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଙ୍କର ପ୍ରୀତିସୁଧା ଯେଉଁମାନେ ଆସ୍ୱାଦନ କରନ୍ତି ଏବଂ ଯେଉଁମାନେ ଦୁସ୍ତର ଜନ୍ମ-ମରଣ ରୂପ ମହାସାଗରକୁ ଗୋଷ୍ପଦ ତୁଲ୍ୟ ଜ୍ଞାନ କରନ୍ତି, ଏତାଦୃଶ ଭଗବତଗଣଙ୍କୁ ଭୂଲୁଣ୍ଠିତ ହୋଇ ନିରନ୍ତର ସାଷ୍ଟାଙ୍ଗ ପ୍ରଣାମ କରେ ।।୨।।

ବ୍ରଜଗୋପୀଗଣଙ୍କର ଏକମାତ୍ର ପ୍ରଭୁ ଶ୍ରୀକୃଷ୍ଣଙ୍କର ଯେଉଁ ପାଦପଦ୍ମ ଯୁଗଳ ବ୍ରହ୍ମାଶିବାଦି ଅନ୍ୱେଷଣ କରି ମଧ୍ୟ ପାଆନ୍ତି ନାହିଁ । କିନ୍ତୁ ଯେଉଁମାନେ ସ୍ୱାତନ୍ତ୍ର୍ୟ ବଶତଃ ପ୍ରୀତିରୂପ ଉତ୍କୃଷ୍ଟ ରଜ୍ଜୁଦ୍ୱାରା ବଳପୂର୍ବକ ଦୃଢ଼ରୂପେ ବନ୍ଧନ କରି ତହିଁରୁ ନିରନ୍ତର କ୍ଷରିତ ମାଧୁର୍ଯ୍ୟରସ ସ୍ୱେଚ୍ଛାରେ ସୁଖରେ ପାନରତ ଅଛନ୍ତି । ଏତାଦୃଶ ଭଗବତଗଣଙ୍କୁ ଭୂଲୁଣ୍ଠିତ ହୋଇ ପ୍ରଣାମ କରେ ।। ୩ ।।

ଆବ୍ରହ୍ମସ୍ତମ୍ବ ପର୍ଯ୍ୟନ୍ତ ସକଳ ଜୀବର ଆନନ୍ଦପ୍ରଦ, ନିଜାନୁସଙ୍ଗୀ ଜନଗଣଙ୍କର ସୁଖଦାତା, ଭଗବଦ୍‌ଜ୍ଞାନରୂପ କୃପାବଲମ୍ବନରେ ମନୁଷ୍ୟାକାରଧାରୀ ପାପିଗଣଙ୍କର ପରିତ୍ରାଣାର୍ଥ ଶ୍ରୀକୃଷ୍ଣ କର୍ତ୍ତୃକ ଭୂତଳରେ ଅବତାରିତ, ସଂସାର ସମୁଦ୍ରରୁ ଉତ୍ତରଣର ପୋତ ସ୍ୱରୂପ ପଦକମଳଯୁତ, ତ୍ରିଭୁବନବାସୀଗଣଙ୍କର ସୌଭାଗ୍ୟର ଫଳ ସ୍ୱରୂପ ଏହି ଶ୍ରୀଭଗବତଗଣଙ୍କୁ ଭୂଲୁଣ୍ଠିତ ହୋଇ ପ୍ରଣାମ କରେ ।। ୪ ।।

ଯେଉଁମାନେ ଦର୍ଶନାମୃତ ପ୍ରଦାନଦ୍ୱାରା ଜୀବନିବହର ଜନ୍ମମରଣ ରୂପ ସଂସୃତିର ମହାବନ୍ଧନ ଛେଦନ କରନ୍ତି, ଯେଉଁମାନଙ୍କର ପାଦପ୍ରକ୍ଷାଳନ ଜଳ ସ୍ପର୍ଶରେ ତାପତ୍ରୟ ବିନଷ୍ଟ ହୁଏ ଏବଂ ଯେଉଁମାନଙ୍କ ସହିତ ଆଳାପରେ ବ୍ରଜନାଗର ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରୀତିବର୍ଦ୍ଧିତ ହୁଏ, ଏତାଦୃଶ ଭଗବତଗଣଙ୍କୁ ଭୂଲୁଣ୍ଠିତ ହୋଇ ସର୍ବଦା ସାଷ୍ଟାଙ୍ଗ ପ୍ରଣିପାତ କରେ ।। ୫ ।।

ଯେଉଁମାନେ ପ୍ରେମ ବିକାରର ଆବେଗରେ ସମ୍ୟକ ଦୀପ୍ତିମାନ ଓ ପୁଲକାଞ୍ଚିତ ତନୁ; ହର୍ଷାଶ୍ରୁଧାରାରେ ଯେଉଁମାନଙ୍କର ବଦନ କମଳ ପ୍ରକ୍ଷାଳିତ, ଯେଉଁମାନେ ନବ ନବ ଆନନ୍ଦରେ ପ୍ରଭୂତ ଭାବେ ନୃତ୍ୟ କରନ୍ତି ଏବଂ ଯେଉଁମାନେ ଗଦଗଦ ବାକ୍ୟରେ ପ୍ରଣୟ ସହକାରେ ଗୋପୀପତି ଶ୍ରୀକୃଷ୍ଣଙ୍କ ଚରିତ ଉଚ୍ଚରବରେ କୀର୍ତ୍ତନରତ ଥାନ୍ତି, ଏତାଦୃଶ ଭଗବତଗଣଙ୍କୁ ଭୂଲୁଣ୍ଠିତ ହୋଇ ନିରନ୍ତର ସାଷ୍ଟାଙ୍ଗ ପ୍ରଣିପାତ କରେ ।। ୬ ।।

କୃଷ୍ଣପ୍ରେମାସ୍ୱାଦନ ହିଁ ଯେଉଁମାନଙ୍କର ଏକମାତ୍ର ଆଶ୍ରୟ, ତଦୀୟ ପଦପଙ୍କଜର ସ୍ଫୂର୍ତ୍ତିରେ ଯେଉଁମାନଙ୍କର ହୃଦୟ ପ୍ରକାଶିତ ରହିଛି, ଯେଉଁମାନେ ଆନନ୍ଦର ମୁଖ୍ୟ ସମୃଦ୍ଧ, ଶ୍ରୀଭଗବାନଙ୍କ ପ୍ରତି ସମୁଲ୍ଲସିତ ଈଷତ ହାସ୍ୟଦ୍ୱାରା ଯେଉଁମାନଙ୍କର ମୁଖମଣ୍ଡଳ ଶ୍ରୀସମ୍ପନ୍ନ, ଯେଉଁମାନେ ସଚ୍ଚରିତ୍ରଦ୍ୱାରା ମନୁଷ୍ୟଗଣଙ୍କୁ ଆନନ୍ଦିତ କରନ୍ତି ଏବଂ ଯେଉଁମାନେ ସୁକୃତିମାନ ଓ କରୁଣା ପ୍ରବାହର ଆକର ଏତାଦୃଶ ଭଗବତଗଣଙ୍କୁ ଭୂଲୁଣ୍ଠିତ ହୋଇ ନିରନ୍ତର ସାଷ୍ଟାଙ୍ଗ ପ୍ରଣତି କରେ ।।୭।।

ଯେଉଁମାନେ ମୁହୂର୍ତ୍ତକାଳ ଲାଗି ମଧ୍ୟ ସ୍ୱପ୍ନରେ ବି ଶ୍ରୀକୃଷ୍ଣ ବ୍ୟତୀତ ଅନ୍ୟ କାହାରିକୁ ଜାଣନ୍ତି ନାହିଁ; ମତ୍ସ୍ୟକୂର୍ମାଦି ଓ ଗର୍ଭୋଦଶାୟୀ ପ୍ରଭୃତି ଅବତାରର ଅଂଶୀ ଶ୍ରୀକୃଷ୍ଣଙ୍କଠାରେ ଯେଉଁମାନେ ସର୍ବଦା କାୟମନୋବାକ୍ୟରେ ଅହେତୁକୀ ଭକ୍ତିମାନ, ସେହି ଭଜନସାମର୍ଥ୍ୟଶାଳୀ, ସାଧୁଗୁଣ ସମୂହର କ୍ରୀଡ଼ାନିକେତନ ଓ ପ୍ରେମର ଅବତାର ଭଗବତଗଣଙ୍କୁ ଭୂଲୁଣ୍ଠିତ ହୋଇ ଅବିରତ ସାଷ୍ଟାଙ୍ଗ ପ୍ରଣିପାତ କରେ ।। ୮

ଏହି ଭଗବତାଷ୍ଟକ ଭଗବଚ୍ଚରଣ ଲଭ ରୂପ କୁଶଳ ପ୍ରଦାତା । ଏ ବିଶେଷ ରୂପେ ପ୍ରେମଭକ୍ତି ଉତ୍କର୍ଷବର୍ଦ୍ଧକ ଏବଂ ପ୍ରତିପଦରେ ପ୍ରେମାନନ୍ଦ ଅର୍ପଣକାରୀ । ଯେ ଶ୍ରଦ୍ଧାନ୍ୱିତ ହୋଇ ଏହି ଅଷ୍ଟକ ନିତ୍ୟ ପାଠ କରନ୍ତି ସେ ସୁନିଶ୍ଚିତ ଭବେ ଦ୍ରୁତ ବୃନ୍ଦାବନାଧୀଶ ଶ୍ରୀକୃଷ୍ଣଙ୍କର ହୃଦୟ ସ୍ୱରୂପ ଶ୍ରୀଭଗବତଗଣଙ୍କର ପରମା ପ୍ରୀତି ଲଭ କରନ୍ତି ଏବଂ ତଦ୍ଦ୍ୱାରା ହିଁ ଗୋପୀଜନବଲ୍ଲଭ ଶ୍ରୀକୃଷ୍ଣଙ୍କୁ ବଶୀଭୂତ କରିଥାନ୍ତି ।। ୯ ।।

ପୃଥିବୀର କେତେ ଅଧିକ ସଂଖ୍ୟକ ପୁରାଣ ଇତିହାସ ବର୍ତ୍ତମାନ; କିନ୍ତୁ ଗୀତଗୋବିନ୍ଦ ବ୍ୟତୀତ ଆଉ କୁତ୍ରାପି ସେହି ଶ୍ରୀକୃଷ୍ଣ ସ୍ୱୟଂ ସ୍ୱହସ୍ତରେ ଲେଖିନାହାନ୍ତି । ସେହିପରି ଭକ୍ତଗଣଙ୍କ ମଧ୍ୟରେ ବି କେଉଁଠି ତାଙ୍କର ଶ୍ରୀହସ୍ତଲିଖିତ ବିନ୍ଦୁରୂପ ଅଙ୍କିତ ନାହିଁ । କିନ୍ତୁ ଶ୍ରୀମତୀ ରାଧିକା ହିଁ ଏକମାତ୍ର ଶ୍ୟାମାନନ୍ଦଦେବଙ୍କଠାରେ ସାନନ୍ଦରେ ତାହା ସ୍ୱୟଂ ସମ୍ପାଦନ କରିଅଛନ୍ତି ।। ୧ ।।

ପ୍ରଗାଢ଼ ଆନନ୍ଦଖଣି ଅନୁଗ୍ରହ ସାଗର, ତ୍ରିଭୁବନ ଶୋଭାର ଆଧାର । ପୂର୍ଣ୍ଣପ୍ରେମରସର ନିଳୟରତ୍ନ, ସୌଭାଗ୍ୟ ରୂପ ଶୋଭାର ଆଶ୍ରୟସ୍ଥଳ । ତ୍ରିତାପତପ୍ତ ଜନଗଣଙ୍କର ଏକମାତ୍ର ପରମାଶ୍ରୟ, ଲୀଳାର ଶ୍ରେଷ୍ଠରତ୍ନ । କାରୁଣ୍ୟଲୀଳାର ମାଣିକ୍ୟ ଏବଂ ପୂର୍ଣ୍ଣ ମାଧୁର୍ଯ୍ୟମୟ ବୁଦ୍ଧିଶାଳୀ ଶ୍ରୀଶ୍ୟାମାନନ୍ଦ ନାମକ ଦୟାନିଧି ବିଜୟଲଭ କରୁଛନ୍ତି ।। ୨ ।।

ନିବିଡ଼ ଆନନ୍ଦପ୍ରଦ ଉଜ୍ଜ୍ୱଳରସର ଶ୍ରୀବୃଦ୍ଧିଜନକ ଶ୍ରୀକୃଷ୍ଣଭବର ଝରଣି, ଚିତ୍ତର ଶାନ୍ତିକାରକ, ଅଜ୍ଞାନାନ୍ଧକାର ବିନାଶକ, ଭକ୍ତଗଣଙ୍କର ମଙ୍ଗଳ ବିଧାୟକ, ଦୁଃଖ ସମୂହର ସମୁଚ୍ଛେଦକ, ପରମାନନ୍ଦ ସମ୍ପାଦକ, କରୁଣା ରୂପ ସମ୍ପଦର ପ୍ରଜନକ, ଦୀନଜନଙ୍କର ସମୁଦ୍ଧାରକ ପ୍ରଭୁ ରସିକାନନ୍ଦ ରୂପ ଭାସ୍କରଙ୍କୁ ପ୍ରଣାମ କରେ । ୩ ।

ଶ୍ରୀବୈକୁଣ୍ଠାଧିଷ୍ଠାତା ଭଗବାନ ନାରାୟଣଙ୍କର ଚତୁର୍ବ୍ୟୂହ ଅନ୍ତର୍ଗତ ଶ୍ରୀଅନିରୁଦ୍ଧାବତାର ଶ୍ରୀରସିକ ମୁରାରିଙ୍କ ଅଲୌକିକ ବିଚିତ୍ର ଚରିତ୍ର ସତ୍ୟ ଓ ଅଚିନ୍ତ୍ୟ; ଯେହେତୁ ସେ ନିତ୍ୟସିଦ୍ଧ ଶ୍ରୀଭଗବତ ପାର୍ଷଦ ।

।। ଇତି ଷଷ୍ଠବୈଭବ ।।

# ସପ୍ତମ ବୈଭବ

## ( ଶ୍ରୀ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କର ଚରିତାସ୍ୱାଦନ )

ଶ୍ରୀମଦ ଅଦ୍ୱୈତବାତାର ଶ୍ରୀଶ୍ୟାମାନନ୍ଦ ପ୍ରଭୁ । ସେହି ପ୍ରଭୁ ଓ ତାହାଙ୍କର ପ୍ରିୟନର୍ମଶିଷ୍ୟ ଶ୍ରୀରସିକାନନ୍ଦ ପ୍ରଭୁଦ୍ୱୟଙ୍କ ଶ୍ରୀବୃନ୍ଦାବନ ଓ ଶ୍ରୀନବଦ୍ୱୀପ ଯୋଗପୀଠରେ ନିତ୍ୟ ଲୀଳାସ୍ଥଳୀରେ ମଞ୍ଜରୀ ସ୍ୱରୂପ ପ୍ରକାଶ ଓ ଶ୍ୟାମାନନ୍ଦୀ ବୈଷ୍ଣବ ସମ୍ପ୍ରଦାୟର ବୈଶିଷ୍ଟ୍ୟରେ ଶ୍ରୀଦେବାଳୟ ସମ୍ମୁଖରେ ସଂକୀର୍ତ୍ତନ ସମୟରେ ବାମାବର୍ତ୍ତ ପରିବର୍ତ୍ତେ ଦକ୍ଷିଣାବର୍ତ୍ତ ପ୍ରଦକ୍ଷିଣ ପ୍ରଭୃତି ନବଧା ଭକ୍ତିର ଯାଜନ ବିଶ୍ୱବାସୀ ବୈଷ୍ଣବଜନଙ୍କର ଆଚାର ଓ ପ୍ରଚାର ମାଧ୍ୟମରେ ବିଶ୍ୱବନ୍ଦିତ ହୋଇ ରହିଛନ୍ତି ।

ସର୍ବାବତାରୀ ନନ୍ଦନନ୍ଦନ ଶ୍ରୀକୃଷ୍ଣ ଚତୁର୍ଦ୍ଦଶ ମନୁଙ୍କର ସପ୍ତମ ଓ ଅନ୍ୟତମ ବୈବସ୍ୱତ ମନୁଙ୍କର ଅଷ୍ଟବିଂଶ ମହାଯୁଗାନ୍ତର୍ଗତ କଳିର ୪୫୮୬ ସମ୍ବତ୍ସର ଗତ ହେଲା ପରେ ୫୦୦ ବର୍ଷ ପୂର୍ବେ ସର୍ବୋତ୍ତମ ଲୀଳାତନୁ ପ୍ରକଟ କରି ଶ୍ରୀବୃନ୍ଦାରଣ୍ୟ ଅଭିନ୍ନ ଶ୍ରୀନବଦ୍ୱୀପ ଧାମର ସୁରଧୁନି ତଟଦେଶରେ ରାଧାଭାବଦ୍ୟୁତି ସୁବଳିତ ତନୁ ଅଙ୍ଗୀକାର କରି ତିନି ବାଞ୍ଛାପୂରଣ ମାନସରେ ଶୁଭ ଫାଲ୍‌ଗୁନୀ ପୂର୍ଣ୍ଣିମା ସନ୍ଧ୍ୟାରେ ଶଚୀସୁତ ମହାପ୍ରଭୁ ଶ୍ରୀଗୌରଚନ୍ଦ୍ର ଉଦୟ ହେଲେ–ସେହି ପ୍ରସଙ୍ଗରେ ଶ୍ରୀଶ୍ୟାମାନନ୍ଦ ପ୍ରଭୁଙ୍କ ଉକ୍ତିଟି ମନେପଡ଼େ–

ଗୋଲୋକ ବୈଭବ ତ୍ୟଜି, କୀର୍ତ୍ତନେ ପସର ସାଜି  
ଅବନୀତେ କରଲ ବିହାର ।  
ଆପନାର ଗୁଣେ ନାଚେ, ପ୍ରେମେର ଭଣ୍ଡାର ଯାଚେ  
ଜଗଜ୍ଜୀବେ କରିତେ ଉଦ୍ଧାର ॥

ନିତ୍ୟଲୀଳା-ସହଚର ଓ ପ୍ରିୟନର୍ମ ସଖା ଶ୍ରୀସୁବଳାବତାର ଶ୍ରୀଳ ଗୌରୀଦାସ ପଣ୍ଡିତ ଠାକୁରଙ୍କ ନିଜ ଗୃହରେ ଭକ୍ତି ଓ ଭକ୍ତବଶ ଶ୍ରୀ ଗୌରାଙ୍ଗ ଓ ଶ୍ରୀ ନିତ୍ୟାନନ୍ଦ ନିତ୍ୟଲୀଳା ଅଙ୍ଗୀକାର କରି ଅଦ୍ୟାବଧି ବିରାଜମାନ । ଶ୍ରୀ ମନ୍ମହାପ୍ରଭୁଙ୍କର କୃପାସିକ୍ତ ଅଷ୍ଟଗୋସ୍ୱାମୀଗଣ ଶ୍ରୀବୃନ୍ଦାବନର ନିକୁଞ୍ଜ କାନନରେ ଶ୍ରୀରାଧାମାଧବଙ୍କର ଲୀଳା ଆସ୍ୱାଦନ, ଶୁଦ୍ଧ ଭକ୍ତିଗ୍ରନ୍ଥ ପ୍ରଣୟନ, ଚୌରାଶୀ କ୍ରୋଶ ବ୍ରଜମଣ୍ଡଳରେ ଲୁପ୍ତତୀର୍ଥ ଉଦ୍ଧାର ଓ ରାଗାନୁଗା ପ୍ରେମଭକ୍ତିର ଆଚରଣ ଓ ପ୍ରଚାରରେ ନିବିଷ୍ଟ ଥିବା ସମୟରେ ଶ୍ରୀନିବାସ, ନରୋତ୍ତମ ଓ ଶ୍ୟାମାନନ୍ଦ (ଦୁଃଖୀ କୃଷ୍ଣଦାସ) ବ୍ରଜଧାମରେ ଉପନୀତ

ହୋଇ ଶ୍ରୀଗୋସ୍ୱାମୀବର୍ଗଙ୍କର ଶ୍ରୀଚରଣରେ ଆଶ୍ରୟଲାଭ କରନ୍ତି । ତତ୍‌କାଳୀନ ସାର୍ବଭୌମାଚାର୍ଯ୍ୟ ପ୍ରବର ଶ୍ରୀଳ ଶ୍ରୀଜୀବଗୋସ୍ୱାମୀ ପାଦଙ୍କର ନିର୍ଦ୍ଦେଶ ଓ ଉପଦେଶରେ ଶ୍ରୀ ରାଧାଗୋବିନ୍ଦଙ୍କର ନିତ୍ୟ ସେବାକାର୍ଯ୍ୟ ଓ ନିଗମସିଦ୍ଧାନ୍ତ ଶ୍ରୌତଶାସ୍ତ୍ରାଦି ଅଧ୍ୟୟନରେ ବ୍ୟାପୃତ ରହିଲେ । ଶ୍ରୀନିବାସ ଓ ଶ୍ରୀ ନରୋତ୍ତମଙ୍କ ସହ ଏକତ୍ରଭାବେ ରହି ଶ୍ରୀ ଶ୍ୟାମାନନ୍ଦପ୍ରଭୁ ଶ୍ରୀଗୁରୁକୃପାଲାଭର ପରାକାଷ୍ଠାସ୍ୱରୂପ ଶ୍ରୀ ରାଧାରାଣୀଙ୍କର ଶ୍ରୀଚରଣର ନୂପୁର ନିକୁଞ୍ଜବନ ମଧ୍ୟସ୍ଥ ନିତ୍ୟ ରାସସ୍ଥଳୀରେ ପ୍ରାପ୍ତିର ସୌଭାଗ୍ୟଲାଭ କରିଥିଲେ ।

ଶ୍ରୀଧାମ ବୃନ୍ଦାବନର ନିକୁଞ୍ଜବନରେ ଦ୍ୱାଦଶ ବର୍ଷ ସମ୍ମାର୍ଜନୀ ସେବା କରି ବୈଷ୍ଣବାଚାର୍ଯ୍ୟଗଣଙ୍କର କୃପାସିକ୍ତ ହୋଇ ଆଚାର୍ଯ୍ୟ ଠାକୁର ଓ ପ୍ରଭୁ ଶ୍ୟାମାନନ୍ଦ ଶ୍ରୀବୃନ୍ଦାବନରୁ ଭକ୍ତିଗ୍ରନ୍ଥ ପ୍ରଚାର ଉଦ୍ଦେଶ୍ୟରେ ଗୌଡ଼ୋତ୍କଳ ପ୍ରଭୃତି ଦେଶକୁ ଆଗମନ କରି ପାଷଣ୍ଡୀ ଜୀବର ଉଦ୍ଧାରରେ ବ୍ରତୀ ହେଲେ । ବିଷ୍ଣୁପୁରର ରାଜା ବୀରହାମ୍ବୀର କର୍ତ୍ତୃକ ଭକ୍ତିଗ୍ରନ୍ଥ ଚୋରି ସମ୍ବାଦରେ ଶ୍ରୀବୃନ୍ଦାବନସ୍ଥ ଗୋସ୍ୱାମୀଗଣ ଓ ଆଚାର୍ଯ୍ୟବର୍ଗ ମର୍ମାହତ ଓ ଶୋକରେ ନିମଜ୍ଜିତ ହେଲେ । ପରେ ବିଷ୍ଣୁପୁରରେ ଗ୍ରନ୍ଥ ଉଦ୍ଧାର କରି ଶ୍ରୀବ୍ରଜମଣ୍ଡଳକୁ ସମ୍ବାଦ ପଠାଇଲେ; କିନ୍ତୁ ଶ୍ରୀଶ୍ୟାମାନନ୍ଦପ୍ରଭୁ ଦ୍ୱିତୀୟଥର ଶ୍ରୀବୃନ୍ଦାବନକୁ ଯାଇ ଗ୍ରନ୍ଥଚୋରି ଓ ଗ୍ରନ୍ଥୋଦ୍ଧାର ବିଷୟ ସବିସ୍ତାର ବର୍ଣ୍ଣନ କରିବାରୁ ସମସ୍ତେ ପରମ ଶାନ୍ତିଲାଭ କଲେ ।

ଶ୍ରୀଶ୍ୟାମାନନ୍ଦ ପ୍ରଭୁ ଶ୍ରୀ ବୃନ୍ଦାବନରେ ଶ୍ରୀ ମଦନଗୋପାଳଙ୍କର ସ୍ୱପ୍ନାଦେଶ ଏବଂ ଶ୍ରୀଳ ଶ୍ରୀଜୀବଗୋସ୍ୱାମୀଙ୍କର ଅନୁମତି ଲାଭ କରି ଗୌଡ଼ୋତ୍କଳକୁ ଆସି ଶ୍ରୀରସିକଙ୍କୁ ଶିଷ୍ୟତ୍ୱରେ ଅଙ୍ଗୀକାର କରି ଉତ୍କଳଭୂମି ଉଦ୍ଧାର ଏବଂ ପାଷଣ୍ଡଦଳନ ତଥା ପ୍ରେମଭକ୍ତି ପ୍ରଚାର ମାଧ୍ୟମରେ ନିଜ ଭକ୍ତିସିଦ୍ଧାନ୍ତ ସ୍ଥାପନ କରନ୍ତି ଏବଂ କଳିହତ ଜୀବଜଗତର ଚିରକଲ୍ୟାଣର ପାଥେୟ ସନ୍ଧାନର ଉପାୟ ପ୍ରଦର୍ଶନ କରିଛନ୍ତି । ମହାବିଷ୍ଣୁଙ୍କର ଅବତାର ଶ୍ରୀ ଅଦ୍ୱୈତାଚାର୍ଯ୍ୟଙ୍କର ସାକ୍ଷାତ୍ ବିଗ୍ରହ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଶ୍ରୀ ମନ୍ମହାପ୍ରଭୁଙ୍କର ଲୀଳାସଙ୍ଗୋପନ ପରେ ହିଁ ଗୌଡ଼ ଓ ଉତ୍କଳର ସଙ୍ଗମସ୍ଥଳ ଝାଡ଼ଖଣ୍ଡ ସନ୍ନିହିତ ଗଡ଼ମନ୍ଦାରଣ ଅଞ୍ଚଳରେ କଂସାବତୀ ନଦୀ ଅବବାହିକାରେ ଖାଲଶିଉଲି ନାମକ ଖର୍ବା ନଦୀକୂଳରେ ଓ ହୀରସାଗରର ଉତ୍ତର ତୀରରେ ବାହାଦୁର-ପୁର ପ୍ରଗଣାର ଧାରେନ୍ଦାନଗରରେ ବର୍ତ୍ତମାନ ଖଡ଼ଗପୁର ଠାରୁ ତିନିମାଇଲ ଦୂର ଓ କଲାଇକୁଣ୍ଡା ସାମରିକ ବିମାନ ବନ୍ଦରର ଉତ୍ତରରେ ଅନତିଦୂରରେ ଅବସ୍ଥିତ ଗ୍ରାମରେ ସଦ୍‌ଗୋପକୁଳ ଭୂଷଣ ମଣ୍ଡଳଙ୍କ ଔରସରେ ଦୁରିକାଦେବୀଙ୍କ ଗର୍ଭରେ ଶୁଭ ଚୈତ୍ର ମଧୁପୂର୍ଣ୍ଣିମା ତିଥିରେ ଭବିଷ୍ୟଦୁଜ୍ଜ୍ୱଳ ସମ୍ଭାବନାମୟ ଶିଶୁ ଶ୍ୟାମାନନ୍ଦ ଆବିର୍ଭୂତ ହୁଅନ୍ତି । ଶଶୀକଳା ନ୍ୟାୟ ବାଲ୍ୟ, ଶୈଶବ ଓ କୈଶୋର ଅବସ୍ଥାରେ ପିତୃଗୃହ

ଧାରେଦାରେ ଶ୍ରୀକୃଷ୍ଣ ସ୍ମରଣ ଓ କୀର୍ତ୍ତନ ଆଳାପନରେ ଅତିବାହିତ କରି ଯୌବନରେ ପଦାର୍ପଣ କାଳରେ ଗୃହସଂସାର ବିଷୟରେ ତାଙ୍କର ବୈରାଗ୍ୟ ଦର୍ଶନ କରି ମାତା-ପିତାଙ୍କ ମନ ଆକୁଳ ହୋଇ ଉଠବାରୁ ସର୍ବସୁଲକ୍ଷଣା ଗୌରାଙ୍ଗଦାସୀ ସହିତ ପରିଣୟ ସୂତ୍ରରେ ଆବଦ୍ଧ ହୁଅନ୍ତି । ଶୁଭକ୍ଷଣରେ ମାତାପିତାଙ୍କ ଅନୁମତି ନେଇ ଗୃହ-ବୈଭବ ସ୍ତ୍ରୀ-ପରିବାର-ପରିଜନ ପରିତ୍ୟାଗ କରି ଶ୍ରୀ ଗୁରୁଚରଣାଶ୍ରୟ ମାନସରେ ଅନୁରାଗଭରେ ଦିଗବିଦିଗ ଜ୍ଞାନଶୂନ୍ୟ ହୋଇ ପ୍ରାଣର ଆବେଗରେ ଦ୍ରୁତଗତିରେ ସେହି ରାତ୍ରିରେ ହିଁ ବହୁ ପଥ ଅତିକ୍ରମ କଲେ । ନଦନଦୀ, ପଲ୍ଲୀପ୍ରାନ୍ତର, ଦୁର୍ଗମ ବନଭୂମି ମଧ୍ୟ ଦେଇ ସହାୟହୀନ ଅବସ୍ଥାରେ ଶ୍ରୀ ଗୁରୁଚରଣ ଏକମାତ୍ର ଭରସା ଓ ଶ୍ରୀକୃଷ୍ଣନାମ ହିଁ ଏକ-ମାତ୍ର ସମ୍ବଳକୁ ପାଥେୟ କରି ଶ୍ରୀମୁଖରେ ଶ୍ରୀକୃଷ୍ଣ ଗୁଣଗାନ କରୁ କରୁ ବାମଦିଗର ଗଙ୍ଗାକୂଳ ପଥ ପରିତ୍ୟାଗ କରି ପୂର୍ବ-ଉତ୍ତର ଅଭିମୁଖରେ ନାଡ଼ାଜୋଲ, ନେଡ଼ାଦେଉଳ ଓ ଚେତୁୟାନଗର ପାର ହୋଇ ଶ୍ରୀଳ ଅଭିରାମ ଠାକୁରଙ୍କର ଶ୍ରୀପାଟ ଖାନାକୁଲ-କୃଷ୍ଣନଗରରେ ଶ୍ରୀ ଗୋପୀନାଥଜୀଉଙ୍କର ଦର୍ଶନ କରି ନେତ୍ର ଓ ମନ ସଫଳ କଲେ । ସେଠାରୁ ବାହାରି ରାସ୍ତାରେ ସୁଧାମଣ୍ଡିତ ଶ୍ରୀକୃଷ୍ଣ ନାମ ପାନ କରୁ କରୁ ଚିରବାଞ୍ଛିତ ଅମ୍ବିକାକାଲନାରେ ପହଞ୍ଚି ଶ୍ରୀ ଗୌରୀଦାସଙ୍କର ପ୍ରାଣଧନ ଶ୍ରୀ ନିତାଇ-ଗୌର ମନ୍ଦିରରେ ଏକ ମହାନିଶାରେ ଉପସ୍ଥିତ ହୋଇ ଧୂଳିରେ ଗଡ଼ାଗଡ଼ି ଓ ମୂର୍ଚ୍ଛା ଚୁମ୍ବନକାଳରେ ତନ୍ଦ୍ରାଦେବୀ ଆକର୍ଷଣ କରେ ଦୁଃଖିଙ୍କୁ ।

ବ୍ରାହ୍ମମୁହୂର୍ତ୍ତ ଅରୁଣୋଦୟରେ ଶ୍ରୀଗୁରୁପାଦପଦ୍ମ ଧ୍ୟାନ ଓ ମୁଖରେ ଶ୍ରୀରାଧା-ଗୋବିନ୍ଦ ନାମଗାୟନ କରୁ କରୁ ସାତ୍ତ୍ୱିକ ଭାବରେ ଶ୍ରୀରାସମଣ୍ଡଳରେ ଝାଡ଼ୁସେବାରତଥିବା ସମୟରେ ଶ୍ରୀହୃଦୟ ଚୈତନ୍ୟ ଠାକୁର ନବକିଶୋର ରୂପ ଦୁଃଖୀର କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ପ୍ରଶଂସା କଲେ ଓ ନିଜ ନିକଟକୁ ଡାକିଆଣି ପରିଚୟ ଜାଣି ସେହି ଆଶ୍ରମରେ ରହିବାକୁ ସ୍ଥାନ ଦେଲେ । କିଛିଦିନ ପରେ ଦୁଃଖୀର ଭକ୍ତିନିଷ୍ଠା ଓ ସଦାଚରଣରେ ସନ୍ତୁଷ୍ଟ ହୋଇ ଶ୍ରୀ ଗୌର-ନିତାଇଙ୍କର ସେବାନୁକୂଲ୍ୟରେ ନିୟୋଗ କଲେ । କିଛିଦିନ ପରେ ଦୁଃଖୀର ମନୋଭାବ ବୁଝି କାହାର ସେବକ ସେ, ଜାଣିବାକୁ ଚାହିଁବାରୁ ଦୁଃଖୀ କହିଲେ—"ଆପଣଙ୍କ ଶ୍ରୀଚରଣ-କମଳ ହିଁ ମୋର ଏକମାତ୍ର ଗତି ଓ ଏହି ଦାସ ଆପଣଙ୍କ ଶ୍ରୀଚରଣରେ ଆଶ୍ରୟପ୍ରାର୍ଥୀ ହେବାକୁ ଆସିଛି ।"

କେହ ନାହିଁ ସଂସାରେ ପ୍ରଭୁ ମୁଇଁ ଅତି ଦୀନ ।
କହିବାର ଯୋଗ୍ୟ ନହେ ତାହେ ଭକ୍ତିହୀନ ।।
ତୋମା ବିନା ପତିତପାବନ କେବା ହୟ ।
କୃପାକରି ଦେହ ଅଭୟ ଚରଣ ଆଶ୍ରୟ ।।

(ପ୍ରେମ ବିଳାସ)

ବାଣୀହାଟି ପ୍ରଗଣାରେ ଅବସ୍ଥିତ ଅମ୍ବିକାରେ (କାଲ୍‌ନାରେ) ଶ୍ରୀ ଗୌରୀଦାସ ପଣ୍ଡିତ ଠାକୁରଙ୍କର ପ୍ରାଣସର୍ବସ୍ୱ ଶ୍ରୀ ନିତାଇ ଗୌରଙ୍କର ସେବାଧିକାରୀ ହେବାକୁ ହେଲେ ପ୍ରଥମେ ଦୀକ୍ଷା ଗ୍ରହଣ ପ୍ରୟୋଜନ । ସେଥିପାଇଁ ଦୁଃଖୀ ପ୍ରତି ସଦୟ ହୋଇ ଶ୍ରୀହୃଦୟ ଚୈତନ୍ୟ ଠାକୁର ଶରଣାଗତ ଦୁଃଖୀଙ୍କୁ ଶ୍ରୀକୃଷ୍ଣମନ୍ତ୍ରରେ ଦୀକ୍ଷାଦାନ କରି "ଦୁଃଖୀ କୃଷ୍ଣଦାସ" ନାମ ଦେଇ ଶ୍ରୀ ବିଗ୍ରହସେବାର ଅଧିକାର ଦାନ କରନ୍ତି । ଏହି ରୂପେ ଶ୍ରୀ ହରିଗୁରୁ ବୈଷ୍ଣବ କୃପାଲାଭରେ ଆଶୀର୍ବାଦପୁଷ୍ଟ ହୋଇ ପରେ ଗୁରୁଗୃହରେ ନିତ୍ୟସେବାର ପ୍ରାକ୍‌କାଳରେ ନିତ୍ୟସିଦ୍ଧ ଦୁଃଖୀ କୃଷ୍ଣଦାସଙ୍କର ନିତ୍ୟ ଚିନ୍ମୟୀଭୂମି ଶ୍ରୀ ବୃନ୍ଦାବନ ଦର୍ଶନ ମାନସପଟରେ ସମୁଦିତ ହେବାରୁ ଶ୍ରୀଗୁରୁପାଦପଦ୍ମଙ୍କ ଆଜ୍ଞାରେ ଶ୍ରୀଳ ଶ୍ରୀଜୀବ ଗୋସ୍ୱାମୀ ପ୍ରଭୁଙ୍କର ଚରଣରେ ଆଶ୍ରୟଲାଭର ଆକାଙ୍କ୍ଷାରେ ବହିର୍ଗତ ହୋଇ ନିତ୍ୟ ମାଧୁର୍ଯ୍ୟଲୀଳା ଆସ୍ୱାଦନର ଉତ୍କଣ୍ଠା ପ୍ରବଳ ବଳବତୀ ହେବାରୁ କିଛିଦିନ ପରେ ଶ୍ରୀବ୍ରଜମଣ୍ଡଳସ୍ଥ ଗିରିରାଜ ଗୋବର୍ଦ୍ଧନ ଦର୍ଶନ କରି ଶ୍ରୀରାଧାକୁଣ୍ଡ-ତୀରରେ ବିଭକ୍ତ ବୈଷ୍ଣବ ଚୂଡ଼ାମଣି ଶ୍ରୀଳ ରଘୁଦାସ ଗୋସ୍ୱାମୀଙ୍କର ଶ୍ରୀଚରଣାଶ୍ରୟ କରିବାର କୃପା ଓ ଇଙ୍ଗିତ ପାଇ ଶ୍ରୀବୃନ୍ଦାବନର ନିଧୁବନରେ ଅବସ୍ଥାନ ଓ ନିକୁଞ୍ଜ କାନନରେ ଶ୍ରୀରାସମଣ୍ଡଳ ମାର୍ଜନର ସେବାଲାଭ କରନ୍ତି । ଯେଉଁ ସେବା ବିଶ୍ୱବ୍ରହ୍ମାଣ୍ଡର ଦୁଷ୍ପ୍ରାପ୍ୟ, ଦେବତାଗଣଙ୍କର ଅଗୋଚର ଓ ଶିବବ୍ରହ୍ମାଦିଙ୍କ ଆରାଧ୍ୟବସ୍ତୁ ଶ୍ରୀଗୋବିନ୍ଦଙ୍କର [illegible] ହ୍ଲାଦିନୀସ୍ୱରୂପିଣୀ ଶ୍ରୀରାଧାରାଣୀଙ୍କର ରାତୁଳ ଚରଣର ନୂପୁର ପ୍ରାପ୍ତିର ଏକମା[illegible] ଦୁଃଖୀ ସୌଭାଗ୍ୟ ଏକମାତ୍ର ଦୁଃଖୀ କୃଷ୍ଣଦାସ ହିଁ ପାଇଥିଲେ । ଓଡ଼ିଶାରେ ବୈଷ୍ଣବ[illegible] ହଜ ସଂଗଠନ ଓ ପ୍ରସାର ଶ୍ରୀ ଶ୍ୟାମାନନ୍ଦଙ୍କର ଏକ ଅବିସ୍ମରଣୀୟ ବିରାଟ କୀର୍ତ୍ତି [illegible] ଜୀଙ୍କର ଏହି କର୍ମକେନ୍ଦ୍ରରୁ ମଝିରେ ମଝିରେ ସେ ବୃନ୍ଦାବନକୁ ଆସୁଥିଲେ । ଶ୍ରୀଜୀବ [illegible] ପ୍ରାନ୍ତରେ ବସି ବୈଷ୍ଣବଶାସ୍ତ୍ର ଓ ସାଧନାର ନିଗୂଢ଼ତତ୍ତ୍ୱ ଆହରଣ କରି[illegible] ନିଜ ଦେଶକୁ ।

[illegible] "ରାଧେ ! ଯଦି ଏଇ [illegible]ସ୍ୱରୂପ ଦେଖାଇ କୃତାର୍ଥ କରନ୍ତୁ

ପାଣ୍ଡିତ୍ୟ ଅଧ୍ୟାତ୍ମସାଧନର ବିଘ୍ନ ହୋଇ [illegible]ଥିଲେ, "ତୁମର ଏଇ ପ୍ରାକୃତ ଦୟ ସାଧନ—ଜୀବନରେ ବିରଳ । କିନ୍ତୁ [illegible]ରୂପ କି ପ୍ରକାରେ ଦର୍ଶନ କରିବ ?" ପରସ୍ପର ବିରୋଧୀ ଧର୍ମଦ୍ୱୟର ଏକତ୍ର [illegible] କ୍ରନ୍ଦନ ଓ ଆର୍ତ୍ତିରେ ସଙ୍ଗିନୀ ଲଳିତାଦେବୀଙ୍କର ମନେ କରୁଥିଲେ—ନିଷ୍ଠା ସହିତ [illegible]

ନିକୁଞ୍ଜ ମନ୍ଦିରରେ [illegible]

ଅନ୍ତରର ଆ[illegible]ଥିରି ସେ ମୁହଁ ଖୋଲିଲେ । କହିଲେ, "ଓଗୋ ପ୍ୟାରୀଜି ! ତୁମ କୃପା ଭଣ୍ଡାରର ଗୁବି ଖୋଲି କୃଷ୍ଣଦାସଙ୍କ ନୟନ ସମ୍ମୁଖରେ ଉନ୍ମୋଚିତ କର ଅତୀନ୍ଦ୍ରିୟ ଲୋକର ସିଂହଦ୍ୱାର ; ଦର୍ଶନ କରୁ କୃଷ୍ଣଦାସ ତୁମ ହ୍ଲାଦିନୀଶକ୍ତିର ଅନନ୍ତ ପ୍ରକାଶ । ଚକିତ ମାତ୍ରକର ଦର୍ଶନ । କିନ୍ତୁ ସମଗ୍ର ସତ୍ତା ଦିବ୍ୟ ଆନନ୍ଦରେ ପରିପୂର୍ଣ୍ଣ

ଦେବୀଙ୍କର କୃପା ହେବ—ସଖୀମଞ୍ଜରୀ ପରିବୃତ ରାଧାଗୋବିନ୍ଦଙ୍କର ଅପ୍ରାକୃତ ନିକୁଞ୍ଜବିହାର କେବେ ଦର୍ଶନ କରିବେ—ଏହିଁଲାଗି ଦିନ ଗଣିଚାଲିଲେ । ରାତ୍ରି ସେତେବେଳେ ଶେଷ ଯାମ । ଦୁଃଖୀ କୃଷ୍ଣଦାସ ନିଦ୍ରାରୁ ଉଠି ସମ୍ମାର୍ଜନୀ ହସ୍ତରେ ନିକୁଞ୍ଜ ମନ୍ଦିର ମାର୍ଜନ କରୁଛନ୍ତି; ହଠାତ୍ ଦେଖିଲେ—ଅଙ୍ଗନର ଗୋଟିଏ କୋଣରେ ଏକ ଅତ୍ୟୁଜ୍ଜଳ ବସ୍ତୁ ପଡ଼ିରହିଛି ! ଶୀଘ୍ର ସେ ଦିଗକୁ ସେ ଆଗେଇଗଲେ । କିନ୍ତୁ ଏ କି ଅଦ୍ଭୁତ ବ୍ୟାପାର ! ଏ ଯେ ଗୋଟାଏ ଅପରୂପ ସୁବର୍ଣ୍ଣ ନୂପୁର ! ଶେଷ ରାତ୍ରିର ଅସ୍ଫୁଟ ଆଲୋକରେ ମଧ୍ୟ ଏହା ଜଳ ଜଳ କରୁଛି । ଏ ନୂପୁର ଦର୍ଶନ ପରେ ହିଁ ତାଙ୍କ ହୃଦୟରେ ଜାଗିଲା ଏକ ଅପୂର୍ବ ପ୍ରେମବିହ୍ୱଳତା । ଭୂମିରେ ପଡ଼ି କେବଳ ଗଡ଼ାଗଡ଼ି ଦେବାକୁ ଲାଗିଲେ, ଆଉ ଅଶ୍ରୁକମ୍ପାଦି ଭାବବିକାରରେ ତାଙ୍କର ତନୁ ପୁଲକିତ ହେବାକୁ ଲାଗିଲା । କିଛିକ୍ଷଣ ପରେ ବାହ୍ୟଜ୍ଞାନ ଫେରିଆସିବାରୁ ଉଠିବସିଲେ । ସୁନାର ନୂପୁରଟି ସେ ଭକ୍ତିଭାବରେ କରପୁଟରେ ତୋଳିନେଲେ । ପୁଣି ଏକ ଆଶ୍ଚର୍ଯ୍ୟକାଣ୍ଡ ! ଅପରୂପ ଔଜ୍ଜ୍ୱଲ୍ୟ ସହିତ ଏକ ଦିବ୍ୟ ସୌରଭ ମଧ୍ୟ ତହିଁରୁ ବାହାରୁଛି । ଦୁଃଖୀ କୃଷ୍ଣଦାସଙ୍କ ଅନ୍ତରରେ ଜାଗ୍ରତ ହେଲା ଗୋଟିଏ ପରମ ଉପଲବ୍ଧି । ଏ ସ୍ୱର୍ଣ୍ଣନୂପୁର ତ କୌଣସି ପ୍ରାକୃତିକ ବସ୍ତୁ ନୁହେଁ । ଅନ୍ତରାତ୍ମା ମଧ୍ୟରୁ କେହି ଯେପରି ଡାକି କହୁଛି—ଆରେ ! ପରମ ଭାଗ୍ୟବାନ ତୁ । ପାଇଛୁ ପ୍ରିୟାଜୀଙ୍କର ଚରଣ ନୂପୁର !

ଦୁଃଖୀ କୃଷ୍ଣଦାସ ସାଶ୍ରୁ ନୟନରେ ଓ ସଖେଦରେ କହିଚାଲିଲେ- କୃପାମୟି ଗୋବିନ୍ଦ ମୋ କଙ୍ଗାଳ ପ୍ରତି କୃପା ଯଦ ନେଲା ; ତେବେ ନୂପୁର ଦେଇ ଭୁଲାଇ ସମୟରେ ଶ୍ରୀହ୍ର ଶ୍ରୀଚରଣ-କମଳ ଦଅ । ଦୟାକରି ଆବିର୍ଭୂତା ହୁଅ । କିନ୍ତୁ ଏ ହୋଇ ପ୍ରଶଂସା ବିସ୍ମୟ ଉପରେ ଆଉ ଏକ ବିସ୍ମୟ ! ଭାବବିହ୍ୱଳ ସାଧକର ରହିବାକୁ ସ୍ଥାନ ଦେଲେନି ଦିବ୍ୟଲୀଳାର ଦୃଶ୍ୟପଟ ଉନ୍ମୋଚିତ ହେଲା ? ଦର୍ଶ- ସନ୍ତୁଷ୍ଟ ହୋଇ ଶ୍ରୀ ସୁନ୍ଦରୀ ବାଳିକା ଚଞ୍ଚଳ ପଦରେ ନିକୁଞ୍ଜ ମନ୍ଦିରର କିଛିଦିନ ପରେ ଦୁଃଖୀର ମନୋମଧ୍ୟ କୃଷ୍ଣଦାସଙ୍କୁ ସୁମଧୁର ସ୍ୱରରେ ସେ ଜିଜ୍ଞାସା ଦୁଃଖୀ କହିଲେ—"ଆପଣଙ୍କ ଶ୍ରୀଚରଣ ପାଇଛନ୍ତି କି ? କୃଷ୍ଣଦାସ ପୁଲକିତ ଦେହରେ ଦାସ ଆପଣଙ୍କ ଶ୍ରୀଚରଣରେ ଆଶ୍ରୟପ୍ରାର୍ଥୀ । କିନ୍ତୁ ଏହା କାହାର, କହିପାରିବ ?

ସଙ୍ଗିନୀଙ୍କର ଗୋଟିଏ
ପ୍ରେମସରେ ତରୁଣୀ ;
ମୋତେ

କେହ ନାହିଁ ସଂସାରେ ପ୍ରଭୁ ମୁଇଁ
କହିବାର ଯୋଗ୍ୟ ନହେ ତାହେ ଭକ୍ତିହୀନ
ତୋମା ବିନା ପତିତପାବନ କେବା ହୟ ।
କୃପାକରି ଦେହ ଅଭୟ ଚରଣ ଆଶ୍ରୟ ।।

(ପ୍ରେମ ବିଳାସ)

ବିଶ୍ୱାସ କରିବି । ଯଦି ସତକୁ ସତ ଏଇଟି ଆପଣଙ୍କ ସଖୀଙ୍କର ହୋଇଥାଏ, ତେବେ ତାଙ୍କର ଚରଣରେ ମୁଁ ଏହାକୁ ସ୍ୱହସ୍ତରେ ପିନ୍ଧାଇଦେବି; ନ ହେଲେ ଏହା ଯାଇବ ନାହିଁ । ଦୁଃଖୀ ନିଜ ସିଦ୍ଧାନ୍ତରେ ଅବିଚଳ । ବାଳିକାଟି ଏହାପରେ ଅନ୍ତର୍ହିତା ହୋଇ ଯାଆନ୍ତି; କିନ୍ତୁ କିଛିକ୍ଷଣ ପରେ ପୁଣି ଫେରିଆସନ୍ତି । ଏଥର ସଙ୍ଗରେ ରହିଛନ୍ତି ରାଜନନ୍ଦିନୀ ସଖୀଟି । ଦୁଃଖୀ କୃଷ୍ଣଦାସଙ୍କ ଦେହରେ ଖେଳିଗଲା ଏକ ଅଦ୍ଭୁତ ପୁଲକ ଶିହରଣ । ନବାଗତା କିଶୋରୀଟିର ସାରା ଅଙ୍ଗରେ ଅପ୍ରାକୃତ ରୂପମାଧୁରୀ ଉଚ୍ଛ୍ୱଳିତ ।

ତାଙ୍କ ଆଡ଼କୁ ସେ ନିଷ୍ପଲକ ଦୃଷ୍ଟିରେ ଚାହିଁରହିଲେ । ଅତଃପର ପ୍ରଶ୍ନ କଲେ– ଆପଣମାନେ ଦୁଇ ସଖୀ ଗଭୀର ରାତ୍ରରେ ମନ୍ଦିର ପ୍ରାଙ୍ଗଣକୁ କାହିଁକି ଆସିଥିଲେ ? କହିବାକୁ ହେବ ମୋତେ । ସୁଧାସ୍ରାବୀ କଣ୍ଠରେ ନୂପୁରର ଅଧିକାରିଣୀ ଏଥର ନିଜେ ଉତ୍ତର ଦେଲେ–ବେଶି କିଛି କହିବାର କଣ ଅଛି ? ଏହାହିଁ ମୋର ନିକୁଞ୍ଜ ମନ୍ଦିର । ତୁମେ ଏଥର ସବୁ କିଛି ନିଜେ ହିଁ ବୁଝିନିଅ । ଆଉ ବିଳମ୍ବ ନ କରି ଶୀଘ୍ର ମୋ ନୂପୁର ଫେରାଇ ଦିଅ । ଦେଖ, ଭୋର ହୋଇଆସୁଛି । ସାଧକ କୃଷ୍ଣଦାସଙ୍କର ନୟନର ଆବରଣ ଯେପରି କେହି ଧୀରେ ଧୀରେ ଖୋଲିଦେଉଛି । ସର୍ବସତ୍ତା ଦେଇ ସେ ଉପଲବ୍ଧି କଲେ, ତାଙ୍କ ସମ୍ମୁଖରେ ଦଣ୍ଡାୟମାନା ଏହି ରାଜନନ୍ଦିନୀ ଆଉ କେହି ନୁହନ୍ତି, କୃଷ୍ଣପ୍ରିୟା ରାଧାରାଣୀ ! ସଙ୍ଗିନୀ କିଶୋରୀ ତାଙ୍କ ସଖୀ ଲଳିତାଦେବୀ । କୃପାକରି ଭାନୁଦୁଲାଲୀ ଆଜି ତାଙ୍କୁ ଦର୍ଶନ ଦେଇଛନ୍ତି । ହଜି ଯାଇଥିବା ନୂପୁର ଛଳରେ ଦୁଃଖୀ କୃଷ୍ଣଦାସର ଉଦ୍ଧାର ପାଇଁ ପ୍ରିୟାଜୀଙ୍କର ଏହି କାରୁଣ୍ୟଲୀଳା !

ଅଶ୍ରୁରୁଦ୍ଧ କଣ୍ଠରେ, ଯୁକ୍ତପାଣି କୃଷ୍ଣଦାସ ଜଣାଇଲେ, "ରାଧେ ! ଯଦି ଏଇ ଦାସାଧମକୁ ଏତେ କୃପାକଲେ, ତେବେ ଥରେ ନିଜ ସ୍ୱରୂପ ଦେଖାଇ କୃତାର୍ଥ କରନ୍ତୁ ଦେବି !" ପ୍ୟାରୀଜୀ ସ୍ମିତହାସ୍ୟ ସହକାରେ କହିଲେ, "ତୁମର ଏଇ ପ୍ରାକୃତ ଚକ୍ଷୁ ଦ୍ୱାରା ମୋର ଏଇ ଅପ୍ରାକୃତ ଚିନ୍ମୟ ରୂପ କି ପ୍ରକାରେ ଦର୍ଶନ କରିବ ?" ସେତେବେଳେ ଦୁଃଖୀ କୃଷ୍ଣଦାସଙ୍କର କ୍ରନ୍ଦନ ଓ ଆର୍ତ୍ତିରେ ସଙ୍ଗିନୀ ଲଳିତାଦେବୀଙ୍କର ଚିତ୍ତ ବିଗଳିତ ହୋଇଉଠିଲା ।

ଏଥର ସେ ମୁହଁ ଖୋଲିଲେ । କହିଲେ, "ଓଗୋ ପ୍ୟାରୀଜି ! ତୁମ କୃପା ଭଣ୍ଡାରର ଚାବି ଖୋଲି କୃଷ୍ଣଦାସଙ୍କ ନୟନ ସମ୍ମୁଖରେ ଉନ୍ମୋଚିତ କର ଅତୀନ୍ଦ୍ରିୟ ଲୋକର ସିଂହଦ୍ୱାର ; ଦର୍ଶନ କରୁ କୃଷ୍ଣଦାସ ତୁମ ହ୍ଲାଦିନୀଶକ୍ତିର ଅନନ୍ତ ପ୍ରକାଶ । ଚକିତ ମାତ୍ରକର ଦର୍ଶନ । କିନ୍ତୁ ସମଗ୍ର ସତ୍ତା ଦିବ୍ୟ ଆନନ୍ଦରେ ପରିପୂର୍ଣ୍ଣ

ହୋଇଗଲା । ପରକ୍ଷଣରେ ହିଁ ଶୁଣିଲେ, ପ୍ୟାରୀଜୀ ମଧୁର କଣ୍ଠରେ ତାଙ୍କୁ ଆଶୀର୍ବାଦ ଜଣାଇ କହୁଛନ୍ତି—"କୃଷ୍ଣଦାସ ! ତୁମର ଏକନିଷ୍ଠ ସେବା ଓ ଐକାନ୍ତିକୀ ଭକ୍ତିରେ ମୁଁ ପ୍ରସନ୍ନ ହୋଇଛି । ମୋ କୃପାର ଚିହ୍ନସ୍ୱରୂପ ନୂପୁର-ଚିହ୍ନିତ ତିଳକ ଆଜିଠାରୁ ତୁମର ଲଲାଟ ତଟଦେଶରେ ଚିରଭାସ୍ୱର ହେଉ । ଏଥର ଶ୍ରୀ ବ୍ରଜଭୂମିର ରଜଲିପ୍ତ ନୂପୁର ଗୁଚ୍ଛଟି ଦୁଃଖୀ କଷ୍ଣଦାସଙ୍କର ଲଲାଟ ପଟରେ ସ୍ପର୍ଶ କରାଇ ଶ୍ରୀ ରାଧାରାଣୀ ସଙ୍ଗିନୀ ସହ ଅନ୍ତର୍ହିତା ହେଲେ । ସଙ୍ଗେ ସଙ୍ଗେ କୃପାଲବ୍ଧ ଭକ୍ତ ସମ୍ବିତ୍ ହରାଇ ହେଲେ ଭୂଲୁଣ୍ଠିତ ।

ସଂଜ୍ଞା ଫେରିପାଇଲା ପରେ ଦୁଃଖୀ କହ୍ନୁ କାହ୍ନୁ ଶ୍ରୀଜୀବପାଦଙ୍କର ପଦପ୍ରାନ୍ତରେ ଆସି ଉପସ୍ଥିତ ହେଲେ । ଶ୍ରୀରାଧାରାଣୀଙ୍କର ଅଲୌକିକ ଦର୍ଶନଲାଭ ଓ ଅଯାଚିତ କୃପାଲାଭ ପ୍ରାପ୍ତି କଥା ପୁଲକାଞ୍ଚିତ ଦେହରେ ସବିସ୍ତାରରେ ବିବୃତି କଲେ । ବିବରଣ ଶୁଣି ଶ୍ରୀଜୀବଙ୍କର ନୟନରୁ ଝରିବାକୁ ଲାଗିଲା ପୁଲକାଶ୍ରୁ । କୃଷ୍ଣଦାସଙ୍କୁ ସେ ଆଶୀର୍ବାଦ ଓ ସମ୍ବର୍ଦ୍ଧନା ଜଣାଇଲେ ଏବଂ କହିଲେ "ବତ୍ସ ! ଆଜିଠାରୁ ତୁମ ନାମ ଆଉ ଦୁଃଖୀ କୃଷ୍ଣଦାସ ନୁହେଁ; ତୁମ ଦୁଃଖ ଯେ ଚିରଦିନ ଲାଗି ଦୂର ହୋଇଛି । ତୁମେ ବହୁଜନ ବାଞ୍ଛିତ ଶ୍ରୀୟାଜୀଙ୍କର ଅପାର୍ଥିବ କୃପା ପାଇଛ । ଆଜିଠାରୁ ତୁମର ନୂତନ ନାମ "ଗୋସ୍ୱାମୀ ଶ୍ୟାମାନନ୍ଦ" ହେଲା । ଶ୍ରୀମତୀଜୀଙ୍କର ନୂପୁର ଲାଞ୍ଛିତ ତିଳକ ଚିହ୍ନ ହିଁ ତୁମେ ତୁମର ଲଲାଟଦେଶରେ ଧାରଣ କରିବ ତିଳକ ଭୂଷଣ ରୂପେ । ଏଣେ ତାଙ୍କ ସମ୍ପର୍କରେ ନାନା କାହାଣୀ ପଲ୍ଲବିତ ହୋଇ ଠାକୁର ଶ୍ରୀହୃଦୟଚୈତନ୍ୟଙ୍କର କର୍ଣ୍ଣରେ ପ୍ରବେଶ କରିଛି । ସେଥର ଜଣେ ବୈଷ୍ଣବ ପଣ୍ଡିତ ବୃନ୍ଦାବନରୁ ଫେରି ତାଙ୍କୁ ଜଣାଇଲେ । "ଠାକୁର ! ଦୁଃଖୀ କୃଷ୍ଣଦାସ ଆପଣଙ୍କୁ ତ୍ୟାଗକରି ଅନ୍ୟ ଗୁରୁ ଆଶ୍ରୟ କରିଛନ୍ତି । କେବଳ ସେତିକି ନୁହେଁ ଆପଣଙ୍କ ପ୍ରଦତ୍ତ ନାମ ଓ ତିଳକ ପର୍ଯ୍ୟନ୍ତ ସେ ବଦଳାଇ ଦେଇଛନ୍ତି । "ଠାକୁର କ୍ରୁଦ୍ଧ ହୋଇ ଶ୍ରୀଳ ଶ୍ରୀଜୀବ ଗୋସ୍ୱାମୀଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖି ଜଣାଇଲେ ଯେ, ଅତି ସତ୍ୱର ଦୁଃଖୀ କୃଷ୍ଣଦାସଙ୍କୁ କାଲନାକୁ ପଠାଇ ଦେବାକୁ । ଶ୍ରୀଜୀବ ଗୋସ୍ୱାମୀ ତତକ୍ଷଣାତ ଶ୍ରୀଶ୍ୟାମାନନ୍ଦଙ୍କୁ କାଲନାକୁ ପଠାଇଦେଲେ ଏବଂ ଶ୍ୟାମାନନ୍ଦ ଆସି ଶ୍ରୀଗୁରୁପାଦପଦ୍ମରେ ପ୍ରଣାମ କରି କରଯୋଡ଼ରେ ଦଣ୍ଡାୟମାନ ହୋଇ ରହିଲେ । କ୍ରୁଦ୍ଧ ଶ୍ରୀଗୁରୁଦେବ ଉତ୍ତେଜିତ ହୋଇ ଶିଷ୍ୟ ଆଡ଼କୁ ତୀକ୍ଷ୍ଣଦୃଷ୍ଟିରେ ଅନାଇ ପ୍ରଶ୍ନ କଲେ—"ଉତ୍ତର ଦିଅ । ଗୁରୁପ୍ରଦତ୍ତ ନାମ ଓ ତିଳକ ତୁମେ କ ହିଁକି ପରିବର୍ତ୍ତନ କରିଛ ?" ଶ୍ରୀ ଶ୍ୟାମାନନ୍ଦ ସବିନୟରେ ନିବେଦନ କଲେ—"ଏସବୁ ତ ଆପଣଙ୍କ କୃପାରେ ହିଁ ସମ୍ଭବ ହୋଇଛି ।" କିନ୍ତୁ ଶ୍ରୀ ଗୁରୁଦେବ କୌଣସିମତେ ବୁଝିବାକୁ ଚାହିଁଲେ ନାହିଁ । କହିଲେ "ବର୍ତ୍ତମାନ ହିଁ ତିଳକ ପୋଛିପକାଅ ।" ସେତେବେଳେ ଶ୍ୟାମାନନ୍ଦ କହିଲେ ଯେ, ଆପଣ ସ୍ୱହସ୍ତରେ

ପୋଛି ଦିଅନ୍ତୁ । ଏ କଥା ଶୁଣି ଠାକୁର ଶ୍ରୀହୃଦୟ ଚୈତନ୍ୟ ଶ୍ୟାମାନନ୍ଦଙ୍କର ତିଳକ ପୋଛି ପକାଇବାକୁ ଶତଚେଷ୍ଟା କରି ମଧ୍ୟ ପୋଛିପାରିଲେ ନାହିଁ । ସେତେବେଳେ ଅନ୍ତର୍ଯାମୀ ଶ୍ରୀଗୁରୁଦେବ ବୁଝିଲେ ଯେ, ଶ୍ରୀ ରାଧାରାଣୀଙ୍କର ନୂପୁରର ରଜରଞ୍ଜିତ ଏହି ଦିବ୍ୟ ତିଳକ ସତକୁ ସତ ଅନପନେୟ । ଆଉ ତାଙ୍କ ଶିଷ୍ୟ ଶ୍ୟାମାନନ୍ଦ ଆଜି ସାଧନସିଦ୍ଧ । ଶ୍ରୀ ରାଧାରାଣୀଙ୍କର କୃପାଲବ୍ଧ ଓ ସର୍ବସିଦ୍ଧ ଶକ୍ତିରେ ଶକ୍ତିମାନ୍ । ତାଙ୍କର ନିଜର ହିଁ ଭୁଲ ହୋଇଛି । ତା'ପରେ ସାଶ୍ରୁନୟନରେ ଶିଷ୍ୟକୁ ଆଲିଙ୍ଗନାନ୍ତେ ଆଶୀର୍ବାଦ କଲେ ।

ଶ୍ୟାମାନନ୍ଦ ତିଳକର ପ୍ରମାଣ:—

ନାସାର୍ଦ୍ଧଂ କେଶ ପର୍ଯ୍ୟନ୍ତଂ ଊର୍ଦ୍ଧ୍ୱପୁଣ୍ଡ୍ରଂ ସୁଶୋଭନମ୍ ।
ମଧ୍ୟେ କୃପାବିନ୍ଦୁଯୁକ୍ତଂ ତିଳକଂ ଶ୍ୟାମମୋହନମ୍ ..

**ମନ୍ତ୍ର:**

ଶ୍ରୀ କନକମଞ୍ଜର୍ଯ୍ୟୈ ନମଃ (ସ୍ୱାହା)

**ଗାୟତ୍ରୀ:**

ଶ୍ରୀଂ ମଞ୍ଜର୍ଯ୍ୟୈ ବିଦ୍ମହେ ଶ୍ରୀରାଧାପ୍ରେମ ରୂପାୟୈ
ଧୀମହି ତନ୍ନୋ କନକମଞ୍ଜରୀ ପ୍ରଚୋଦୟାତ୍ ।

**ଧ୍ୟାନମ୍:**

ନବଦ୍ୱୀପେ ଯୋଗପୀଠେ କମଳ ବାୟବ୍ୟଦଳେ
କିଞ୍ଜଲ୍କଦଳମଧ୍ୟସ୍ଥ ରତ୍ନସିଂହାସନସ୍ଥିତମ୍ ।।
ଶ୍ୟାମାନନ୍ଦ ପ୍ରଭୁଂ ଧ୍ୟାୟେତ୍ ଗୌରପ୍ରିୟପ୍ରିୟଂମୁଦା "

**କନକମଞ୍ଜରୀ ଧ୍ୟାନମ୍:**

ବୃନ୍ଦାବନେ ଯୋଗପୀଠେ କମଳ ବାୟବ୍ୟଦଳେ ଶ୍ରୀକନକମଞ୍ଜରୀ

ଧ୍ୟାୟେତ୍—

କିଞ୍ଜଳ୍କଦଳମଧ୍ୟସ୍ଥ ରତ୍ନସିଂହାସନାସ୍ଥିତା ।
ଶ୍ୟାମପ୍ରିୟାପ୍ରିୟା ସେବ୍ୟା ମାଧୁର୍ଯ୍ୟଗୁଣମଣ୍ଡିତା ।।

## କନକମଞ୍ଜରୀ ସେବ୍ୟାଃ

ଶ୍ରୀ ରସିକାନନ୍ଦସ୍ୟ ଶ୍ରୀ ଶ୍ୟାମାନନ୍ଦ ବନ୍ଦନମ୍ :—

ଶ୍ୟାମେନୈବ ରସେନ ଯାସ୍ତିକଟୀମାନନ୍ଦୟତ୍ୟୁଲ୍ଲବାନ୍
ଶ୍ୟାମାନନ୍ଦ ଇତୀରୟନ୍ତି କବୟୋ ଯଂ କାର୍ଷ୍ଣ ଗଜଂ ଭୁବି ।।
ସଂଗସ୍ତ ବ୍ରଜସୁନ୍ଦରେନ୍ଦ୍ର ରମଣୀଙ୍ଗବ ଢକାଶୋଜ୍ଜ୍ୱଳମ୍ ।
ତଂ ବନ୍ଦେ ଜଗତାଂ ଗୁରୁଂ ସକରୁଣଂ ଶ୍ରୀଦୁରିକାନନ୍ଦନମ୍ ।।

## ଜଗତ୍ ଶରଣ୍ୟ ଶ୍ରୀଶ୍ୟାମାନନ୍ଦଃ

ଚେତଶ୍ଚେଦ୍ ବିରଳ ପ୍ରଗ୍ରର ମଧୁର ପ୍ରେମାମୃତାସ୍ୱାଦନେ—
କାମୋ ମାର୍ଗନୟା ବିନା ଯଦି ସୁଖାଦ୍‌ଭବାଖ୍ୟଚିନ୍ତାମଣୌ ।
ଚେଦ୍ ରାଗାନୁଗାଭକ୍ତିସମ୍ପାଦି ରୁଚି ଦର୍ବୋତ୍ପଭବାଓଦା—
ଶ୍ୟାମାନନ୍ଦ ସୁରବଂପାଦପମିମଂ ନିତ୍ୟଂ ଭଜଧ୍ୱଂ ଜନାଃ ।।

## ଅସ୍ୟାର୍ଥ :

ରାଗାନୁଗାଭକ୍ତି ମୁକୁଳିତ, ଭାବଚିନ୍ତାମଣି କୁସୁମଶୋଭିତ ଏବଂ ମଧୁର ପ୍ରେମରୂପ ଅମୃତ ଫଳାନ୍ୱିତ ଏହି ସୁରକଳ୍ପତରୁରାଜ ଯଦିଚ ନୃଲୋକରେ ସୁଦୁର୍ଲଭ, ତଥାପି ଆମର ଭାଗ୍ୟଫଳରେ ଏହି ଭୂମଣ୍ଡଳରେ ସୁଲଭ ହୋଇଛନ୍ତି । ଅତଏବ ହେ ବିଶ୍ୱବାସୀବନ୍ଧୁଗଣ ! ଯଦି ସାଧନଶ୍ରମ ବ୍ୟତୀତ ଅନାୟାସରେ ବିରଳ ପ୍ରଚୁର ମଧୁର ପ୍ରେମାମୃତ ରସର ଫଳପୁଷ୍ପ କୋରକାଦି ଆସ୍ୱାଦନ କରିବାକୁ ଏକାନ୍ତ ଇଚ୍ଛା କର, ତେବେ କାୟମନୋବାକ୍ୟରେ ଏଇ ଶ୍ରୀ ଶ୍ୟାମାନନ୍ଦ ସୁରକଳ୍ପତରୁରାଜଙ୍କୁ ନିତ୍ୟ ଅନୁକ୍ଷଣ ସେବା କର । ଯାହାଙ୍କର ଅନୁଗ୍ରହ ମାତ୍ରେ ସାଧନଭକ୍ତି, ଭାବଭକ୍ତି ଓ ପ୍ରେମଭକ୍ତି ଅନାୟାସଲଭ୍ୟ ହୁଏ; ସେହି ହିଁ ଭଜନୀୟ ।

ଉତ୍କଳରେ ପ୍ରଚାରଚ୍ଛଳରେ ରଙ୍କିଣୀଦେବୀ ଶ୍ରୀଜୀବଙ୍କର ଆଦେଶରେ ଶ୍ରୀ ଶ୍ୟାମାନନ୍ଦ ଉତ୍କଳାଭିମୁଖରେ ଯାତ୍ରା କଲେ । ବାଟରେ ଧଳଭୂମିଠାରେ ପ୍ରବେଶ କରି ନବୀନକିଶୋର ନାମକ ଧଳଭୂମିର ରାଜା ଅତିଥି ସତ୍କାର ଛଳରେ ଶ୍ରୀ ଶ୍ୟାମାନନ୍ଦଙ୍କୁ ଦେବୀ ରଙ୍କିନୀଙ୍କ ନିକଟରେ ବଳିଦେବା ନିମନ୍ତେ ଏକ ଅଭିନବ ଷଡ଼ଯନ୍ତ୍ର କରନ୍ତି । ରାଜା ସେବକମାନଙ୍କ ଦ୍ୱାରା ସେହି ନରରକ୍ତପିପାସୁ ରଙ୍କିନୀ ଦେବୀଙ୍କ ମନ୍ଦିର ମଧ୍ୟରେ ଦ୍ୱାରରୁଦ୍ଧ କରି ରଖି ଆସନ୍ତି । ସେତେବେଳେ ବୈଷ୍ଣବଗଣଙ୍କ ସହ ଶ୍ରୀ ଶ୍ୟାମାନନ୍ଦ ଶ୍ରୀହରିନାମ କୀର୍ତ୍ତନ କରୁଥିଲେ । ମଧ୍ୟରାତ୍ରି ସମୟରେ ରଙ୍କିନୀଦେବୀ

ନରମାଂସ ଭୋଜନଲୋଲୁପା ହୋଇ ସେଠାରେ ଉପସ୍ଥିତ ହୁଅନ୍ତି । କିନ୍ତୁ ଶ୍ରୀ ଶ୍ୟାମାନନ୍ଦଙ୍କୁ ଦର୍ଶନ ମାତ୍ରେ ତାହାଙ୍କର ଚିତ୍ତ ପରିବର୍ତ୍ତିତ ହୋଇଗଲା । ଦେବୀ ପ୍ରାଷ୍ଟାଙ୍ଗ ପ୍ରଣତା ହୋଇ ନିଜ ଅପରାଧ ଲାଗି କ୍ଷମାପ୍ରାର୍ଥନା କରନ୍ତି ଏବଂ ରାଜାଙ୍କ ଶୟନକକ୍ଷକୁ ଯାଇ ଉଦ୍ୟତ ତରବାରୀରେ ସବଂଶ ରାଜାକୁ ନିଧନାର୍ଥ କ୍ରୋଧ ପ୍ରକାଶ କରି କହିଲେ—"ମୋର ଇଷ୍ଟଦେବ ପ୍ରଭୁ ଶ୍ରୀ ଶ୍ୟାମାନନ୍ଦ । ତାଙ୍କୁ ତୁମେ ଦ୍ୱାରରୁଦ୍ଧ କରି ରଖିଛ, ଶୀଘ୍ର ସବଂଶରେ ଯାଇ ତାଙ୍କ ପଦତଳେ ପତିତ ହୁଅ ଏବଂ ପ୍ରଭୁଙ୍କର ସେବା କର ।

ଦେବୀ ଆଦିଷ୍ଟ ରାଜା ତତ୍କ୍ଷଣାତ୍ ଶ୍ରୀ ଶ୍ୟାମାନନ୍ଦଙ୍କ ନିକଟକୁ ଯାଇ କ୍ଷମା ପ୍ରାର୍ଥନା ଓ ଆଶ୍ରୟ ଭିକ୍ଷା କରନ୍ତି । କିନ୍ତୁ ଶ୍ୟାମାନନ୍ଦ ଭକ୍ତଦ୍ରୋହୀର ମୁଖଦର୍ଶନ କଲେ ନାହିଁ; ସେତେବେଳେ ରାଜା ଅନନ୍ୟୋପାୟ ହୋଇ ଦେବୀଙ୍କ ଶରଣାପନ୍ନ ହେଲେ । ଗ୍ରାମର ଉଦ୍ୟାନରେ ସ୍ନାନକାଳରେ ଦେବୀ ରାଜାଙ୍କୁ ନେଇ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କ ଚରଣରେ ପାତିତ କଲେ । ସେତେବେଳେ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ପ୍ରସନ୍ନ ହୋଇ ରାଜାଙ୍କୁ ସବଂଶରେ ଶିଷ୍ୟ କଲେ; ତାଙ୍କୁ ଅନୁକ୍ଷଣ ବିଷ୍ଣୁ-ବୈଷ୍ଣବସେବା, ସାଧୁଚରଣଙ୍କୁ ଦଣ୍ଡବତ୍-ପ୍ରଣାମ ଓ ବୈଷ୍ଣବଚରଣାମୃତପାନ କରିବାକୁ ଓ ଜୀବହିଂସାରୁ ବିରତ ରହିବାର ଉପଦେଶ ପ୍ରଦାନ କଲେ ।

## ଶ୍ରୀ ଗୌରସେବା ପ୍ରକାଶ:

ଦିନେ ଶ୍ରୀ ଗୌରସୁନ୍ଦର ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କୁ ସ୍ୱପ୍ନରେ ଦର୍ଶନଦାନ କରି କହିଲେ—"ପଦ୍ମଶାନ ବା ପଦୁମ ବସାନ (ତମଲୁକ ମହକୁମା) ଠାରେ ମୋର ସେବା ଥିଲା । ସନ୍ନ୍ୟାସୀ ନାମଧାରୀ ଜନୈକ ବିଷ୍ଣୁବୈଷ୍ଣବବିଦ୍ୱେଷୀ ବ୍ୟକ୍ତି ମୋତେ ସେଠାରୁ ସ୍ଥାନାନ୍ତରିତ କରିଛି । ମୁଁ ବର୍ତ୍ତମାନ ମୀର୍ଜାପୁରସ୍ଥ ଜନୈକ ବ୍ରାହ୍ମଣ ଗୃହରେ ବାସ କରୁଛି । ତୁମେ ମୋତେ ସେଠାରୁ ଉଦ୍ଧାର କର ।" ଶ୍ରୀମନ୍ମହାପ୍ରଭୁଙ୍କ ଆଦେଶରେ ସେଠାକୁ ଯିବା ବାଟରେ ବହୁ ଜୀବୋଦ୍ଧାର କରି ଅଚ୍ୟୁତଙ୍କର କନିଷ୍ଠଭ୍ରାତା କାଶୀ-ଦାସଙ୍କୁ ଶିଷ୍ୟ କରନ୍ତି । ମଙ୍ଗଳା ଓ କାଶିୟାଡ଼ି ବାଟ ଦେଇ ବଳରାମପୁର ଗମନ କରନ୍ତି । ସେଠାରେ ହରିଚନ୍ଦନ ମହାପାତ୍ରଙ୍କୁ ଶିଷ୍ୟ କରନ୍ତି । ଶାଗୁୟାରେ ମଧୁସୂଦନ, ମୟନାଗଡ଼ର ରାଜା ବିରମାନନ୍ଦଙ୍କୁ ଶିଷ୍ୟ କରନ୍ତି । ତତ୍ପରେ ପଦ୍ମଶାନ ଯାଇ ଭକ୍ତଗଣଙ୍କ ସହ ରାଜାଙ୍କ ଦୁର୍ଗାମଣ୍ଡପରେ ଉପବେଶନ କଲା ଉତ୍ତାରୁ ଦୁଷ୍ଟ ସନ୍ନ୍ୟାସୀ ରାଜାଙ୍କୁ କୁମନ୍ତ୍ରଣା ଦିଏ ଯେ, ଶ୍ରୀ ଶ୍ୟାମାନନ୍ଦଙ୍କୁ ଅପମାନ ଦେବା ପ୍ରୟୋଜନ । କିନ୍ତୁ ... ରାଜା ଭୀତ ହୋଇ ପ୍ରଭୁଙ୍କ ଶ୍ରୀଚରଣରେ ଆଶ୍ରୟ ଗ୍ରହଣ

ଦର୍ଶନ କରିବି ଆମ ...

ଶ୍ରୀ ଶ୍ୟାମାନନ୍ଦ ଗୋପୀବଲ୍ଲଭପୁରରେ ଦ୍ୱାଦଶ ମହୋତ୍ସବ ସୁସମ୍ପନ୍ନ କରନ୍ତି ଏବଂ ବାଣପୁର ନବାବଙ୍କ ଗୁମାସ୍ତା ହରିହର, ଜାତିରେ କାୟସ୍ଥ ଥିଲେ ବୋଲି ଜଣେ ବ୍ରାହ୍ମଣ ନିଯୁକ୍ତ କରି ଘରେ ଶ୍ରୀଶାଳଗ୍ରାମଙ୍କର ପୂଜା କରଉଥିଲେ ଏବଂ ପ୍ରତ୍ୟହ ପାଞ୍ଚସେର ଅପକ୍ୱ ଅରୁଆ ଚାଉଳ ଭୋଗ ଦେଉଥିଲେ । ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ତାହା ଦେଖି ହରିହରଙ୍କୁ ଅସନ୍ତୁଷ୍ଟ ହୋଇ ଶ୍ରୀଶାଳଗ୍ରାମଙ୍କୁ ଅନ୍ନଭୋଗ ନ ଦେବାରୁ ସବଂଶରେ ତୁମେ ହସ୍ତୀଯୋନି ପ୍ରାପ୍ତ ହେବ ବୋଲି ଅଭିଶାପ ଦେଲେ । ପରବର୍ତ୍ତୀ କାଳରେ ସେହି ହସ୍ତୀ ଶ୍ରୀ ପ୍ରଭୁଙ୍କର ଶିଷ୍ୟତ୍ୱ ଗ୍ରହଣ କରି ମୁକ୍ତିଲାଭ କରନ୍ତି । ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଓ ଶ୍ରୀ ସାକ୍ଷୀଗୋପାଳ ଶୁଭବିଜୟ କରନ୍ତି ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ । ଏକ ସମୟରେ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ରଥ ଅଚଳ ହେବାରୁ ଶ୍ୟାମାନନ୍ଦ ପ୍ରଭୁଙ୍କ ଆଦେଶରେ ଶ୍ରୀ ରସିକାନନ୍ଦଙ୍କ ମସ୍ତକ ସ୍ପର୍ଶରେ ରଥଚାଳନ କରନ୍ତି ଏବଂ ଅବିଳମ୍ବେ ରଥ ଶ୍ରୀଗୁଣ୍ଡିଚା ମନ୍ଦିରରେ ପ୍ରବେଶ କରେ । ଏହା ଦେଖି ପୁରୀର ରାଜା ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କୁ ସେଠାରେ ଗୋଟିଏ ମଠ ନିର୍ମାଣ ଲାଗି ସ୍ଥାନ ପ୍ରଦାନ କରନ୍ତି । ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ସେହି ମଠର ନାମ "କୁଞ୍ଜମଠ" ରଖନ୍ତି ।

କୁଞ୍ଜମଠରେ 'ଅଧିକାରୀ' ବ୍ୟବସ୍ଥା କରି ଶ୍ରୀଳ ଶ୍ୟାମାନନ୍ଦ ପ୍ରଭୁ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରନ୍ତି ଏବଂ ଶ୍ରୀ ଜଗନ୍ନାଥଦେବଙ୍କ ଆଦେଶରେ ଶ୍ରୀ ଗୋବିନ୍ଦଦେବଙ୍କ ସେବା ପ୍ରକାଶ କରନ୍ତି । ବସନ୍ତିଆର ରାଜା ସାଗରେନ୍ଦ୍ର ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ଶ୍ରୀଳ ଶ୍ୟାମାନନ୍ଦ ପ୍ରଭୁ ତାହାଙ୍କ ଗୃହରେ ଶ୍ରୀ ଗୋକୁଳଚନ୍ଦ୍ର ଶ୍ରୀ ବିଗ୍ରହ ପ୍ରକାଶ କରନ୍ତି । ତା'ପରେ ଗୁରିଆରେ ଶ୍ରୀ ରାସବିହାରୀ ଓ ଖେଲାରୀ-ନାଡ୍ଡ଼ାଜୋଲ୍‌ରେ ଶ୍ରୀମଦନମୋହନ ଶ୍ରୀ ବିଗ୍ରହ ପ୍ରତିଷ୍ଠା କଲେ ।

ଶ୍ରୀ ଶ୍ୟାମାନନ୍ଦଙ୍କ କୃପାରେ ବ୍ୟାଘ୍ର-ସର୍ପାଦି ହିଂସ୍ର ପ୍ରାଣୀଗଣ ମଧ୍ୟ ଉଦ୍ଧାରପ୍ରାପ୍ତ ହୋଇଥିଲେ । ଗଲତାର ଶ୍ରୀ ରାମାନନ୍ଦୀ ସଂପ୍ରଦାୟର ମହନ୍ତ ଶ୍ରୀ ସୂର୍ଯ୍ୟା-ନନ୍ଦଙ୍କର ଗୋଟିଏ ପ୍ରାର୍ଥନା ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ପୂର୍ଣ୍ଣ କରିଥିଲେ । ଶ୍ରୀ ସୂର୍ଯ୍ୟାନନ୍ଦ ଶ୍ରୀ ରସିକାନନ୍ଦଙ୍କ ପୁତ୍ର ଶ୍ରୀ ରାଧାନନ୍ଦଙ୍କର ପୁତ୍ର ରୂପେ ଜନ୍ମଲାଭ କରିଥିଲେ । ତା'ପରେ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଶାନ୍ତାକୁଳ-କୃଷ୍ଣନଗରରେ ନାନାବିଧ ଲୀଳା ପ୍ରକାଶ କରିଥିଲେ ।

ଅତଃପର ବିଭିନ୍ନ ସ୍ଥାନ ଭ୍ରମଣ ଓ ବହୁ ବ୍ୟକ୍ତିଙ୍କୁ କୃପାକରି ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଯେତେବେଳେ ପୁନର୍ବାର ଶ୍ରୀ ବୃନ୍ଦାବନକୁ ଗମନ କରନ୍ତି, ସେତେବେଳେ ଶ୍ରୀଳ ଶ୍ରୀଜୀବ ପ୍ରଭୁଙ୍କ କୁଞ୍ଜରେ ଭରତପୁରର ରାଜା ଶ୍ରୀ ଶ୍ୟାମାନନ୍ଦଙ୍କ ଦର୍ଶନ ଲାଭି ବିମୋହିତ ମୁଗ୍ଧ ହୁଅନ୍ତି । ସେତେବେଳେ ସେ ... ...ବେଳେ ବୈଷ୍ଣବଗଣଙ୍କ ସହ 'ଷଠୀଘରା' ଗ୍ରାମ ମଧ୍ୟ ... କୀର୍ତ୍ତନ କରୁଥିଲେ । [ମଧ୍ୟରାତ୍ର] ସମୟରେ ରଙ୍କିନୀଦେବୀ

କରିବାରୁ ଜୟପୁରର ରାଜା ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କ ସେବା ଲାଗି 'ଶ୍ୟାମଳୀ' ଗ୍ରାମ ଦାନ କରନ୍ତି । ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଶ୍ରୀ ବୃନ୍ଦାବନ ବାଟ ଦେଇ ଗୌଡ଼ଦେଶକୁ ପ୍ରତ୍ୟାବର୍ତ୍ତନ ସମୟରେ ମାଲଦହ, ଅମ୍ବିକା ପ୍ରଭୃତି ସ୍ଥାନ ଦର୍ଶନ କରନ୍ତି ।

ବିଷ୍ଣୁପୁରର ରଜା ବୀରହାମ୍ବୀର ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କୁ ଦର୍ଶନ ଓ ପୂଜା କରନ୍ତି । ଶ୍ରୀଳ ଶ୍ରୀନିବାସାଚାର୍ଯ୍ୟଙ୍କ ଆତ୍ମଜ ଶ୍ରୀ ଗୋବିନ୍ଦଗତି ପ୍ରଭୁଙ୍କ ସହିତ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କ ସାକ୍ଷାତକାର ହୋଇଥିଲା ଏବଂ ଶ୍ରୀଳ ଶ୍ୟାମାନନ୍ଦ ପ୍ରଭୁ ମଧ୍ୟ ଶ୍ରୀ ଗୋବିନ୍ଦ ଗତି ପ୍ରଭୁଙ୍କୁ ଯଥାବିହିତ ପୂଜା କରିଥିଲେ ।

ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଯେତେବେଳେ ଗୋପୀବଲ୍ଲଭପୁରରେ ଅବସ୍ଥାନ କରୁଥିଲେ, ସେତେବେଳେ ଶ୍ରୀ ହୃଦୟ ଚୈତନ୍ୟ ପ୍ରଭୁଙ୍କ ଶ୍ରୀ ଗୋବିନ୍ଦ ଦର୍ଶନ ଲାଗି ସେଠାକୁ ଆସିବାକୁ ଇଚ୍ଛା ହେବାରୁ ଗୋପୀବଲ୍ଲଭପୁରକୁ ଲୋକ ପ୍ରେରଣ କରିଥିଲେ । ତମଲୁକରେ ଶ୍ରୀ ମହାପ୍ରଭୁଙ୍କୁ ଦର୍ଶନ କରି ଯେତେବେଳେ ଶ୍ରୀ ହୃଦୟଚୈତନ୍ୟ ପ୍ରଭୁ ଗୋପୀବଲ୍ଲଭପୁରାଭିମୁଖେ ଅଗ୍ରସର ହେଉଥିଲେ, ସେତେବେଳେ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଶ୍ରୀ ରସିକାନନ୍ଦ ସହିତ ଅଗ୍ରସର ହୋଇ ଶ୍ରୀ ଗୁରୁଦେବଙ୍କୁ ଅଭ୍ୟର୍ଥନା ଜଣାଇବାକୁ ଯାଇଥିଲେ । ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଓ ଶ୍ରୀ ରସିକ ମୁରାରି ଶ୍ରୀ ହୃଦୟ ଚୈତନ୍ୟ ପ୍ରଭୁଙ୍କୁ ସର୍ବତୋଭାବେ ସେବା କରିଥିଲେ । ଅତଃପର ଶ୍ରୀ ଶ୍ୟାମାନନ୍ଦ ଗୋବିନ୍ଦପୁରରେ ରାସଯାତ୍ରା-ଉତ୍ସବ ସମ୍ପାଦନ କରି କାନପୁରକୁ ଶୁଭବିଜୟ କଲେ । ତତ୍ପରେ ରେମୁଣାରେ ଶ୍ରୀ କ୍ଷୀରଚୋରା ଗୋପୀନାଥ ଶ୍ରୀ ବିଗ୍ରହ ଦର୍ଶନ କରି ସେଠାରେ କିଛିଦିନ ଅବସ୍ଥାନ କରିଥିଲେ ।

## ରେମୁଣାରେ ଶ୍ରୀ ଗୋପୀନାଥଙ୍କର ସେବା ପ୍ରକାଶ :

ରେମୁଣାତେ ପ୍ରଭୁ ଗିୟା କୈଲ ବହୁ ଲୀଳା ।
ସେଥା ଶ୍ରୀ ଗୋପୀନାଥ ସେବା ପ୍ରକାଶିଲା ।।

× × ×

ରେମୁଣାତେ ଖ୍ୟାତି ଶ୍ରୀଗୋପୀନାଥ ନାମ ।
ମହାମହୋତ୍ସବ ସେଥା ହୈଲ ସେହି ସ୍ଥାନେ ।।
କଲିଯୁଗେ ମାଧବେନ୍ଦ୍ରପୁରୀର କାରଣ ।
କ୍ଷୀରଚୁରି କୈଲ ପ୍ରଭୁ ଭକ୍ତେର କାରଣ ।।

× × ×

ଲୋକେ ଜିଜ୍ଞାସିଲ ଆଛେ ଗୋପୀନାଥ କୋଥା ।
ଦର୍ଶନ କରିବ ଆମି କହ ଆଛେ ଯଥା ।।

ଲୋକେ ଶୁନି ବଲେ ସତ୍ୟଛିଲ ଏଇଖାନେ ।
ଯବନ ଭୟେତେ ଗ୍ରାମ ଭଙ୍ଗିଲ ଯଖନେ ।।
ସେଇଦିନ ହୈତେ ନାହି ଦେଖି ଗୋପୀନାଥ ।
ଶୁନି ଶ୍ୟାମାନନ୍ଦ ରାୟ ହଇଲ ଚିନ୍ତିତ ।।
ଭୋଜନ ଶୟନ ଆର କିଛି ନା ରୁଚିଲ ।
ରାତ୍ରିକାଲେ ଗୋପୀନାଥ ଆସି ସ୍ୱପ୍ନ ଦିଲ ।।
କନକମଞ୍ଜରୀ ଶୁନ ଆମାର ବଚନ ।
ନ କରିହ କୋନ ଚିନ୍ତା ଆପନାର ମନ ।।
ଲୋକେ ଲୈୟା ହାଟେ ଚଣ୍ଡୀ କରିଛେ ଆମାରେ ।
ସିନ୍ଦୂର ଦେଇଛେ ଆମାର ସର୍ବାଙ୍ଗ ଶରୀରେ ।।
ଆମାରେ ଆନିୟା ତୁମି ମନ୍ଦିରେ ଥାପିବେ ।
ପୂର୍ବମତ କରି ସେବା ଆମାରେ କରିବେ ।।
ଏତ କହି ଅନ୍ତର୍ଧାନେ କରିଲ ଗମନ ।
ସ୍ୱପ୍ନଚେତି ଶ୍ୟାମାନନ୍ଦ ଆନନ୍ଦିତ ମନ ।।
ଆର ଦିନ ପ୍ରାତେ ଗ୍ରାମ ଲୋକ ଡ଼କାଇଲ ।
ସମଗ୍ର ଲଇୟା ହାଟେ ପ୍ରବେଶ କରିଲ ।
ସିନ୍ଦୂର ଧୁଇତେ ମୂର୍ତ୍ତି ବାହାର ହଇଲ ।
ଦେଖି ଶ୍ୟାମାନନ୍ଦ ପ୍ରଭୁ ଆନନ୍ଦିତ ହୈଲ ।।
ପଞ୍ଚତୀର୍ଥ ଜଲ ଲୈୟା ସ୍ନାନ କରାଇଲ
ମହାମହୋତ୍ସବ କରି ମନ୍ଦିରେ ସ୍ଥାପିଲ ।।
(ଶ୍ୟାମାନନ୍ଦ ପ୍ରକାଶ : ୯ମ ଦଶା)
ଶ୍ରୀରସିକ ମୁରାରି ତ୍ରିଭୁବନ ଧନ୍ୟ ।
ଅନିରୁଦ୍ଧ ଅବତାର ସାକ୍ଷାତ ପ୍ରମାଣ ।।
ରେମୁଣାତେ ଦୁଇପ୍ରଭୁ ବହୁ ଲୀଳା କୈଲ ।
ଯବନ ଶାହାଜୀ ଆସି ଦର୍ଶନ କରିଲ ।
ଶ୍ରୀକୃଷ୍ଣଚୈତନ୍ୟ ପ୍ରଭୁ ନିତ୍ୟାନନ୍ଦ ।
ହରେ କୃଷ୍ଣ ହରେ ରାମ ଶ୍ରୀରାଧେଗୋବିନ୍ଦ ।।
ଚବିଶ ପ୍ରହର ହୟ ନାମ ସଂକୀର୍ତ୍ତନ ।
କ୍ଷଣେ ପଡ଼େ କ୍ଷଣେ ଉଠେ ପ୍ରେମେ ମତ୍ତ ମନ ।।

× × ×

ନାମ ନାମୀ ଅଭିନ୍ନ ନିଗମ ସିଦ୍ଧାନ୍ତ ।
ରସକାନନ୍ଦେର ବାଣୀ ପରମ ଅଦ୍ଭୁତ ।

ସପ୍ତଶର  ରମଚଣ୍ଡୀ ବ୍ରଜ ସରୋବର ।
ମାଧବେନ୍ଦ୍ରପୁରୀ ଯଥା ବିଶ୍ରାମ କରିଲ ।।
ଗର୍ଗେଶ୍ୱର ମହାଦେବ ଆଛେନ ତଥାୟ ।
ଗୌଡ଼ଦାଣ୍ଡେର ଶୋଭ କହନେ ନା ଯାୟ ।।
ଶ୍ରୀଧର ସ୍ୱାମୀର ସ୍ଥାନେ ଗମନ କରିଲ ।
ଦର୍ଶନ ମାତ୍ରେକେ ଧୂଲାୟ ଗଡ଼ାଗଡ଼ି ଦିଲ ।।
ବଲଦେବ  ନାମ ତିନିବାର ଉଚ୍ଚାରିଲ ।
ମହାପ୍ରଭୁ ଯୈଛେ ନରେଉତମେ ପ୍ରକାଶିଲ ।।
(ଶ୍ୟାମାନନ୍ଦ ପ୍ରକାଶ : ୧୦ମ ଦଶା)

## ବିଭିନ୍ନ ଦେଶ ଭ୍ରମଣ ପରେ ପୁନଃ ରେମୁଣାକୁ ଆଗମନ :

ସେଥା ହୈତେ ଗେଲ ଗୋପୀନାଥ ଦରଶନେ ।
ଗୋପୀନାଥ ଦେଖି ପ୍ରେମେ ଆନନ୍ଦିତ ମନେ ।।
କିଛିଦିନ ରେଲ ସେଥା ଅତି ପ୍ରେମରସେ ।
ବହୁ ଶିଷ୍ୟ କୈଲ ପ୍ରଭୁ ମନେର ହରିଷେ ।।
(ଶ୍ରୀଶ୍ୟାମାନନ୍ଦ ପ୍ରକାଶ : ୧୫ଶ ଦଶା)

## ମାୟାବାଦୀ ସନ୍ନ୍ୟାସୀ ଶଙ୍କର ଦାସର ଉଦ୍ଧାର :

ମାୟାବାଦୀ ସନ୍ନ୍ୟାସୀ ଶ୍ରୀଳ ଶ୍ୟାମାନନ୍ଦ ପ୍ରଭୁଙ୍କୁ "ଝୁଟାଖୋର" କହି ନିନ୍ଦା କରିବାରୁ ଶ୍ରୀଶ୍ୟାମାନନ୍ଦ ପ୍ରଭୁ ମୌନୀ ରହିଲେ । ସେ ଯେତେବେଳେ ନଦୀରେ ସପାର୍ଷଦ ସ୍ନାନ କରୁଥିଲେ ସେତେବେଳେ ଗୋଟାଏ ବୃହଦାକାୟ କୁମ୍ଭୀର ସମସ୍ତଙ୍କର ଦୃଷ୍ଟିଗୋଚର ହୋଇ ପ୍ରଭୁଙ୍କ ଚରଣରେ ଲୁଣ୍ଠିତ ହେବାକୁ ଲାଗିଲା । ତାହା ଦେଖି ମାୟାବାଦୀ ସନ୍ନ୍ୟାସୀ ଅତୀବ ବିସ୍ମିତ ହୋଇ ନିଜକୃତ ଅପରାଧ ଲାଗି କ୍ଷମାପ୍ରାର୍ଥନା କରି ଶ୍ରୀଶ୍ୟାମାନନ୍ଦ ପ୍ରଭୁଙ୍କ ନିକଟରେ ଶିଷ୍ୟତ୍ୱ ଗ୍ରହଣ କରି "ଶଙ୍କର ଦାସ" ନାମରେ ଅଭିହିତ ହେଲେ । ଏପ୍ରକାର ଅନେକ ତାନ୍ତ୍ରିକ ସନ୍ନ୍ୟାସୀ ମଧ୍ୟ ସେମାନଙ୍କର ଦୁଷ୍ଟମତ ପରିତ୍ୟାଗ କରି ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କ ଚରଣାଶ୍ରୟ କରି ଧନ୍ୟ ଓ ଉଦ୍ଧାରପ୍ରାପ୍ତ ହୋଇଥିଲେ । ।

## ଆବିର୍ଭାବ :

ଶ୍ରୀ ଶ୍ୟାମାନନ୍ଦ ପ୍ରଭୁଙ୍କର ଆବିର୍ଭାବର ସଠିକ ତିଥି ଜଣା ନ ଗଲେ ମଧ୍ୟ ନିଶ୍ଚିତଭାବେ କୁହାଯାଇପାରେ ଯେ ୧୫୦୦ ଶକାବ୍ଦର ଶେଷଭାଗରେ ଅର୍ଥାତ ୧୫୭୦

୧୫୭୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ସେ ତଦାନୀନ୍ତନ ଓଡ଼ିଶାର ବାଲେଶ୍ୱର ଜିଲ୍ଲା ବର୍ତ୍ତମାନର ପଶ୍ଚିମ ବଙ୍ଗରେ ମେଦିନୀପୁର ଜିଲ୍ଲାନ୍ତର୍ଗତ ଧାରେନ୍ଦା ବାହାଦୁରପୁର ଗ୍ରାମରେ ଚୈତ୍ରପୂର୍ଣ୍ଣିମା ତିଥିରେ ଶ୍ରୀଗୌରକୃଷ୍ଣଙ୍କର ନିଜ ଜନ ଶ୍ରୀଶ୍ୟାମାନନ୍ଦ ପ୍ରଭୁ ଆବିର୍ଭୂତ ହୋଇଥିଲେ ଶ୍ରୀଦୁରିକାଦେବୀ ଓ ଶ୍ରୀକୃଷ୍ଣ ମଣ୍ଡଳଙ୍କୁ ଆଶ୍ରୟ କରି । (କୋହାରି କାହାରି ମତରେ ଷୋଡ଼ଶ ଶତାବ୍ଦୀର ଦ୍ୱିତୀୟପାଦ—'ଭରତର ସାଧକ' ଗ୍ରନ୍ଥ ମତାନୁସାରେ) ।

## ତିରୋଭାବ :

ଶ୍ରୀଳ ଶ୍ୟାମାନନ୍ଦ ପ୍ରଭୁ ୧୫୫୨ ଶକାବ୍ଦରେ ଅର୍ଥାତ୍ ୧୬୩୦ ଖ୍ରୀଷ୍ଟାବ୍ଦ ଆଷାଢ଼ ମାସର କୃଷ୍ଣ ପ୍ରତିପଦ ତିଥିରେ ଶ୍ରୀନୃସିଂହପୁର ଗ୍ରାମରେ ଶ୍ରୀ ଉଦ୍ଦଣ୍ଡରାୟ ଭୂୟାଙ୍କ ଗୃହରେ ଅପ୍ରକଟଲୀଳା ସମ୍ବରଣ କରନ୍ତି । ଦୀର୍ଘ କର୍ମମୟ ଜୀବନର ଶେଷରେ ଏହି ଶକ୍ତିଧର ବୈଷ୍ଣବଙ୍କ ଆଗ୍ରର୍ଯ୍ୟ ଜୀବନ ଉପରେ ଯବନିକା ଓହ୍ଲାଇ ଆସେ । ଶିଷ୍ୟ ଭକ୍ତଗଣଙ୍କ ନିକଟରେ ଶ୍ରୀଗୌର-ଗୋବିନ୍ଦ ତତ୍ତ୍ୱ ବ୍ୟାଖ୍ୟା କରୁ କରୁ ନିତ୍ୟଲୀଳାରେ ସେ ପ୍ରବେଶ କରନ୍ତି । ଶ୍ରୀଶ୍ୟାମାନନ୍ଦଙ୍କର ବିଶିଷ୍ଟ ଦ୍ୱାଦଶ ଜନ ଶିଷ୍ୟଙ୍କଠାରୁ ଦ୍ୱାଦଶ ଶାଖାର ଉଦ୍ଭବ ହୁଏ । ଏହି ଶିଷ୍ୟମାନଙ୍କ ମଧ୍ୟରେ ସର୍ବପ୍ରଧାନ ଥିଲେ ରୟଣୀର ଭୂମ୍ୟଧିକାରୀଙ୍କ ପୁତ୍ର ରସିକ ମୁରାରି ବା ଶ୍ରୀରସିକାନନ୍ଦ ଦେବଗୋସ୍ୱାମୀ । ଠାକୁର ଗୋସାଇଁ ବା ରସିକାନନ୍ଦ ନାମରେ ତତକାଳୀନ ବୈଷ୍ଣବ ସମାଜରେ ସେ ପ୍ରସିଦ୍ଧିଲାଭ କରନ୍ତି । ସୁବର୍ଣ୍ଣରେଖା ତୀରଦେଶରେ ଶ୍ରୀଗୋପୀବଲ୍ଲଭ-ପୁରରେ ଶ୍ୟାମାନନ୍ଦୀ ସମ୍ପ୍ରଦାୟର ପ୍ରଧାନକେନ୍ଦ୍ର ସ୍ଥାପନପୂର୍ବକ ଓଡ଼ିଶାରେ ଧର୍ମ ଓ ସଂସ୍କୃତି କ୍ଷେତ୍ରରେ ଦୀର୍ଘକାଳ ଧରି ପ୍ରଭାବ ବିସ୍ତାର କରି ଚାଲିଅଛି ।

" ଇତି ସପ୍ତମ ବୈଭବ ।।

-----

*ଶ୍ରୀ ଗୌଡ଼ୀୟ ବୈଷ୍ଣବ ଅଭିଧାନାନୁସାରେ ୧୫୩୪ ଖ୍ରୀଷ୍ଟାବ୍ଦ ।

# ଅଷ୍ଟମ ବୈଭବ

## ଅଥ ଶ୍ରୀ ଶ୍ରୀ ବଳଦେବ ବିଦ୍ୟାଭୂଷଣ ଚରିତାସ୍ୱାଦନ

## ବେଦାନ୍ତ-ବିଭୂଷଣ ବଳଦେବ ବିଦ୍ୟାଭୂଷଣ-ସଂକ୍ଷିପ୍ତ ଜୀବନୀ

"ବଳଦେବ ନାମ ତିନିବାର ଉଚ୍ଚାରିଲ ।
ମହାପ୍ରଭୁ ଯୈଛେ ନଗେରେତମେ ପ୍ରକାଶିଲ ॥"

ତ୍ରିକାଳଦର୍ଶୀ ଭକ୍ତାବତାର ଶ୍ରୀଲ ପ୍ରଭୁ ଶ୍ୟାମାନନ୍ଦ ଶ୍ରୀରେମୁଣା ଯାଇ ଶ୍ରୀ କ୍ଷୀରଚୋରା ଗୋପୀନାଥ ଦର୍ଶନ କରି ଶ୍ରୀମନ୍ଦିର ପ୍ରାଙ୍ଗଣରେ ଛିଡ଼ାହୋଇ ଭବୀ ଅନୁଶିଷ୍ୟ ବେଦାନ୍ତାଗ୍ରୋର୍ଯ୍ୟବର୍ଯ୍ୟ ବୈଷ୍ଣବକୁଳ ମୁକୁଟମଣି ଉତ୍କଳଭୂଷଣ ଶ୍ରୀବଳଦେବ ବିଦ୍ୟାଭୂଷଣଙ୍କ ଆବିର୍ଭାବ ସୂଚନା କଲେ । ସେହି ଭବିଷ୍ୟତବାଣୀ ବା ଦୈବବାଣୀ ଅଷ୍ଟାଦଶ ଖ୍ରୀଷ୍ଟାବ୍ଦରେ ମୂର୍ତ୍ତି ପରିଗ୍ରହ କଲେ ବେଦାନ୍ତ ବିଶାରଦ ଶ୍ରୀବଳଦେବ ବିଦ୍ୟାଭୂଷଣ ରୂପେ ।

ଶ୍ରୀମଦ ବଳଦେବ ବିଦ୍ୟାଭୂଷଣ ଥିଲେ ନିଷ୍କିଞ୍ଚନ ପରମ ଭାଗବତ । କୌଣସି ପ୍ରତିଷ୍ଠାର ଆକାଙ୍କ୍ଷା ତାହାଙ୍କର ବିନ୍ଦୁମାତ୍ର ନ ଥିଲା । ବହୁ ଅମୂଲ୍ୟ ଗ୍ରନ୍ଥରତ୍ନ ଲେଖି ମାନବଜାତିର ଓ ସର୍ବୋପରି ଶ୍ରୀମନ୍ମହାପ୍ରଭୁ ପ୍ରବର୍ତ୍ତିତ ଗୌଡ଼ୀୟ ବୈଷ୍ଣବ ଧର୍ମର ମହୋପକାର ସାଧନ କରି ଯାଇଛନ୍ତି । ଯାହା ଯାବତ ଚନ୍ଦ୍ର-ଦିବାକର ବିଶ୍ୱବାସୀ ସଶ୍ରଦ୍ଧ ଚିତ୍ତରେ ସ୍ମରଣ କରି ବିସ୍ମୟାଭିଭୂତ ହେବେ । ଶ୍ରୀବିଦ୍ୟାଭୂଷଣଙ୍କ ସମ୍ବନ୍ଧରେ କିଛି କହିବାକୁ ଗଲେ ସର୍ବପ୍ରଥମରେ ହିଁ ତାଙ୍କ କୃତ ବେଦାନ୍ତଭାଷ୍ୟ-ଶ୍ରୀଗୋବିନ୍ଦଭାଷ୍ୟ କଥା ସ୍ମୃତିପଟରେ ଜାଗରିତ ହୋଇଥାଏ । ତାଙ୍କର ଭାଷ୍ୟ ହିଁ ତାଙ୍କୁ ଗୌରି ସମ୍ପ୍ରଦାୟ ବୈଷ୍ଣବଗଣଙ୍କ ମଧ୍ୟରେ ସଞ୍ଜୀବିତ କରି ରଖିଛି । ତାଙ୍କର ଅତିମର୍ତ୍ତ୍ୟ ଜୀବନୀ ଓ ଦାର୍ଶନିକ ବିଗ୍ରହ- ବିଶ୍ଳେଷଣ ତାଙ୍କର ସୁଷ୍ଠୁ ପରିଚୟ ବହନ କରେ ।

ଉତ୍କଳ ପ୍ରଦେଶାନ୍ତର୍ଗତ ବାଲେଶ୍ୱର ଜିଲ୍ଲାର ପ୍ରସିଦ୍ଧ ତୀର୍ଥ ଶ୍ରୀକ୍ଷୀରଚୋରା ସନ୍ନିକଟ କୁକୁମଶୁଳି ଗ୍ରାମରେ ଜନ୍ମ ହୋଇଥିଲେ । ତାଙ୍କର ସେହି ଜନ୍ମଭିଟାର ନାମ 'ବଳଭଦ୍ର ବାଡ଼ି' ରୂପେ ଅଦ୍ୟାବଧି ବିରାଜମାନ ରହିଛି ।

କିନ୍ତୁ ତାଙ୍କ ଜନ୍ମସ୍ଥାନ ଓ ବଂଶ ପରିଚୟ ସଂପର୍କରେ ନାନା ଜୀବନୀ ଲେଖକମାନଙ୍କର ଆନୁମାନିକ ନାନାମତ ପରିଦୃଷ୍ଟ ହୁଏ । ମୋର ମନେହୁଏ, ପ୍ରକୃତ ତଥ୍ୟ ସମସ୍ତେ ଆଡ଼େଇ ଯାଇଛନ୍ତି । ସେ ବିତର୍କ ମଧ୍ୟକୁ ଯିବା ମୋର ଧୃଷ୍ଟତା ମାତ୍ର ।

ଶ୍ରୀ ବିଦ୍ୟାଭୂଷଣଙ୍କ ଆବିର୍ଭାବ କାଳ ସଠିକଭାବେ ନିର୍ଣ୍ଣୟ କରିବା ଉପାୟ ନ ଥିଲେ ମଧ୍ୟ ଶ୍ରୀଳ ରୂପଗୋସ୍ୱାମୀଙ୍କ ଉତ୍କଳିକାବଲ୍ଲରୀ ନାମକ ସ୍ତୋତ୍ରର ଟୀକାର ଉପସଂହାରରେ ଶ୍ରୀ ବିଦ୍ୟାଭୂଷଣ ଲେଖିଛନ୍ତି–"ଷଡ଼ଶୀତ୍ୟୁତ୍ତର ଷୋଡ଼ଶଶତୀ ଗଣିତେ ତସ୍ୟ (ଶକାବ୍ଦ.୬୮୩/ଖ୍ରୀ. ୧୭୬୪) ଶାକେତୁ ଟୀକାୟା ନିଷ୍ପତ୍ତିଃ ।" ୧୭୬୪ ଖ୍ରୀଷ୍ଟାବ୍ଦରେ ସ୍ତବମାଳା ଟୀକା ଶେଷ କରନ୍ତି । ଅର୍ଥାତ୍ ପଳାସୀ ଯୁଦ୍ଧର ପରେ ବି (୧୭୫୭) ସେ ପ୍ରକଟ ଥିଲେ ।

ଶ୍ରୀ ବଳଦେବ ଚିଲିକା ହ୍ରଦର ଅପର ପାର୍ଶ୍ୱରେ କୌଣସି ବିଦ୍ୱଦ୍ ବସତି ସ୍ଥାନରେ ବ୍ୟାକରଣ, କାବ୍ୟାଳଙ୍କାରାଦି ଶାସ୍ତ୍ର ଅଧ୍ୟୟନ କରନ୍ତି । ପରେ ନ୍ୟାୟଶାସ୍ତ୍ର ଅଧ୍ୟୟନ କରି ବେଦ ଅଧ୍ୟୟନ ପରେ ମହୀଶୂରକୁ ଯାଇ ବେଦାନ୍ତ ଅଧ୍ୟୟନ କରନ୍ତି । ଏହି ସମୟରେ ସେ ତତ୍ତ୍ୱବାଦୀମାନଙ୍କ ମଠକୁ ଯାଇ ସେମାନଙ୍କର ଶିଷ୍ୟ ଓ ତତ୍ସଂପ୍ରଦାୟଭୁକ୍ତ ହୁଅନ୍ତି । ଶ୍ରୀ ବଳଦେବ ସନ୍ନ୍ୟାସ ଗ୍ରହଣ କରି ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରସ୍ଥ ତଦାନୀନ୍ତନ ପଣ୍ଡିତମଣ୍ଡଳୀଙ୍କୁ ଶାସ୍ତ୍ରଯୁଦ୍ଧରେ ପରାଜିତ କରି ତତ୍ତ୍ୱବାଦୀମାନଙ୍କ ମଠରେ ଅବସ୍ଥାନ କରନ୍ତି । କିଛିକାଳ ପରେ ଶ୍ରୀ ରସିକାନନ୍ଦ ମୁରାରିଙ୍କ ପ୍ରଶିଷ୍ୟ କାନ୍ୟକୁବ୍ଜବାସୀ ପଣ୍ଡିତ ଶ୍ରୀ ରାଧାଦାମୋଦରଙ୍କ ନିକଟରେ ଷଟ୍ସନ୍ଦର୍ଭାଦି ଗୋସ୍ୱାମୀ ଗ୍ରନ୍ଥ ଅଧ୍ୟୟନ କରି ସେ ଗୌଡ଼ୀୟ ବୈଷ୍ଣବଧର୍ମ ପ୍ରତି ବିଶେଷ ଆକୃଷ୍ଟ ହୁଅନ୍ତି ଏବଂ ଶ୍ରୀ ରାଧାଦାମୋଦରଙ୍କର ଶିଷ୍ୟତ୍ୱ ଗ୍ରହଣ କରନ୍ତି ।

ତତ୍ପରେ ଶ୍ରୀବଳଦେବ ଶ୍ରୀଧାମ ନବଦ୍ୱୀପ ଦର୍ଶନ କରି ଶ୍ରୀଧାମ ବୃନ୍ଦାବନରେ ଉପସ୍ଥିତ ହୁଅନ୍ତି । ଇତିପୂର୍ବେ ଦୀକ୍ଷାଗୁରୁ ଶ୍ରୀରାଧାଦାମୋଦରଙ୍କ ନିକଟରୁ ଶ୍ରୀ ଗୌରସୁନ୍ଦରଙ୍କର କୃପା ଅବଦାନର ଓ ଗୌଡ଼ୀୟବୈଷ୍ଣବ ସିଦ୍ଧାନ୍ତର ସାର୍ବଭୌମତ୍ୱ ସମ୍ବାଦ ଶୁଣି ସେ ବିମୁଗ୍ଧ ହୁଅନ୍ତି । କିଛିଦିନ ଶ୍ରୀଗୁରୁସାନ୍ନିଧ୍ୟରେ ବାସକରି ଓ ତାଙ୍କର ଅନୁମତି ନେଇ ଗୌଡ଼ୀୟ ବୈଷ୍ଣବଦର୍ଶନରେ ପାରଙ୍ଗମ ହେବା ଆଶାରେ ଶ୍ରୀଧାମ ବୃନ୍ଦାବନରେ ଶ୍ରୀମଦ୍ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ ନିକଟ ଆଗମନ କରନ୍ତି । ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀ ଶ୍ରୀ ବଳଦେବଙ୍କର ବିନୟ, ନମ୍ରତା, ବୈରାଗ୍ୟ ଓ ସ୍ୱାଧ୍ୟାୟଶୀଳତା ଦର୍ଶନ କରି ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କ ନିଜ ନିକଟରେ ରଖି 'ଗୌଡ଼ୀୟ ଅଚିନ୍ତ୍ୟଭେଦାଭେଦବାଦ' ସମ୍ବନ୍ଧରେ ବିଶେଷଭାବେ ଶିକ୍ଷାଦାନ ଦେବାକୁ ଲାଗିଲେ । ସେହି ସମୟଠାରୁ ଶ୍ରୀ ବଳଦେବ ଗୌଡ଼ୀୟ ସିଦ୍ଧାନ୍ତ ପ୍ରତି ମନପ୍ରାଣରେ ଆକୃଷ୍ଟ ହୋଇ ଉକ୍ତ ମତ

ପ୍ରଗ୍ରରରେ ସର୍ବତୋଆତ୍ମନିୟୋଗ କରନ୍ତି । ଏହି ସମୟରେ ଜୟପୁରର ରାଜଦରବାରରେ ଗୌଡ଼ୀୟ ସଂପ୍ରଦାୟ ସମ୍ବନ୍ଧରେ ଶ୍ରୀରାମାନୁଜ ସଂପ୍ରଦାୟ ସଙ୍ଗରେ ଏକ ବିରୋଧ ଉପସ୍ଥିତ ହୁଏ । ସେମାନଙ୍କ ପକ୍ଷରୁ ରାଜାଙ୍କୁ ଜଣାଇ ଦିଆହୁଏ ଯେ, ଗୌଡ଼ୀୟ ସଂପ୍ରଦାୟ, ପ୍ରସିଦ୍ଧ ଗ୍ରରି ସଂପ୍ରଦାୟର ବହିର୍ଭୂତ ଏବଂ ଏହି ସଂପ୍ରଦାୟର ପରିପୋଷକ ବେଦାନ୍ତଭାଷ୍ୟ ନାହିଁ । ସୁତରାଂ ଏହି ସଂପ୍ରଦାୟର ଶ୍ରୀଗୋବିନ୍ଦ ସେବାରେ ଅଧିକାରର ପ୍ରଶ୍ନ ଉଠୁନାହିଁ । ସେତେବେଳେ ଜୟପୁରର ରାଜା ଗୌଡ଼ୀୟ ସଂପ୍ରଦାୟର ଶିଷ୍ୟ ଥିଲେ ।

ସେହି ସମୟରେ ସେ ଏହି ସମ୍ବାଦ ବୃନ୍ଦାବନସ୍ଥ ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ ନିକଟକୁ ପ୍ରେରଣ କରନ୍ତି ଏବଂ ଜାଣିବାକୁ ଗ୍ରହାନ୍ତି ଗୌଡ଼ୀୟ ସଂପ୍ରଦାୟର 'ବେଦାନ୍ତ ଭାଷ୍ୟ' ଅଛି କି ନାହିଁ ? ଯଦି ଥାଏ, ତାହା ଯେପରି ଅତି ସତ୍ୱର ଜୟପୁରସ୍ଥ ଶ୍ରୀ ସଂପ୍ରଦାୟ ପଣ୍ଡିତଗଣଙ୍କ ସମ୍ମୁଖରେ ଉପସ୍ଥାପନ କରାହୁଏ । ସେତେବେଳେ ଶ୍ରୀଳ ଚକ୍ରବର୍ତ୍ତୀପାଦ ଅତି ବୃଦ୍ଧ । ଦୁର୍ଗମପଥ ଅତିକ୍ରମ କରି ଜୟପୁର ଯିବା ତାଙ୍କ ପକ୍ଷରେ ଅସମ୍ଭବ । ତେଣୁ ସେ ତାଙ୍କ ଶିଷ୍ୟ ଓ ଛାତ୍ର ଶ୍ରୀ ବଳଦେବଙ୍କୁ ଜୟପୁର ପଠାଇ ଦେଲେ । ଶ୍ରୀବଳଦେବ ବିଦ୍ୟାଭୂଷଣ ସର୍ବଶାସ୍ତ୍ରରେ ପାରଙ୍ଗମ ଓ ପ୍ରଖର ପ୍ରତିଭାର ପ୍ରଦୀପ୍ତ ପ୍ରଭାକରର ଅକାଟ୍ୟ ଯୁକ୍ତିଜାଲରେ ଓ ଦାର୍ଶନିକ ବିଗ୍ରର ବିଶ୍ଳେଷଣର ପ୍ରବଳ ପ୍ରବାହରେ ଶ୍ରୀସଂପ୍ରଦାୟୀ ପଣ୍ଡିତଗଣ କ୍ଷତବିକ୍ଷତ ଓ ପର୍ଯ୍ୟୁଦସ୍ତ ହୋଇ ପରାଜୟ ସ୍ୱୀକାର କରନ୍ତି । ଶ୍ରୀ ବଳଦେବ କହିଲେ—ଗୌଡ଼ୀୟ ସଂପ୍ରଦାୟ ପ୍ରବର୍ତ୍ତକ ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁ ଶ୍ରୀମଦ୍ ଭାଗବତକୁ ହିଁ ଅକୃତ୍ରିମ ବେଦାନ୍ତଭାଷ୍ୟ ବୋଲି ସ୍ୱୀକାର କରିଛନ୍ତି । ଷଟ୍‌ସନ୍ଦର୍ଭ ତାହାର ପ୍ରମାଣ । ଏଥିରେ ସଭାସ୍ଥଳରେ ଶ୍ରୀସଂପ୍ରଦାୟୀ ପଣ୍ଡିତଗଣ ଆପତ୍ତି ଉଠାଇଲେ—ସାକ୍ଷାତ୍ ବେଦାନ୍ତଭାଷ୍ୟ ବ୍ୟତୀତ ଅନ୍ୟ କିଛି ସ୍ୱୀକାର କରିବାକୁ ଗ୍ରହିଁଲେ ନାହିଁ । ଅଗତ୍ୟା ଶ୍ରୀବଳଦେବ ସେମାନଙ୍କୁ ଭାଷ୍ୟ ଦେଖାଇବେ ବୋଲି କହି ପ୍ରତିଶ୍ରୁତି ଦେଲେ ।

ଶ୍ରୀ ବଳଦେବ ଅତ୍ୟନ୍ତ ଦୁଃଖିତ ମନରେ ଶ୍ରୀଗୋବିନ୍ଦ ମନ୍ଦିରକୁ ଆସି ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ବନ୍ଦନା କରି ବ୍ୟଥିତ ହୃଦୟର ବ୍ୟଥା ଶ୍ରୀଗୋବିନ୍ଦଦେବଙ୍କ ନିକଟରେ ନିବେଦନ କଲେ । ରାତ୍ରି ଶେଷ ପ୍ରହରରେ ଶ୍ରୀଗୋବିନ୍ଦଦେବ ତାଙ୍କୁ କହିଲେ—"ହେ ବଳଦେବ ! ତୁମେ ନୂତନ କରି ବେଦାନ୍ତଭାଷ୍ୟ ରଚନା କର । ତାହା ମୋର ସମ୍ମତଭାଷ୍ୟ ହେବ । କେହି ତାହା ଅଗ୍ରାହ୍ୟ କରିପାରିବେ ନାହିଁ ।" ଶ୍ରୀଗୋବିନ୍ଦଦେବ ପୁନରାଦେଶ କଲେ—"କୁରୁ କରୁଁ । ଏପରି ଅସ୍ପଷ୍ଟ ଆଦେଶରେ ଶ୍ରୀବଳଦେବଙ୍କ ସଂଶୟ ଦୂର ହେଲାନାହିଁ । ସେ ପୂର୍ବବତ ସେଠାରେ ସେହିପରି ଭାବେ ପଡ଼ିରହିଲେ । ପୁଣି ଆଦେଶ ହେଲା—କୁରୁ ତବ ଭବିଷ୍ୟତି । ଏଥର ମଧ୍ୟ ତାଙ୍କର ସନ୍ଦେହ ଦୂର ହେଲା

ନାହିଁ । ସେ ପୂର୍ବପରି ପୁନର୍ବାର ଶ୍ରୀଗୋବିନ୍ଦଦେବଙ୍କ ଶରଣାପନ୍ନ ହୋଇ ପଡ଼ିରହିଲେ । ଏପରି ଆଜ୍ଞା ହେଲା—ବ୍ରହ୍ମସୂତ୍ରାଣି ବ୍ୟାଚକ୍ଷ୍ୱ ତଦ୍‌ଭାଷ୍ୟଂ ତେ ସେତ୍‌ସ୍ୟାତି ।" ଶ୍ରୀବଳଦେବ ଏଥର ଶ୍ରୀଗୋବିନ୍ଦଦେବଙ୍କ ସୁସ୍ପଷ୍ଟ ଆଜ୍ଞାପାଇ ତତ୍‌କ୍ଷଣାତ୍ ସେଠାରେ ହିଁ "ଶ୍ରୀଗୋବିନ୍ଦଭାଷ୍ୟ" ନାମରେ ବେଦାନ୍ତ ଦର୍ଶନର ଭାଷ୍ୟ ଲେଖିବାକୁ ଆରମ୍ଭ କରନ୍ତି । ଶ୍ରୀଗୋବିନ୍ଦ ପାଦପଦ୍ମ ଧ୍ୟାନକରି ଏବଂ ଏକମାସ ମଧ୍ୟରେ (କାହାରି କାହାରି ମତରେ ତିନିମାସ) ସମଗ୍ର ବ୍ରହ୍ମସୂତ୍ରର ଶ୍ରୀଗୋବିନ୍ଦ ଆଶୀର୍ବାଦପୂତ ଭାଷ୍ୟ ଶ୍ରୀଗୋବିନ୍ଦଭାଷ୍ୟ ନାମରେ ସମ୍ପୂର୍ଣ୍ଣତା ଲାଭକଲା ଜୟପୁରର 'ଗଲତା' ନାମକ ସ୍ଥାନରେ ୧୬୨୮ ଶକାବ୍ଦ ଅର୍ଥାତ୍ ୧୭୦୬ ଖ୍ରୀଷ୍ଟାବ୍ଦରେ । ଶ୍ରୀବଳଦେବ ଶ୍ରୀଗୋବିନ୍ଦଭାଷ୍ୟର ଶେଷଭାଗରେ ଲେଖିଲେ—

"ବିଦ୍ୟାରୂପଂ ଭୂଷଣଂ ମେ ପ୍ରଦାୟକ୍ଷ୍ୟାତିନ୍ନେ ତେନ ଯୋ ମାମୁଦାରଃ ।
ଶ୍ରୀଗୋବିନ୍ଦ ସ୍ୱପ୍ନ ନିର୍ଦ୍ଦିଷ୍ଟଭାଷ୍ୟୋ ରାଧାବନ୍ଧୁ ବନ୍ଧୁରାଙ୍ଗଂ ସ ଜୀୟାତ୍ ।"

ଯେ ମୋ ପ୍ରତି ଅତି ଉଦାର ଓ ଦୟାପରବଶ ହୋଇ ସ୍ୱପ୍ନାଦେଶ ଦେଇ ଭାଷ୍ୟ ଲେଖାଇଛନ୍ତି, ଯେଉଁ ଭାଷ୍ୟ ବିଦ୍ୱତ୍ ସମାଜରେ ପରମ ସମାଦର ଓ ଖ୍ୟାତିଲାଭ କରିଛି ଏବଂ ଯେଉଁ ଭାଷ୍ୟ ପାଇଁ ବିଦ୍ୱନ୍ମଣ୍ଡଳୀ ମୋତେ 'ବିଦ୍ୟାଭୂଷଣ' ଉପାଧି ଦାନ କରିଅଛନ୍ତି, ସେହି ଶ୍ରୀରାଧିକାଙ୍କର ପ୍ରାଣବନ୍ଧୁ ଶ୍ରୀଗୋବିନ୍ଦ ଜୟଯୁକ୍ତ ହେଉନ୍ତୁ ।

ଏଠାରେ ବିଶେଷକରି "ରାଧାବନ୍ଧୁ" ଶବ୍ଦର ପ୍ରୟୋଗଦ୍ୱାରା ଶ୍ରୀବଳଦେବ ବୁଝାଇବାକୁ ଚାହିଁଛନ୍ତି—ଶ୍ରୀ ରାଧାହିଁ ଶ୍ରୀଗୋବିନ୍ଦଙ୍କର ପ୍ରେୟସୀ-ଶ୍ରେଷ୍ଠା ଏବଂ ସେ ହିଁ ଶ୍ରୀଗୋବିନ୍ଦଙ୍କ ସଙ୍ଗରେ ସମସ୍ତଙ୍କର ଉପାସ୍ୟା । ଶ୍ରୀ ଗୋବିନ୍ଦଭାଷ୍ୟ ଶ୍ରୀବଳଦେବଙ୍କୁ ଚିର ଅମର କରି ରଖିଯାଇଛି ଏବଂ ଯେତେଦିନ ଏଯାଁନ୍ତ ଭାରତବର୍ଷରେ ସଂସ୍କୃତଭାଷାର ସମାଦର ରହିଥିବ, ଭାରତୀୟ ଦର୍ଶନର ସମାଦର ଥିବ, ତାବତ୍‌କାଳ ପର୍ଯ୍ୟନ୍ତ ଶ୍ରୀବଳଦେବ ବିଦ୍ୟାଭୂଷଣ—'ବିଶ୍ୱବିଭୂଷଣ' ହୋଇ ସଗୌରବରେ ଜୀବିତ ରହିଥିବେ । 'ଭାଷ୍ୟ' ଗ୍ରନ୍ଥ ନେଇ ଶ୍ରୀବଳଦେବ ବିଦ୍ୟାଭୂଷଣ ସଭାସ୍ଥଳକୁ ଆସିଲେ ଏବଂ ରମାନନ୍ଦୀ ପଣ୍ଡିତ-ଗଣଙ୍କୁ ଦେଖାଇଲେ । ଏଥିରେ ସମସ୍ତେ ନିର୍ବାକ୍ ହୋଇଗଲେ । ଗୌଡ଼ୀୟ ବୈଷ୍ଣବ ସଂପ୍ରଦାୟରେ ବିଜୟ-ବୈଜୟନ୍ତୀ ଉଡ୍ଡୀନ ହେଲା । ରାଜା ଏବଂ ଗୌଡ଼ୀୟ ଭକ୍ତଗଣ ସୁଖୀ ହେଲେ । ପଣ୍ଡିତଗଣ ଶ୍ରୀବଳଦେବଙ୍କୁ 'ବିଦ୍ୟାଭୂଷଣ' ଉପାଧି ପ୍ରଦାନ କଲେ ।

ଶ୍ରୀ ସଂପ୍ରଦାୟର ପଣ୍ଡିତଗଣ ଶ୍ରୀ ବଳଦେବ ବିଦ୍ୟାଭୂଷଣଙ୍କ ନିକଟରେ ପରାଭବ ସ୍ୱୀକାର କଲେ ଏବଂ ଶିଷ୍ୟତ୍ୱ ଗ୍ରହଣ କରିବାକୁ ଇଚ୍ଛାପ୍ରକାଶ କଲେ । ଶ୍ରୀବଳଦେବ ବିଦ୍ୟାଭୂଷଣ ଅତି ବିନୀତ ଭାବରେ ତହିଁରେ ଅସ୍ୱୀକୃତି ଜଣାଇଲେ । ଶ୍ରୀଳ ବିଦ୍ୟା-ଭୂଷଣ ଜୟପୁରରୁ ଜୟପତ୍ର ନେଇ ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ ଶ୍ରୀପାଦପଦ୍ମରେ ଅର୍ପଣ

କଲେ ଏବଂ ସମସ୍ତ କଥା ନିବେଦନ କଲେ । ଶ୍ରୀବୃନ୍ଦାବନବାସୀ ବୈଷ୍ଣବଗଣ ପରମ ସୁଖୀ ହେଲେ । ଶ୍ରୀଳ ବିଶ୍ୱନାଥ ଚକ୍ରବର୍ତ୍ତୀ ଶ୍ରୀବଳଦେବଙ୍କୁ ପ୍ରାଣଖୋଲି ପ୍ରଚୁର ଆଶୀର୍ବାଦ କଲେ ଏବଂ ଷଟ୍‌ସନ୍ଦର୍ଭର ଭାଷ୍ୟ ଲେଖିବାକୁ ଉପଦେଶ ଦାନ କଲେ । ଅତଃପର, ଶ୍ରୀମଦ୍ ବିଶ୍ୱନାଥ ଚକ୍ରବର୍ତ୍ତୀ ଠାକୁର ନିତ୍ୟଲୀଳାରେ ପ୍ରବେଶ କରନ୍ତେ ଗୌଡ଼ୀୟ ବୈଷ୍ଣବ ଜଗତର ଗୋଟିଏ ଚିରୋଜ୍ଜ୍ୱଳ ଜ୍ୟୋତିଷ୍କର ଯେପରି ଅସ୍ତଗମନ ହୋଇଗଲା । ସେହି ସମୟରୁ ଶ୍ରୀମଦ୍ ବଳଦେବ ବିଦ୍ୟାଭୂଷଣ ପାଦ ଗୌଡ଼ୀୟ ବୈଷ୍ଣବ ସଂଘର ପାତ୍ରରାଜ ରୂପେ ଅଭିଷିକ୍ତ ହେଲେ ।

## ଶ୍ରୀମଦ୍ ବଳଦେବ ବିଦ୍ୟାଭୂଷଣଙ୍କର ସିଦ୍ଧାନ୍ତ ଓ ଶିକ୍ଷା :

ଏକମେବ ପରଂତତ୍ତ୍ୱଂ ବାଚ୍ୟବାଚକ ଭାବଭାକ୍ ।
ବାଚ୍ୟଃ ସର୍ବେଶ୍ୱରୋ ଦେବୋ ବାଚକଃ ପ୍ରଣବୋ ଭବେତ୍ ।।
ମତ୍ସ୍ୟ କୂର୍ମାଦିଭି ରୂପୈର୍ଯଥା ବାଚ୍ୟୋ ବହୁର୍ଭବେତ୍ ।
ବାଚକୋଽପି ତଥାର୍ଥାଦିଭବାଦ୍ ବହୁରୁଦୀର୍ଯ୍ୟତେ ।।
ଆଦ୍ୟନ୍ତରହିତ ତ୍ୱେନ ସ୍ୱୟଂ ନିତ୍ୟଂ ପ୍ରକୀର୍ତ୍ତ୍ୟତେ ।
ଆବିର୍ଭାବାତିରୋଭାବୌ ସ୍ୟାତାମସ୍ୟ ଯୁଗେ ଯୁଗେ ।।

(ତତ୍‌କୃତଂ ସିଦ୍ଧାନ୍ତଦର୍ପଣମ୍)

ଏକ ହିଁ ପରତତ୍ତ୍ୱ ବାଚ୍ୟ ଓ ବାଚକଭାବେ ଦୁଇ ପ୍ରକାର । ପରମେଶ୍ୱର ହିଁ ପ୍ରଣବ (ଓଁ) ତାହାଙ୍କର ବାଚକ । ବାଚ୍ୟବସ୍ତୁ ବାଚ୍ୟ ପରମେଶ୍ୱର କୂର୍ମାଦିରୂପେ ଯେପ୍ରକାର ବହୁ ବାଚକ ରୂପ ପ୍ରଣବ ମଧ୍ୟ ତଦ୍ରୂପ ଋକସାମାଦି ରୂପେ ବହୁରୂପ ପ୍ରାପ୍ତ ହୋଇଛନ୍ତି । ସେହି ପରମେଶ୍ୱରଙ୍କର ଆଦ୍ୟନ୍ତ ନାହିଁ । ଏହି କାରଣରୁ ହିଁ ସେ ସ୍ୱୟଂ ନିତ୍ୟରୂପରେ ପ୍ରକୀର୍ତ୍ତିତ ହୋଇଥାନ୍ତି । ଯୁଗେ ଯୁଗେ ତାଙ୍କର ଜଗତରେ ଆବିର୍ଭାବ ଓ ତିରୋଭାବ ହୋଇଥାଏ ।

ଈଶ୍ୱର—ଜ୍ଞାନ, କ୍ରିୟା ଓ ଇଚ୍ଛାରୂପ ତିନୋଟି ଧର୍ମବିଶିଷ୍ଟ । ସେ ହିଁ ଏଇ ଜଗତର କର୍ତ୍ତା ଓ ନିତ୍ୟକାରଣ । ଚୈତନ୍ୟଖଣ୍ଡ ବା ଚୈତନ୍ୟକଣା ରୂପ ବିଭିନ୍ନାଂଶ ଜୀବଗଣଙ୍କର ଇଚ୍ଛାଥିଲେ ମଧ୍ୟ ଈଶ୍ୱରଙ୍କର ଅଖଣ୍ଡଜ୍ଞାନ ଓ ସତ୍ୟସଙ୍କଳ୍ପସିଦ୍ଧ କ୍ରିୟାଶକ୍ତି ବ୍ୟତୀତ ସୃଷ୍ଟି ହୁଏନା । ଈଶ୍ୱରଙ୍କ ବାକ୍ୟ ବଳରେ ବେଦ ଭ୍ରମ, ପ୍ରମାଦ, ବିପ୍ରଲିପ୍‌ସା ଓ କରଣାପାଟବ—ଏହି ଦୋଷଚତୁଷ୍ଟୟ ଶୂନ୍ୟ । ସୁତରାଂ ବେଦ ହିଁ ସ୍ୱତଃସିଦ୍ଧ ପ୍ରମାଣ । ଜ୍ଞାନାଦି ଯେପରି ଈଶ୍ୱରଙ୍କର ନିତ୍ୟଧର୍ମ ବୋଲି କୀର୍ତ୍ତିତ ହୋଇଛି, ବେଦ ମଧ୍ୟ ସେହିରୂପେ ଈଶ୍ୱରଜ୍ଞାନର ବିସ୍ତୃତି ରୂପ ନିଶ୍ୱସିତ ବୋଲି ବୋଲି କୀର୍ତ୍ତିତ ହୋଇଛି । ବେଦପରି ବେଦାଙ୍ଗ, ପୁରାଣ-ଇତିହାସକୁ ମଧ୍ୟ କର୍ତ୍ତୃବର୍ଜିତ ଅନାଦି ବୋଲି ଜାଣିବ । (ସିଦ୍ଧାନ୍ତ ଦର୍ପଣ)

"ତଦେବଂ ସର୍ବତଃ ଶ୍ରେଷ୍ଠ୍ୟ ଶବ୍ଦସ୍ୟ ସ୍ଥିତେ
ତତ୍ତ୍ୱନିର୍ଣ୍ଣାୟକସ୍ତୁ ଶ୍ରୁତିଲକ୍ଷଣ ଏବ ନ ତ୍ୱାର୍ଷଲକ୍ଷଣୋଽପି ।"
(ବେଦାନ୍ତ ସ୍ୟମନ୍ତକ)

ପ୍ରତ୍ୟକ୍ଷ, ଅନୁମାନ, ଉପମାନ, ଶବ୍ଦ, ଅର୍ଥାପତ୍ତି, ଅନୁପଲବ୍ଧି, ସମ୍ଭବ ଓ ଐତିହ୍ୟ । ଏହି ଆଠଟି ପ୍ରମାଣ ମଧ୍ୟରେ ଶବ୍ଦ ପ୍ରମାଣ ସର୍ବଶ୍ରେଷ୍ଠ ସ୍ଥିର ହେବାରୁ ଶ୍ରୁତିଲକ୍ଷଣ ଶବ୍ଦ ହିଁ ଏକମାତ୍ର ତତ୍ତ୍ୱ ନିର୍ଣ୍ଣୟ କରିବାକୁ ସକ୍ଷମ । ଆର୍ଷଲକ୍ଷଣ ଶବ୍ଦ ପ୍ରମାଣ ହୋଇପାରେ ନା । କାରଣ ଋଷିଗଣଙ୍କ ମଧ୍ୟରେ ପରସ୍ପର ମତାନୈକ୍ୟ ଦେଖାଯାଏ । ଅତଏବ ଅପ୍ରାକୃତ ନିତ୍ୟ ବେଦଶାସ୍ତ୍ର ଶ୍ରୁତି ପ୍ରମାଣ ମଧ୍ୟରେ ଶ୍ରେଷ୍ଠ; କାରଣ ବେଦଶାସ୍ତ୍ର ଚାରିପ୍ରକାର ଦୋଷଶୂନ୍ୟ ସାକ୍ଷାତ ଈଶ୍ୱରତୁଲ୍ୟ ।

(ବେଦାନ୍ତ ସ୍ୟମନ୍ତକ ୧।୫୧)

ପ୍ରମାଣ ଦ୍ୱାରା ଯାହା ନିର୍ଣ୍ଣୟ କରାହୁଏ, ତାହା ପ୍ରମେୟ । ତାହା ପାଞ୍ଚ ପ୍ରକାର—ଈଶ୍ୱର, ଜୀବ, ପ୍ରକୃତି, କାଳ ଓ କର୍ମ ।

ଈଶ୍ୱର—ବିଭୂ, ସର୍ବଜ୍ଞ, ବିଜ୍ଞାନାତ୍ମକ, ଆନନ୍ଦମୟ, ଗୁଣବାନ ଓ ପୁରୁଷୋତ୍ତମ । ସେ ସମସ୍ତଙ୍କ ସ୍ୱାମୀ; ଜନ୍ମ ବା ମରଣାଦିଶୂନ୍ୟ । ସେ ବ୍ରହ୍ମା-ଶିବାଦି ଦେବତାଗଣଙ୍କର ଦେବତା—(ଦେବତାନାଂ ପରମଞ୍ଚ ଦୈବତମ୍) ପତିଗଣଙ୍କର ପରମପତି ଓ ପରମ ସ୍ତବନୀୟ ପୁରୁଷ । ସେ ପ୍ରଳୟ-କାଳାଦିରେ ଏକମାତ୍ର ଅବସ୍ଥାନ କରନ୍ତି । ବ୍ରହ୍ମା, ଶିବ, ଇନ୍ଦ୍ର, ବରୁଣ ପ୍ରଭୃତି ସମସ୍ତ ଦେବଗଣ ହିଁ ବିଲୟପ୍ରାପ୍ତ ହୁଅନ୍ତି ପରମାଶ୍ରୟ ପରମେଶ୍ୱରଙ୍କ ଠାରେ ।

ସେହି ଶ୍ରୀହରିଙ୍କର ତିନୋଟି ଶକ୍ତି ବିଦ୍ୟମାନ । ପରା ନାମ୍ନୀ ଶକ୍ତି, କ୍ଷେତ୍ରଜ୍ଞା ନାମ୍ନୀ ଶକ୍ତି ଓ ମାୟା ନାମ୍ନୀ ଶକ୍ତି । (ବେଦାନ୍ତ ସ୍ୟମନ୍ତକ : ୨।୧୮) ପରାଶକ୍ତି ସ୍ୱରୂପାଶକ୍ତି; କ୍ଷେତ୍ରଜ୍ଞ ଶକ୍ତି ଜୀବଶକ୍ତି ଓ ବହିରଙ୍ଗା ମାୟା ଶକ୍ତି । ବିଷ୍ଣୁପୁରାଣରେ ପରାଶକ୍ତି = ବିଷ୍ଣୁଶକ୍ତି । ଅପରାଶକ୍ତି = ଜୀବଶକ୍ତି ଏବଂ ଅବିଦ୍ୟା ନାମ୍ନୀ ତୃତୀୟା କର୍ମଶକ୍ତି ।

ଶ୍ରୀହରି ଦେହଦେହୀ ଭେଦଶୂନ୍ୟ । ସେ ଦ୍ୱିଭୁଜ, ବନମାଳାଧାରୀ, ସଚ୍ଚିଦାନନ୍ଦ ବିଗ୍ରହ, ଗୋପାଳ ଗୋବିନ୍ଦ ଆଦି ନାମରେ ଅଭିହିତ । ଲକ୍ଷ୍ମୀ—ଶ୍ରୀ ଭଗବାନଙ୍କଠାରୁ ଅଭିନ୍ନସ୍ୱରୂପା । "ସେଇ ଜଗନ୍ମାତା ଲକ୍ଷ୍ମୀ ବିଷ୍ଣୁଙ୍କର ଅନପାୟିନୀ ଶକ୍ତି ।" ଶ୍ରୀବିଷ୍ଣୁ ଯେପରି ସର୍ବଗାମୀ, ସର୍ବବ୍ୟାପକସ୍ୱରୂପ, ଏହି ଲକ୍ଷ୍ମୀ ମଧ୍ୟ ତଦ୍ରୂପ ସର୍ବଗାମିନୀ, ସର୍ବବ୍ୟାପକସ୍ୱରୂପା । ଲକ୍ଷ୍ମୀଦେବୀ ଶ୍ରୀହରିଙ୍କ ନ୍ୟାୟ ବହୁରୂପା । ଏହି ଲକ୍ଷ୍ମୀଦେବୀ

ଶ୍ରୀବିଷ୍ଣୁଙ୍କର ଦେବତ୍ୱରେ ଦେବଦେହା ଏବଂ ମନୁଷ୍ୟତ୍ୱରେ ମାନୁଷୀସ୍ୱରୂପା । (ବେଦାନ୍ତ ସ୍ୟମନ୍ତକ : ୨।୩୬)

"ତେଷୁ ସବେଷୁ ଲକ୍ଷ୍ମୀରୂପେସୁ ରାଧାୟାଃ ସ୍ୱୟଂ ଲକ୍ଷ୍ମୀତ୍ୱଂ ମନ୍ତବ୍ୟମ୍ । ସର୍ବେଷୁ ଭଗବଦ୍‌ରୂପେଷୁ କୃଷ୍ଣସ୍ୟ ସ୍ୱୟଂ ଭଗବତ୍ତ୍ୱବତ୍ ।" (ବେଦାନ୍ତ ସ୍ୟମନ୍ତକଃ ୨।୩୭) ସେହି ଲକ୍ଷ୍ମୀଗଣଙ୍କ ମଧ୍ୟରେ ଶ୍ରୀ ରାଧିକା ହିଁ ସ୍ୱୟଂ ଲକ୍ଷ୍ମୀ–ଏହା ହିଁ ବୁଝିବାକୁ ହେବ । ସମସ୍ତ ଭଗବଦ୍ ରୂପ ମଧ୍ୟରେ ଶ୍ରୀକୃଷ୍ଣ ହିଁ ସ୍ୱୟଂ ଭଗବାନ । ବୃହତ୍ ଗୌତମୀୟ ତନ୍ତ୍ରରେ–"ଶ୍ରୀରାଧିକା ହିଁ ଦେବୀ କୃଷ୍ଣମୟୀ, ପରଦେବତା, ସର୍ବଲକ୍ଷ୍ମୀମୟୀ, ସର୍ବକାନ୍ତି ଓ ସମ୍ମୋହିନୀ, ଏବଂପର ବୋଲି କଥିତ ହୋଇଛନ୍ତି ।"

ଶ୍ରୀମଦ୍ ଭଗବତରେ–ସମସ୍ତ ଅବତାର ପୁରୁଷଙ୍କର ଅଂଶ ବା କଳା; କିନ୍ତୁ ଶ୍ରୀକୃଷ୍ଣ ହିଁ ସ୍ୱୟଂ ଭଗବାନ୍ । ଅତଏବ ଯାବତୀୟ ଉପାସ୍ୟ ତତ୍ତ୍ୱ ଶ୍ରୀକୃଷ୍ଣ ହିଁ ପରମ ଉପାସ୍ୟତତ୍ତ୍ୱ । ଜୀବ ଈଶ୍ୱରଙ୍କର ଅଣୁଶକ୍ତି । ଜୀବାତ୍ମା–ନିତ୍ୟ ଅବିନାଶୀ । ସେହି ଜୀବାତ୍ମା ନିତ୍ୟଜ୍ଞାନ ଓ ଗୁଣବିଶିଷ୍ଟ । "ସ ଚ ଜୀବୋ ଭଗବଦ୍-ଦାସୋ ମନ୍ତବ୍ୟଃ ।" ଦାସ ଭୂତୋ ହରେରେବ ନାନ୍ୟ ସୈବ କଦାଚନେତି ।"
(ପଦ୍ମପୁରାଣ ଭକ୍ତଃ)

ସେହି ଜୀବ ତତ୍ତ୍ୱତଃ ଭଗବାନଙ୍କର ଦାସ । ଯଥା, ପଦ୍ମପୁରାଣରେ–ଏହି ଜୀବ ଶ୍ରୀହରିଙ୍କର ଦାସସ୍ୱରୂପ । କେବେହେଲେ ବି ଅନ୍ୟ କାହାରି ନୁହେଁ । ସେହି ଜୀବ ଶ୍ରୀ ଗୁରୁଚରଣାରବିନ୍ଦ ଆଶ୍ରୟ ଦ୍ୱାରା ଏବଂ ଶ୍ରୀ ଗୁରୁକୃପାଲବ୍ଧ ଶ୍ରୀ ହରିଭକ୍ତି ଦ୍ୱାରା ପରମ ପୁରୁଷାର୍ଥ ଲଭ କରେ । ଶ୍ରୀଳ ବଳଦେବ ବିଦ୍ୟାଭୂଷଣ ପାଦ ବେଦାନ୍ତ ସ୍ୟମନ୍ତକ ଗ୍ରନ୍ଥ ଶେଷରେ ନିଜେ ଶ୍ରୀଗୁରୁପାଦ ପଦ୍ମଙ୍କର ଏହିରୂପେ ବନ୍ଦନା କରିଛନ୍ତି–,

"ରାଧାଦାମୋଦର ନାମ ବିଭ୍ରତା,
ବିପ୍ରେଣ ବେଦାନ୍ତମୟଃ ସ୍ୟମନ୍ତକଃ ।
ଶ୍ରୀ ରାଧିକାୟୈ ବୀନିବେଦିତୋମୟା
ତସ୍ୟାଃ ପ୍ରମୋଦଂସ ତନୋତୁ ସର୍ବଦା ।।"

ଶ୍ରୀରାଧା ଦାମୋଦର ନାମକ କୌଣସି ବିପ୍ର (ମଦୀୟ ଗୁରୁ) କର୍ତ୍ତୃକ ପ୍ରେରିତ ହୋଇ ମତ୍‌କର୍ତ୍ତୃକ ଶ୍ରୀରାଧିକାଙ୍କ ଉଦ୍ଦେଶ୍ୟରେ ବେଦାନ୍ତ ସ୍ୟମନ୍ତକ ନିବେଦିତ ହେଲା । ସେହି ସ୍ୟମନ୍ତକ ସତତ ତାହାଙ୍କର ହିଁ ପ୍ରମୋଦ ବର୍ଦ୍ଧନ କରୁ । ଶ୍ରୀଳ ବଳଦେବ ବିଦ୍ୟାଭୂଷଣପାଦ ପରବର୍ତ୍ତୀ କାଳରେ ଶ୍ରୀ ଗୋବିନ୍ଦ ଦାସ ନାମରେ ପରିଚତ ହୁଅନ୍ତି ପରମବିରକ୍ତ ଶ୍ରୀ ପିତାମ୍ବର ଦାସଙ୍କ ନିକଟରୁ ବେଶାଶ୍ରୟ ଗ୍ରହଣ କରି । ଶ୍ରୀ ନିତ୍ୟାନନ୍ଦ ପ୍ରଭୁଙ୍କ ଶିଷ୍ୟ ଶ୍ରୀ ଗୌରଦାସ ପଣ୍ଡିତ, ତାହାଙ୍କ ଶିଷ୍ୟ ଶ୍ରୀ ହୃଦୟ ଚୈତନ୍ୟ

ଠାକୁର, ତାଙ୍କ ଦୀକ୍ଷା-ଶିଷ୍ୟ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ, ତାହାଙ୍କର ଦୀକ୍ଷା-ଶିଷ୍ୟ ଶ୍ରୀ ରସିକାନନ୍ଦ ମୁରାରି; ତାହାଙ୍କର ଦୀକ୍ଷା-ଶିଷ୍ୟ ଶ୍ରୀ ନୟନାନନ୍ଦ (ଶ୍ରୀ ରସିକାନନ୍ଦଙ୍କର ପୌତ୍ର), ଶ୍ରୀ ନୟନାନନ୍ଦଙ୍କର ଶିଷ୍ୟ ଶ୍ରୀ ରାଧା ଦାମୋଦର । ଶ୍ରୀ ରାଧାଦାମୋଦରଙ୍କର ଦୀକ୍ଷା ଶିଷ୍ୟ ହିଁ ଶ୍ରୀ ବଳଦେବ ବିଦ୍ୟାଭୂଷଣ । ତାହାଙ୍କର ଦୁଇଜଣ ପ୍ରଧାନ ଶିଷ୍ୟ ଶ୍ରୀ ଉଦ୍ଧବ ଦାସ ଓ ଶ୍ରୀ ନନ୍ଦନ ମିଶ୍ର ଥିଲେ ।

## ତତ୍‌କର୍ତ୍ତୃକ ବିରଚିତ ଗ୍ରନ୍ଥାବଳୀ :

୧ । ଶ୍ରୀଗୋବିନ୍ଦଭାଷ୍ୟ, ୨ । ସିଦ୍ଧାନ୍ତ ରତ୍ନ ବା ଭାଷ୍ୟପୀଠକ, ୩ । ବେଦାନ୍ତ ସ୍ୟମନ୍ତକ, ୪ । ପ୍ରମେୟ ରତ୍ନାବଳୀ, ୫ । ସିଦ୍ଧାନ୍ତ ଦର୍ପଣ, ୬ । ସାହିତ୍ୟ କୌମୁଦୀ, ୭ । କାବ୍ୟକୌସ୍ତୁଭ, ୮ । ବ୍ୟାକରଣ କୌମୁଦୀ, ୯ । ପଦକୌସ୍ତୁଭ, ୧୦ । ବୈଷ୍ଣବାନନ୍ଦିନୀ (ଶ୍ରୀମଦ୍ ଭାଗବତର ଦଶମସ୍କନ୍ଧ ଟୀକା), ୧୧ । ଗୋପାଳତାପନୀ-ଭାଷ୍ୟ, ୧୨ । ଈଶାଦି ଦଶୋପନିଷଦ୍ ଭାଷ୍ୟ, ୧୩ । ଶ୍ରୀମଦ୍ ଭଗବଦ୍ ଗୀତାର ଗୀତାଭୂଷଣ ଭାଷ୍ୟ, ୧୪ । ଶ୍ରୀବିଷ୍ଣୁ ସହସ୍ରନାମ ଭାଷ୍ୟ, ୧୫ । ସଂକ୍ଷେପ ଭାଗବତାମୃତ ଟିପ୍ପଣୀ ସାରଙ୍ଗ ରଙ୍ଗଦା, ୧୬ । ତତ୍ତ୍ୱ ସନ୍ଦର୍ଭ ଟୀକା, ୧୭ । ସ୍ତବମାଳା ବିଭୂଷଣ ଭାଷ୍ୟ (ଶ୍ରୀରୂପଗୋସ୍ୱାମୀ), ୧୮ । ନାଟକ ଚନ୍ଦ୍ରିକା ଟୀକା, ୧୯ । ଚନ୍ଦ୍ରାଃ କୌସ୍ତୁଭ ଭାଷ୍ୟ, ୨୦ । ଶ୍ରୀଶ୍ୟାମାନନ୍ଦ ଶତକ ଟୀକା, ୨୧ । ଚନ୍ଦ୍ରାଲୋକ ଟୀକା, ୨୨ । ସାହିତ୍ୟ କୌମୁଦୀ ଟୀକା କୃଷ୍ଣାନନ୍ଦିନୀ, ୨୩ । ଶ୍ରୀଗୋବିନ୍ଦ ଭାଷ୍ୟର ଟୀକା ସୂକ୍ଷ୍ମ, ୨୪ । ସିଦ୍ଧାନ୍ତ ରତ୍ନ ଟୀକା ପ୍ରଭୃତି ୩୮ ଖଣ୍ଡ ଅମୂଲ୍ୟ ଗ୍ରନ୍ଥ ପ୍ରଣୟନ କରି ଚିରଭାସ୍ୱର ହୋଇ ରହିଛନ୍ତି । କଥିତ ଅଛି—ଶ୍ରୀଚୈତନ୍ୟ ପାର୍ଷଦ ଶ୍ରୀ ଗୋପୀନାଥ ମିଶ୍ର ଯେ କି ସାର୍ବଭୌମଙ୍କ ସହିତ ଶ୍ରୀମନ୍ମହାପ୍ରଭୁଙ୍କର ଶ୍ରୀମୁଖନିଃସୃତ ବେଦାନ୍ତସୂତ୍ର ଭାଷ୍ୟ ଶ୍ରବଣ କରନ୍ତି; ସେ ହିଁ ବ୍ରହ୍ମଗୌଡ଼ୀୟ ସମ୍ପ୍ରଦାୟର ଭାଷ୍ୟକାର ରୂପେ ପରେ ଶ୍ରୀଳ ବଳଦେବ ବିଦ୍ୟାଭୂଷଣ ରୂପେ ଆବିର୍ଭୂତ ହୁଅନ୍ତି । ସେ ବୈଦିକ ଓ ବୈଦାନ୍ତିକ ପାଣ୍ଡିତ୍ୟ ଓ ଅପାର ବ୍ରହ୍ମଧୀଷଣାର ପରିଚୟ ଦେଇ ଶ୍ରୀମନ୍ମହାପ୍ରଭୁଙ୍କ ପ୍ରବର୍ତ୍ତିତ ଓ ଶ୍ରୀଳ ଶ୍ରୀଜୀବଗୋସ୍ୱାମୀ କର୍ତ୍ତୃକ ବ୍ୟାଖ୍ୟାରେ "ଅଚିନ୍ତ୍ୟ ଭେଦାଭେଦ ବାଦ"କୁ ସ୍ୱୀକାର କରନ୍ତି ବେଦାନ୍ତ ଦର୍ଶନର ଅନ୍ୟାନ୍ୟ ମତବାଦକୁ ନିରସ୍ତ କରି ।

॥ ଇତି ଅଷ୍ଟମ ବୈଭବ ॥

———

# ନବମ ବୈଭବ

## ଅଥ ଶ୍ରୀ ଶ୍ରୀଧରସ୍ୱାମୀଙ୍କ ଚରିତାସ୍ୱାଦନ

ଶ୍ରୀଧର ସ୍ୱାମୀର ସ୍ଥାନେ ଗମନ କରିଲ ।
ଦର୍ଶନ ମାତ୍ରେତ ଧୂଳୟ ଗଡ଼ାଗଡ଼ି ଦିଲ ।।
(ଶ୍ରୀଶ୍ୟାମାନନ୍ଦ ପ୍ରକାଶ : ୧୦ମ-୧୦ଘ)

ବାଲେଶ୍ୱର ଜିଲ୍ଲାନ୍ତର୍ଗତ ଗୁପ୍ତ ବୃନ୍ଦାବନ ରେମୁଣାର ପ୍ରସିଦ୍ଧ ଶ୍ରୀକ୍ଷୀରଚୋର ଗୋପୀନାଥଜୀଉ ଦର୍ଶନ ଓ ତତ ସଂଶ୍ଲିଷ୍ଟ ପଞ୍ଚତୀର୍ଥ ଦର୍ଶନ ପରେ ସେଠାରୁ ଦୁଇ ମାଇଲ ଦୂରରେ ଅବସ୍ଥିତ 'ମୟୂର ଗ୍ରାମ' ବା 'ମରେଇ ଗାଁ' । ଯେଉଁଠାରେ ଶ୍ରୀମଦ ଭାଗବତର ବିଶ୍ୱବିଶ୍ରୁତ ଟୀକାକାର ଶ୍ରୀଶ୍ରୀଧରସ୍ୱାମୀପାଦଙ୍କର ପବିତ୍ର ଜନ୍ମସ୍ଥାନ ଦର୍ଶନ କରି ପରମ ପ୍ରୀତି ସହକାରେ ସଶ୍ରଦ୍ଧ ପ୍ରଣତି ପୂର୍ବକ ଧୂଳାରେ ଗଡ଼ାଗଡ଼ି ଦିଅନ୍ତି । ଶ୍ରୀଶ୍ୟାମାନନ୍ଦ ପ୍ରକାଶ ଗ୍ରନ୍ଥାନୁସାରେ ଶ୍ରୀ ଶ୍ରୀଧରସ୍ୱାମୀଙ୍କର ଜନ୍ମସ୍ଥାନ ଯେ ଓଡ଼ିଶାରେ ତାହା ସୁନିଶ୍ଚିତ ଏବଂ ଆହୁରି କିଛି ସନ୍ଦେହାତୀତ ପ୍ରମାଣ ସଂଗ୍ରହ କରାହେଇଛି ଯାହା ଅଭ୍ରାନ୍ତ ବୋଲି ସମସ୍ତଙ୍କ ନିକଟରେ ପ୍ରମାଣିତ ହେବ । ସେ ସମ୍ବନ୍ଧରେ ପରେ ଆଲୋଚନାରେ ପ୍ରବୃତ୍ତ ହେବି । କିନ୍ତୁ ତାହାଙ୍କ ସମ୍ପର୍କରେ ଅନୁମାନ ପ୍ରସୂତ କେତେଗୁଡ଼ିଏ ମତବାଦ ରହିଛି; ତାହାହିଁ ପ୍ରଥମେ ଆଲୋଚନା କରୁଛି ଯାହାକି ନାନା ଗ୍ରନ୍ଥରେ ଓ ନାନା ସମାଲୋଚକଙ୍କ ମତରେ ସ୍ଥିରୀକୃତ ହୋଇଛି । କେହି କେହି ତାହାଙ୍କୁ ଗୁଜରାଟ ଦେଶବାସୀ ମହାରାଷ୍ଟ୍ରୀୟ ବ୍ରାହ୍ମଣ କେହି ବା ବିଖ୍ୟାତ ଭଟ୍ଟିକାବ୍ୟ ଗ୍ରନ୍ଥର ରଚୟିତାର ଜନକ, ପରେ ଅଦ୍ୱୈତ ମତାବଲମ୍ବୀ ସନ୍ନ୍ୟାସୀ ବୋଲି ବର୍ଣ୍ଣନା କରିଛନ୍ତି । ଏହି ମତକୁ ଖଣ୍ଡନ କରି କେହି କେହି ମଧ୍ୟ କହିଛନ୍ତି—ଭଟ୍ଟିକାବ୍ୟ ଗୁଜରାଟ ଅନ୍ତର୍ଗତ ବଲ୍ଲଭୀ ନାମକ ନଗରର ଧରସେନ ରାଜାଙ୍କ ସଭାରେ ରଚିତ ହୋଇଥିଲା । ଚାରିଜଣ ଧରସେନ ରାଜାଙ୍କର ଅସ୍ତିତ୍ୱ ଶାସନଲିପି ଦ୍ୱାରା ପ୍ରମାଣିତ ହୋଇଛି । ଶେଷ ଧରସେନଙ୍କ ରାଜତ୍ୱକାଳ ପ୍ରାୟ ୬୫୦ ଖ୍ରୀଷ୍ଟାବ୍ଦ । ସୁତରାଂ ଭଟ୍ଟିକାବ୍ୟର ପିତା ଶ୍ରୀମଦ୍ ଭାଗବତର ଟୀକାକାର ଶ୍ରୀଧରସ୍ୱାମୀପାଦ କେବେ ହେଁ ହୋଇ ନ ପାରନ୍ତି । ଭଟ୍ଟିକାବ୍ୟର ପୁଷ୍ପିକାରେ କବିଙ୍କ ପିତାଙ୍କ ନାମ ଲିଖିତ ଅଛି—"ଶ୍ରୀସ୍ୱାମୀ" ତାହାର ପାଠାନ୍ତର "ଶ୍ରୀଧର ସ୍ୱାମୀ" । ଗୋଟିଏ ଦୁଇଟି ସ୍ଥଳରେ ଲକ୍ଷ୍ୟକରି ଉଭୟଙ୍କର ପିତା-ପୁତ୍ରଙ୍କର ସମ୍ବନ୍ଧ କଳ୍ପିତ ହୋଇଛି । ସମ୍ପ୍ରତି ବଙ୍ଗଦେଶୀୟ କତିପୟ କୁଳପଞ୍ଜିରୁ ଶ୍ରୀଧରସ୍ୱାମୀଙ୍କୁ

କଲିକତା ସଂସ୍କୃତ କଲେଜର ପରଲୋକଗତ ଅଧ୍ୟକ୍ଷ ମହାମହୋପାଧ୍ୟାୟ ମହେଶ ଚନ୍ଦ୍ର ନ୍ୟାୟରତ୍ନ (୧୨୪୨-୧୩୧୨ ବଙ୍ଗାବ୍ଦ) ମହାଶୟଙ୍କର ପୂର୍ବପୁରୁଷ ରୂପେ ଶ୍ରୀଧରସ୍ୱାମୀଙ୍କୁ ପ୍ରଦର୍ଶନ କରଯାଇଛି । ପ୍ରବାସୀ ପତ୍ରିକାର ସମ୍ପାଦକ ଶ୍ରୀ ଦୀନେଶ ଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଲିଖିତ ଶ୍ରୀଧରସ୍ୱାମୀଙ୍କର କୂଳ-ପରିଚୟ ଓ କାଳନିର୍ଣ୍ଣୟ ପ୍ରବନ୍ଧ ୧୩୪୮ ମାଘ ସଂଖ୍ୟାରେ ବାଞ୍ଛାଡ଼ାଙ୍ଗାର ଜନ୍ମେଜୟ ଘଟକ ସର୍ବପ୍ରଥମ କୁଳପଞ୍ଜିରେ ଶ୍ରୀଧରସ୍ୱାମୀଙ୍କ ନାମ ଆବିଷ୍କାର କରି ତଦ୍‌ରଚିତ "କୁଳତତ୍ତ୍ୱ ଦର୍ଶନ" ଗ୍ରନ୍ଥରେ (ଯଶୋହରରୁ ୧୨୯୪ ବଙ୍ଗାବ୍ଦରେ ପ୍ରକାଶିତ) ପ୍ରକାଶ କରିଛନ୍ତି ଯେ, ଶ୍ରୀମଦ୍ ଭାଗବତ ଓ ଶ୍ରୀଗୀତାର ଟୀକାର ଶ୍ରୀଧରସ୍ୱାମୀ ନାନ୍ଦାର ବା ଡୁରିର । ନାନ୍ଦା ବା ନାନ୍ଦା ଗ୍ରାମବାସୀ ସୁରେଶ୍ୱରଙ୍କର (ଆଦସୁରଙ୍କ ଆନୀତ ଶାଣ୍ଡିଲ୍ୟ ଗୋତ୍ରୀୟ କ୍ଷିତୀଶଙ୍କ) ବଂଶରେ ଜନ୍ମଗ୍ରହଣ କରନ୍ତି । ଉକ୍ତ ମତାନୁସାରେ ଶ୍ରୀଧରସ୍ୱାମୀଙ୍କର ପୂର୍ବାଶ୍ରମର ନାମ ଥିଲା ଶ୍ରୀଧର ଆଚାର୍ଯ୍ୟ । ତାହାଙ୍କର ଏକମାତ୍ର ପୁତ୍ରର ନାମ ଶ୍ରୀକର ବିଦ୍ୟାର୍ଣ୍ଣବ । ମହେଶ ଚନ୍ଦ୍ର ନ୍ୟାୟରତ୍ନ ଶ୍ରୀଧରସ୍ୱାମୀଙ୍କର ଅଧସ୍ତନ ଚତୁର୍ଦ୍ଦଶ ପୁରୁଷ ଥିଲେ । ଉକ୍ତ ମତାନୁସାରେ ଶ୍ରୀଧରସ୍ୱାମୀ ଓ କବି କୃତ୍ତିବାସ (୧୩୫୨ ଖ୍ରୀ:) ପ୍ରାୟ ସମକାଳୀନ । ଶ୍ରୀଧରସ୍ୱାମୀ କୃତ୍ତିବାସଙ୍କର ବୟୋଜ୍ୟେଷ୍ଠ ଥିଲେ । ସନ୍ନ୍ୟାସ ଗ୍ରହଣ ପୂର୍ବେ ଯୋଗପରାୟଣ ଶ୍ରୀଧର "ବ୍ରହ୍ମସମ୍ବୋଧିନୀ" ନାମ୍ନୀ ଶ୍ରୀଗୀତାର ଟୀକା ରଚନା କରନ୍ତି । ଏହି ଶ୍ରୀଧରସ୍ୱାମୀପାଦଙ୍କ ଗୀତାର ଟୀକା ସୁବୋଧିନୀଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଶ୍ରୀଗୀତାର ପରିଶିଷ୍ଟ ରୂପେ ଗୀତାସାର ପୁସ୍ତକଟିରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦରେ ତନ୍ତ୍ରସମ୍ମତ ଗୂଢ଼ରହସ୍ୟ କ୍ରିୟାଦି ବର୍ଣ୍ଣିତ ହୋଇଛି ।

ଭଣ୍ଡାରକାର ପ୍ରାଚ୍ୟ ଗବେଷଣା ପ୍ରତିଷ୍ଠାନର ଡ଼ିରେକ୍‌ଟର ପି.କେ. ଗୋଡ଼େ ଏମ.ଏ. ମହାଶୟ ଶ୍ରୀଧରସ୍ୱାମୀଙ୍କ ଆବିର୍ଭାବକାଳ ୧୩୫୦-୧୪୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ଣ୍ଣୟ କରିଅଛନ୍ତି । ଶ୍ରୀ ସ୍ୱାମୀପାଦଙ୍କ ରଚିତ ଗ୍ରନ୍ଥରୁ ଯେଉଁସବୁ ସଂକ୍ଷିପ୍ତ ତଥ୍ୟ ସଂଗ୍ରହ କରଯାଇଛି, ତହିଁରୁ ଜଣାଯାଏ ଯେ, ସେ କେବଳାଦ୍ୱୈତବାଦୀ ସମ୍ପ୍ରଦାୟର କାଶୀବାସୀ ଏକଦଣ୍ଡୀ ସନ୍ନ୍ୟାସୀ ଥିଲେ । ସେ ଅଦ୍ୱୈତବାଦୀ ସମ୍ପ୍ରଦାୟର ଶୋଧନ ଲାଗି ବିଶେଷ ଯତ୍ନ କରିଥିଲେ । ସେ 'ପରମାନନ୍ଦ' ନାମକ ଗୁରୁଙ୍କ ପଦାଶ୍ରୟ କରିଥିଲେ । ତାହାଙ୍କର ସନ୍ନ୍ୟାସ ନାମ ଥିଲା ଯତି ଶ୍ରୀଧରସ୍ୱାମୀ ଏବଂ ସେ ଶ୍ରୀନୃସିଂହୋପାସକ ଥିଲେ । ସେ ଶ୍ରୀହରି-ହରଙ୍କୁ ଏକାତ୍ମା ଜାଣି ମଧ୍ୟ ଶ୍ରୀମାଧବଙ୍କୁ ହିଁ ସ୍ୱୟଂରୂପ ଭଗବାନ ବୋଲି ଜାଣିଥିଲେ । ସେ କାଶୀରେ ଅବସ୍ଥାନ ପୂର୍ବକ ଶ୍ରୀବିନ୍ଦୁମାଧବଙ୍କ ସନ୍ତୋଷାର୍ଥ ଚିତସୁଖାଚାର୍ଯ୍ୟଙ୍କ ବ୍ୟାଖ୍ୟା ଆଲୋଚନା କରି ଶ୍ରୀବିଷ୍ଣୁପୁରାଣର "ଆତ୍ମପ୍ରକାଶ" ଟୀକା ରଚନା କରନ୍ତି । ଶ୍ରୀମଦଭାଗବତର "ଭାବାର୍ଥଦୀପିକା" ଟୀକା ମଧ୍ୟ ସ୍ୱ ସମ୍ପ୍ରଦାୟର ଅନୁରୋଧରେ ରଚନା କରିଥିଲେ ।

ପୁରୀର ଗୋବର୍ଦ୍ଧନ ମଠର ଆଚାର୍ଯ୍ୟ ପରମ୍ପରା ତାଲିକାରେ ଶ୍ରୀଶଙ୍କରାଚାର୍ଯ୍ୟଙ୍କ-ଠାରୁ ଏକାଦଶ ଅଧସ୍ତନ ଏକ ଶ୍ରୀଧରର ନାମ ଏବଂ ତତ୍ପରର ତାଲିକାର ବିଭିନ୍ନ ସ୍ଥାନରେ ଆହୁରି ତିନିଜଣ ଶ୍ରୀଧରଙ୍କ ନାମ ମିଳିଥାଏ । କେହି କେହି ମନେକରନ୍ତି, ପ୍ରଥମୋକ୍ତ ଶ୍ରୀଧର ଶ୍ରୀମଦ୍ ଭାଗବତର ଟୀକାକାର ପ୍ରସିଦ୍ଧ ଶ୍ରୀଧରସ୍ୱାମୀ । ପ୍ରଥମୋକ୍ତ ଶ୍ରୀଧରଙ୍କର ଅବ୍ୟବହିତ ପୂର୍ବ ଆଚାର୍ଯ୍ୟଙ୍କ ନାମ 'ଗୋବିନ୍ଦ' । ଗୋବର୍ଦ୍ଧନମଠର ସାମ୍ପ୍ରଦାୟିକ ନିୟମାନୁସାରେ ମଠାଧୀଶଗଣଙ୍କ ସନ୍ନ୍ୟାସ ଉପାଧି "ଅରଣ୍ୟ" । ଗୋବର୍ଦ୍ଧନ ମଠାମ୍ନାୟରୁ ଜଣାଯାଏ, ପଦ୍ମପାଦଙ୍କ ଠାରୁ ଆରମ୍ଭ କରି ଜ୍ଞାନାନନ୍ଦ ପର୍ଯ୍ୟନ୍ତ ଊନବିଂଶ ପୁରୁଷ ପର୍ଯ୍ୟନ୍ତ ମଠାଧୀଶଗଣ ସମସ୍ତେ ଅରଣ୍ୟ-ଉପାଧିଯୁକ୍ତ ଥିଲେ । ଜ୍ଞାନାନନ୍ଦ ଶିଷ୍ୟ କରିବା ପୂର୍ବେ ହିଁ ଦେହତ୍ୟାଗ କରିବାରୁ କାଶୀରୁ "ବୃହଦାରଣ୍ୟତୀର୍ଥ" ନାମକ ତୀର୍ଥ-ଉପାଧିକାରୀ ଜଣେ ସନ୍ନ୍ୟାସୀ ଆସି ଗୋବର୍ଦ୍ଧନମଠର ମଠାଧୀଶ ହୁଅନ୍ତି । ତଦବଧି ତଦଧସ୍ତନ ଗୋବର୍ଦ୍ଧନ ମଠାଧୀଶ-ଗଣଙ୍କର 'ତୀର୍ଥ' ଉପାଧି ଚାଲିଆସୁଛି ।

ଶ୍ରୀମଦ ଭାଗବତ ଟୀକାକାର ଶ୍ରୀଧରସ୍ୱାମୀ ପାଦ ଗୋବର୍ଦ୍ଧନ ମଠାଧୀଶ ହୋଇଥିଲେ ତାହାଙ୍କ ନାମ ନିଶ୍ଚୟ ଶ୍ରୀଧରାରଣ୍ୟ ହେବ । କିନ୍ତୁ ତାହାଙ୍କର ଏ ପ୍ରକାର ନାମର ପରିଚୟ କେଉଁଠାରେ ବି ମିଳେ ନାହିଁ । ଦ୍ୱିତୀୟତଃ, ଶ୍ରୀଧରସ୍ୱାମୀକୃତ ପ୍ରାମାଣିକ ଟୀକା ସମୂହର ମଙ୍ଗଳାଚରଣାଦି ଆଲୋଚନା କଲେ ସ୍ପଷ୍ଟ ଜଣାଯାଏ ଯେ ସ୍ୱାମୀପାଦ କାଶୀବାସୀ ସନ୍ନ୍ୟାସୀ ଥିଲେ । ସେ ବିଷ୍ଣୁପୁରାଣର ଟୀକାରେ ଶ୍ରୀବିନ୍ଦୁ-ମାଧବ, ଶ୍ରୀବିଶ୍ୱେଶ୍ୱର ଓ ଶ୍ରୀଗଙ୍ଗାଙ୍କର ବନ୍ଦନା କରିଛନ୍ତି । ଶ୍ରୀଗୀତାର ଟୀକାରେ ମଧ୍ୟ ବିଶ୍ୱେଶ୍ୱର ଓ ଉମାଧବଙ୍କୁ ବନ୍ଦନା କରିଅଛନ୍ତି । ଶ୍ରୀମଦ ଭାଗବତର ଟୀକାରେ ଶ୍ରୀକୃଷ୍ଣ, ଶ୍ରୀଶମ୍ଭୁ ଓ ଶ୍ରୀନୃସିଂହ ଦେବଙ୍କର ବନ୍ଦନା କରିଛନ୍ତି । ସେ ପୁରୀ ଗୋବର୍ଦ୍ଧନ ମଠର ମଠାଧୀଶ ବା ଆଚାର୍ଯ୍ୟ ହୋଇଥିଲେ ଉକ୍ତ ମଠର ସାମ୍ପ୍ରଦାୟିକ ଦେବତା ଓ ଶ୍ରୀକ୍ଷେତ୍ରର ଅଧିଷ୍ଠାତା ଶ୍ରୀଜଗନ୍ନାଥଦେବଙ୍କର ବନ୍ଦନା ନିଶ୍ଚୟ କରିଥାନ୍ତେ ଏବଂ ସେ ଗୋବର୍ଦ୍ଧନମଠର ମଠାଧୀଶତ୍ୱ ତ୍ୟାଗକରି ଅନ୍ୟତ୍ର ଯାଇଥାନ୍ତେ ବୋଲି ମନେହୁଏନା । ତାହାଛଡ଼ା ଗୋବର୍ଦ୍ଧନ ମଠର ଆମ୍ନାୟରେ ଏକାଦଶ ପୁରୁଷରୂପେ ଯେଉଁ ଶ୍ରୀଧରଙ୍କର ନାମୋଲ୍ଲେଖ ରହିଛି, ସେ ଗୋବିନ୍ଦାରଣ୍ୟ ନାମକ ଆଚାର୍ଯ୍ୟଙ୍କର ଅଧସ୍ତନ । କିନ୍ତୁ ଶ୍ରୀମଦ ଭାଗବତର ପ୍ରସିଦ୍ଧ ଟୀକାକାର ଶ୍ରୀଧରସ୍ୱାମୀପାଦ ତାଙ୍କ ଟୀକାର ସର୍ବତ୍ର "ପରମାନନ୍ଦ" ନାମକ ଗୁରୁଙ୍କର ବନ୍ଦନା କରିଅଛନ୍ତି ।

ଶ୍ରୀଧରସ୍ୱାମୀପାଦ ଥିଲେ ଶ୍ରୀନୃସିଂହୋପାସକ । କେହି କେହି କହନ୍ତି, ଶ୍ରୀଧରସ୍ୱାମୀପାଦଙ୍କର ଲେଖନୀର କେଉଁଠି କେଉଁଠି ଆଭାସ ମିଳେ ଯେ, ସେ ପୂର୍ବାଶ୍ରମରେ ତୈଲଙ୍ଗଦେଶୀୟ ବ୍ୟକ୍ତି ଥିଲେ । "ଶ୍ରୀଭକ୍ତ ରତ୍ନାବଳୀ" ଗ୍ରନ୍ଥକାର

ଶ୍ରୀମଦ ବିଷ୍ଣୁପୁରୀ, ଶ୍ରୀସନାତନ ଗୋସ୍ୱାମୀ, ଶ୍ରୀରୂପ ଗୋସ୍ୱାମୀ, ଶ୍ରୀଜୀବ ଗୋସ୍ୱାମୀ, ଶ୍ରୀକୃଷ୍ଣଦାସ କବିରାଜ ଗୋସ୍ୱାମୀ, ମହାଭାରତର ଟୀକାକାର ଶ୍ରୀନୀଳକଣ୍ଠ ସୁରି, ସ୍ମାର୍ତ୍ତ ରଘୁନନ୍ଦନ ଭଟ୍ଟାଚାର୍ଯ୍ୟ, ନୈଷଧଟୀକାକାର ଶ୍ରୀଲକ୍ଷ୍ମଣ ଭଟ୍ଟ, ସୁଶ୍ରୁତର ଟୀକାକାର ବୈଦ୍ୟ ମହାଦେବ, ନଳୋଦୟ କାବ୍ୟର ଟୀକାକାର ଶ୍ରୀବାମର୍ଷି, ଗୌଡ଼ୀୟ ବୈଷ୍ଣବାଚାର୍ଯ୍ୟ ଶ୍ରୀବିଶ୍ୱନାଥ ଚକ୍ରବର୍ତ୍ତୀ ଠାକୁର ପ୍ରମୁଖ ପ୍ରାଚୀନ ଆଚାର୍ଯ୍ୟ ଲେଖକଗଣ ଶ୍ରୀସ୍ୱାମୀପାଦଙ୍କ ନାମ ଓ ଟୀକାର ଉଲ୍ଲେଖ କରିଅଛନ୍ତି ।

ଶ୍ରୀଧରସ୍ୱାମୀପାଦ ତାଙ୍କ ଶ୍ରୀଗୀତାର (ମଙ୍ଗଳାଚରଣ) ଟୀକାରେ ଓ ଅନ୍ୟତ୍ର ଭାଷ୍ୟକାର ଶ୍ରୀଶଙ୍କରଙ୍କ ନାମ, ଶ୍ରୀମଦ ଭାଗବତର ଟୀକାରେ "ବିଶ୍ୱ-ପ୍ରକାଶ"ର ବାକ୍ୟ ଓ ଶ୍ରୀବିଷ୍ଣୁସ୍ୱାମୀଙ୍କ ବାକ୍ୟ ଉଦ୍ଧାର ଏବଂ ଶ୍ରୀବିଷ୍ଣୁପୁରାଣର ଟୀକାର ପ୍ରାରମ୍ଭରେ ଚିତ୍ସୁଖାଚାର୍ଯ୍ୟଙ୍କ ନାମ ଉଲ୍ଲେଖ କରିଅଛନ୍ତି । 'ବିଶ୍ୱପ୍ରକାଶ'ର ରଚନାକାଳ ଖ୍ରୀଷ୍ଟାବ୍ଦ ୧୧୧୧ ଏବଂ ଗବେଷକଗଣଙ୍କ ମତରେ ଚିତ୍ସୁଖାଚାର୍ଯ୍ୟଙ୍କର ଅଭ୍ୟୁଦୟ କାଳ ୧୨୨୦-୧୨୮୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ବୋଲି ନିଶ୍ଚିତ ହୋଇଛନ୍ତି ।

ଏ ପର୍ଯ୍ୟନ୍ତ ବିଭିନ୍ନ ମତବାଦ ଆଲୋଚନାର ପୂର୍ବ ସିଦ୍ଧାନ୍ତକୁ ପ୍ରତ୍ୟାବର୍ତ୍ତନ କରାଯାଉ । ଶ୍ରୀଳ ରାମକୃଷ୍ଣାନନ୍ଦ ଶ୍ରୀଶଙ୍କରାଚାର୍ଯ୍ୟଙ୍କର ପରମ୍ପରାନୁସାରେ ଦଣ୍ଡୀସ୍ୱାମୀ ଥିଲେ । ସେହି ମଠର ନାମ "ଦଣ୍ଡୀସ୍ୱାମୀ ମଠ ।" ସେହି ମଠର ଗୁରୁକ୍ରମାମ୍ନାୟ ଅନୁଯାୟୀ ଜଣାଯାଏ ଯେ, ଭାରତବିଖ୍ୟାତ ଶ୍ରୀମଦ ଭାଗବତ, ଶ୍ରୀବିଷ୍ଣୁପୁରାଣ ଓ ଶ୍ରୀମଦ ଭଗବତଗୀତାର ପ୍ରଖ୍ୟାତ ଟୀକାକାର ଶ୍ରୀଧରସ୍ୱାମୀ ସେହି ମଠରେ ବହୁଦିନ ଅବସ୍ଥାନ କରି ଶ୍ରୀନୃସିଂହଦେବଙ୍କର ଉପାସନା ଓ କଠୋର ତପଶ୍ଚର୍ଯ୍ୟା କରି ସିଦ୍ଧିଲାଭ କରନ୍ତି

ପୀଠେଽସ୍ୟ ଶିଷ୍ୟୋଽତ୍ର ତୁ ଗୋବର୍ଦ୍ଧନେ ।
ମହେଶ୍ୱରାନନ୍ଦ ସରସ୍ୱତୀ ବସନ୍ ।।
ନୀଳାଦ୍ରିନାଥ ପ୍ରତୀତି ଯଥା ପୁରା ।
ନିରୀକ୍ଷତେ ସ୍ମ ଆଶ୍ରମକୃତ୍ୟ ତତ୍ ପରଃ ।।
ଶ୍ରୀରାମକୃଷ୍ଣନନ୍ଦୋଽଭୂତ ଶିଷ୍ୟସ୍ତସ୍ୟ ମହାଯତିଃ
ତଦ ବେତ୍ୟ ଦଦୌ ତସ୍ମୈ ସ୍ୱାମିବର୍ଯ୍ୟାୟ ନୃତତ୍ତ୍ୱମ
ପ୍ରତାପଭାନୁନୃପତିଃ କପିଳାସ ଶିବାଳୟଃ ।
ତତ୍ଶିଷ୍ୟୋଽଭୂତ ଶ୍ରୀଧରସ୍ୱାମିପାଦଃ ।।
ଜପ୍ତ୍ୱା ନିତ୍ୟଂ ମନ୍ତ୍ରରାଜଂ ନୃସିଂହସ୍ୟ ସ ଭକ୍ତ୍ୟା ।
ବିଦ୍ୟା ଚତୁର୍ଦ୍ଦଶ୍ୟମଭ୍ୟାସ ବଶ୍ୟଂ ।।
ଶ୍ରୁତସ୍ୟ ଲକ୍ଷିଧ୍ରଂ ବିପ୍ରମୋକ୍ଷଂ ତତାନ୍ ।
ଶ୍ରୀମଦ ଭାଗବତଂ ପ୍ରାଗ୍ରତି ବିଶଦଂ ବ୍ୟାଖ୍ୟାୟ—ସୁଖ୍ୟାତିମାନ

ବିଶ୍ୱସ୍ୟୋପକୃତିଂ ଚକାରଂ ନିତରଂ ତତ୍ତ୍ୱାର୍ଥସାଦୀପୟନ୍ ।
ଗରୀଶସ୍ୟ ନୃସିଂହସ୍ୟ କରୁଣୟା ତମ ବିଭକ୍ଷେଃସ୍ୟତୁ ॥
ବ୍ୟାବୋ ବେତ୍ତି ନ ବାଥ ବେତ୍ତି ସକଳଂ ଶ୍ରୀରଧକ୍ଷେତାପି ।

ଏହି ପ୍ରମାଣାନୁସାରେ କେହି କେହି ତାହାଙ୍କୁ ଶ୍ରୀରାମକୃଷ୍ଣାନନ୍ଦସ୍ୱାମୀଙ୍କର ଶିଷ୍ୟ କହିଥାନ୍ତି ।

ଶ୍ରୀଧରସ୍ୱାମିପାଦୋକ୍ତି ବୋଲି କେହି କେହି ଏହି ଶ୍ଳୋକଟି ଉଦ୍ଧୃତ କରନ୍ତି ।
(ଶ୍ରୀମଦ ଭଗବତରୁ)

ବାଗୀଶୋ ଯସ୍ୟ ବଦନେ ମାତା ଯସ୍ୟ ଚ ବକ୍ଷାସି ,
ଯସ୍ୟ ଚ ହୃଦୟେ ସଂବିଦ ଶ୍ରୀନୃସିଂହ ମହଂ ଭଜେ ॥

ଏହି ଶ୍ଳୋକ ଉତ୍କଳ ଭଷାରେ ନବାକ୍ଷର ଛନ୍ଦରେ ଶ୍ରୀଜଗନ୍ନାଥ ଦାସ ମହାତ୍ମାଙ୍କର ପଦ୍ୟାନୁବାଦ—

ନମଇଁ ନୃସିଂହ ଚରଣ ।
ଅନାଦି ପରମ କାରଣ ।
ଲୀଳା ବିଧୃତ କଳେବର ।
ଦେବ ମାନବ ଅଗୋଚର ॥

ଓଡ଼ିଶା ପ୍ରଦେଶର ବାଲେଶ୍ୱର ଜିଲ୍ଲାନ୍ତର୍ଗତ ରେମୁଣା ଗାମରେ ଅବସ୍ଥିତ ସୁପ୍ରସିଦ୍ଧ ଶ୍ରୀକ୍ଷୀରଚୋର ଗୋପୀନାଥ ବିଗ୍ରହଙ୍କର ଅବସ୍ଥିତି । ସେହି ରେମୁଣା ସନ୍ନିକଟବର୍ତ୍ତୀ ମୟୂର ଗ୍ରାମରେ ପ୍ରଥିତଯଶା ଶ୍ରୀଧରସ୍ୱାମୀ ପାଦଙ୍କର ଜନ୍ମ ୧୩୦୦-୧୪୦୦ ଖ୍ରୀଷ୍ଟାବ୍ଦର ପ୍ରଥମ ପାଦରେ ତାଙ୍କର ଜନ୍ମସମୟ ନିରୂପଣ କରଯାଇ ପାରେ । (ଶ୍ରୀଗୋଲୋକଚନ୍ଦ୍ର ମହାପାତ୍ରଙ୍କର ବାଲେଶ୍ୱର ଶୀର୍ଷକ ପ୍ରବନ୍ଧ ଦ୍ରଷ୍ଟବ୍ୟ) । ତାହାଙ୍କର ଶ୍ରୀମଦ ଭଗବତର ଟୀକା ପାଠକରି ଶ୍ରୀଚୈତନ୍ୟଦେବ ତାହାଙ୍କୁ ଗୁରୁରୂପରେ ସ୍ୱୀକାର କରିଥିଲେ । ଶ୍ରୀମଦ ଭଗବତର ଭବାର୍ଥ ଦୀପିକାଟୀକା ପ୍ରଥମେ ଶ୍ରୀଧରସ୍ୱାମୀ ଲେଖିଥିଲେ—

ଓଁ ନମୋ ଭଗବତେ ପରମହଂସାସ୍ୱାଦିତ ଚରଣ କମଳ—
ଚିନ୍ମକରନ୍ଦାୟ ଭକ୍ତଜନମାନସାୟ ଶ୍ରୀକୃଷ୍ଣାୟ ।
ବିଶ୍ୱ ସର୍ଗବିସର୍ଗାଦି ନବଲକ୍ଷଣ ଲକ୍ଷିତମ ।
ଶ୍ରୀକୃଷ୍ଣାଖ୍ୟଂ ପରମଧାମ ଜଗଦ୍ଧାମ ନମାମି ତମ ।'

ଶ୍ରୀଧରସ୍ୱାମୀଙ୍କ ସମ୍ବନ୍ଧରେ ଗୋଟିଏ ସ୍ୱତନ୍ତ୍ର ଗ୍ରନ୍ଥ ଲେଖିବା ପ୍ରୟୋଜନ । ଶ୍ରୀ ଚୈତନ୍ୟଦେବ ପୁରୀରେ ଅବସ୍ଥାନ କାଳରେ ଜନୈକ ପଣ୍ଡିତାଭିମାନୀ ବଲ୍ଲଭଭଟ୍ଟ ନାମକ ବ୍ୟକ୍ତି ତାଙ୍କୁ କହିଥିଲେ–ମହାପ୍ରଭୁ, ମୁଁ ଶ୍ରୀମଦଭଗବତର ଗୋଟିଏ ଟୀକା ଲେଖିଛି, ତହିଁରେ ଶ୍ରୀଧରସ୍ୱାମୀଙ୍କର ମତବାଦକୁ ଅନେକାଂଶରେ ଖଣ୍ଡନ କରିଛି । ଆପଣ ତାହା ପାଠକଲେ ମୁଁ କୃତାର୍ଥ ହେବି । ଏ କଥା ଶୁଣି ଶ୍ରୀମନ୍ମହାପ୍ରଭୁ କହିଲେ–

ଶ୍ରୀଧରସ୍ୱାମୀ ନିନ୍ଦି ନିଜ ଟୀକା କର ।
ଶ୍ରୀଧରସ୍ୱାମୀ ନାହି ମାନ ଏତ ଗର୍ବଧର ।।
ଶ୍ରୀଧରସ୍ୱାମୀ ପ୍ରସାଦେ ଭଗବତ ଜାନି ।
ଜଗଦ୍‌ଗୁରୁ ଶ୍ରୀଧରସ୍ୱାମୀ ଗୁରୁ କରି ମାନି ।।
(ଶ୍ରୀଚୈତନ୍ୟ ଚରିତାମୃତ : ଅନ୍ତ୍ୟ ୭ମ)

ଶ୍ରୀଧରସ୍ୱାମୀ ଓଡ଼ିଶାର ଲୋକ । ଏହା ଓଡ଼ିଶାର ତଥା ପୃଥିବୀର ଗୌରବ । ଅଥଚ ଶ୍ରୀଧରସ୍ୱାମୀଙ୍କୁ ଓଡ଼ିଶାର ଲୋକେ ଜାଣନ୍ତି ନାହିଁ ଓ ଚିହ୍ନନ୍ତି ନାହିଁ ଏବଂ ତାହାଙ୍କର ମତବାଦ ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ ।

ଶ୍ରୀମନ୍ମହାପ୍ରଭୁ ବଲ୍ଲଭଭଟ୍ଟଙ୍କୁ ଆହୁରି କହିଲେ–

ପ୍ରଭୁ ହାସି କହେ ସ୍ୱାମୀ ନା ମାନେ ଯେଇ ଜନ ।
ବେଶ୍ୟାର ଭିତରେ ତାରେ କରିୟେ ଗଣନ ।।
ଏତ କହି ମହାପ୍ରଭୁ ମୌନ ରହିଲ ।
ଶୁନିୟା ସବାର ମନେ ସନ୍ତୋଷ ହଇଲ ।।
(ଶ୍ରୀଚୈତନ୍ୟ ଚରିତାମୃତ : ଅନ୍ତ୍ୟ ୭ମ)

ଓଡ଼ିଶାର କୋଣାର୍କ ପଞ୍ଚସଖା ବିଶେଷାଙ୍କ ସାହିତ୍ୟ ଏକାଡେ଼ମୀ ପ୍ରକାଶନରେ ଅଧ୍ୟାପକ ଡ଼କ୍‌ଟର ନିତ୍ୟାନନ୍ଦ ଶତପଥୀ ଶ୍ରୀଧରସ୍ୱାମୀଙ୍କ ସମ୍ବନ୍ଧରେ କେତେଗୁଡ଼ିଏ ଉପାଦେୟ ତଥ୍ୟ ସଂଗ୍ରହ କରିଛନ୍ତି । ଶ୍ରୀଧରସ୍ୱାମୀ ଓଡ଼ିଶାର ସଂସ୍କୃତ ଭଗବତର ଟୀକା ଲେଖି ଶ୍ରୀମଦ ଭଗବତର ଆଦର ବଢ଼ାଇଥିଲେ । ସେହି ଭଗବତ ଚର୍ଚ୍ଚା ପ୍ରସାର ଫଳରେ ଶ୍ରୀ ଜଗନ୍ନାଥ ଦାସ ସଂସ୍କୃତ ଭଗବତର ଓଡ଼ିଆ ଭଷାରେ ଅନୁବାଦର ପ୍ରେରଣା ପାଇଥିଲେ ।

ଡ଼କ୍‌ଟର ଏସ. କେ. ଦେ ଦେଖାଇଛନ୍ତି ଯେ, ଶ୍ରୀଧରସ୍ୱାମୀ ବୋପଦେବଙ୍କ ପୂର୍ବବର୍ତ୍ତୀ ଥିଲେ । କିମ୍ବଦନ୍ତୀ ଅଛି, ଓଡ଼ିଶାର ଢେ଼ଙ୍କାନାଳ ଜିଲ୍ଲାରେ "ସପ୍ତଶଯ୍ୟା" ନାମକ ସ୍ଥାନରେ ଶ୍ରୀଧରସ୍ୱାମୀ ନୃସିଂହ ଆଶ୍ରମ ପ୍ରତିଷ୍ଠା କରିଥିଲେ ଏବଂ ନକେ

ଶ୍ରୀ ନୃସିଂହ ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ । ଶ୍ରୀଧରସ୍ୱାମୀଙ୍କର ବଂଶଧର ଏବେ ମଧ୍ୟ ମୟୂର ଗ୍ରାମରେ ବାସ କରୁଅଛନ୍ତି । ସେଠାରେ ତାଙ୍କର ବଂଶଧର ଶ୍ରୀ ଲକ୍ଷ୍ମୀଧର ପତିଙ୍କ ଗୃହରେ ତାଳପତ୍ରରେ ଲେଖା ଓଡ଼ିଆ ଭାଷାର ବହୁ ପୋଥି ବିଦ୍ୟମାନ ରହିଛି ।

ଶ୍ରୀ ଶରଚ୍ଚନ୍ଦ୍ର ମହାରଣାଙ୍କ ୨୮-୧୧-୭୭ 'ସମାଜ' ପତ୍ରିକାରେ ଶ୍ରୀଧରସ୍ୱାମୀ ଶୀର୍ଷକ ପ୍ରବନ୍ଧରେ ବିଶ୍ଳେଷଣ କରାହୋଇଛି ଯେ, ଶ୍ରୀଧରସ୍ୱାମୀ ଢେଙ୍କାନାଳ ଜିଲ୍ଲାର "ସପ୍ତଶଯ୍ୟା"ଠାରେ ଆଶ୍ରମ ନିର୍ମାଣ କରି ଶ୍ରୀ ନୃସିଂହ ମନ୍ତ୍ରରେ ଦୀକ୍ଷିତ ହୋଇ ଶ୍ରୀମଦ୍ ଭାଗବତ, ଶ୍ରୀମଦ ଭଗବଦ୍‌ଗୀତା ଓ ଶ୍ରୀ ବିଷ୍ଣୁପୁରାଣର ଟୀକା ରଚନା କରିଥିଲେ । "ସପ୍ତଶଯ୍ୟା" କପିଳାସ ପରି ଗୋଟିଏ ପବିତ୍ର ତୀର୍ଥସ୍ଥାନ । ସେଠାରେ ଯେ ଏହି ବିଶ୍ୱବିଖ୍ୟାତ ଓ ଅଲୌକସାମାନ୍ୟ ଗ୍ରନ୍ଥଗୁଡ଼ିକର ଟୀକା-ଭାଷ୍ୟ ପ୍ରଣୟନ କରିନାହାନ୍ତି, ଏପରି କୁହାଯାଇପାରେନା । ସେ ଯେ କପିଳାସ ତୀର୍ଥରେ ଶ୍ରୀ ଭାଗବତର ଟୀକା ଲେଖିଥିଲେ, ଏହା ସ୍ୱତଃସିଦ୍ଧ । ସେଠାରେ ଗୋସ୍ୱାମୀଗଣଙ୍କର ଯେଉଁ ସମାଧି ଗୁଡ଼ିକ ବିଦ୍ୟମାନ ରହିଚି, ତନ୍ମଧ୍ୟରେ ସ୍ୱାମୀ ପାଦଙ୍କର ସମାଧି ମନ୍ଦିରଟି ବୃହତ୍ତମ ।

ଶ୍ରୀ ସ୍ୱାମୀପାଦଙ୍କର ଶ୍ରୀମଦ ଭଗବତ ଗୀତାର ଟୀକା ସମ୍ପର୍କରେ ବେଲୁଡ଼ର ଶ୍ରୀ ରାମକୃଷ୍ଣ ମିଶନର ସ୍ୱାମୀ ଶ୍ରୀ ଜଗଦୀଶ୍ୱରାନନ୍ଦ ମହାରାଜ କର୍ତ୍ତୃକ ଅନୂଦିତ ଶ୍ରୀଗୀତାର ନିବେଦନରେ ଲେଖିଛନ୍ତି—"ଗୀତାର ବହୁ ଭାଷ୍ୟଟୀକା ଅଧ୍ୟୟନାନ୍ତେ ନିଃସଂଶୟରେ ବୁଝିଛି ଯେ, ଶ୍ରୀଧରସ୍ୱାମୀକୃତ 'ସୁବୋଧିନୀ' ଟୀକାହିଁ ସବାପେକ୍ଷା ସଂକ୍ଷିପ୍ତ, ସରଳ ଓ ସାରଗର୍ଭ ଏବଂ ଅଧିକାଂଶ ପାଠକ-ପାଠିକାଙ୍କ ପକ୍ଷରେ ଅତିଶୟ ଉପଯୋଗୀ । ଆଗ୍ରଯ୍ୟ ଶ୍ରୀଧରସ୍ୱାମୀ ସ୍ୱୟଂ ସତକୁ ସତ କହିଥିଲେ—ପ୍ରଯତ୍ନ ସହ ପାଠ ମାତ୍ରେ ଏହି ଟୀକାର ଅର୍ଥ ବୁଝାଯାଏ । 'ସୁବୋଧିନୀ' ଟୀକା ଗୋଟିଏ ଅନନ୍ୟ ବୈଶିଷ୍ଟ୍ୟପୂର୍ଣ୍ଣ ଜ୍ଞାନ ଓ ଭକ୍ତିର ଅଭିନବ ସମନ୍ୱୟ ସାଧକ । ଏଥିପାଇଁ ଶ୍ରୀଚୈତନ୍ୟଦେବ ଏହାର ଭୂୟସୀ ପ୍ରଶଂସା କରିଛନ୍ତି ଏବଂ ଭକ୍ତ ଓ ଜ୍ଞାନୀ ଉଭୟେ ଉକ୍ତ ଟୀକା ପାଠରେ ଅନୁରକ୍ତ । ଆଗ୍ରଯ୍ୟ ଶ୍ରୀଧରଗୀତା, ଭଗବତ ଓ ବିଷ୍ଣୁପୁରାଣ ପ୍ରଭୃତିର ଟୀକାକାର । ତତ୍‌କୃତ ଟୀକାତ୍ରୟ ନିଖିଳ ଭାରତରେ ସମାଦୃତ ଓ ସୁପଠିତ । ଏହା ଭକ୍ତିମୂଳକ ଓ ସହଜବୋଧ୍ୟ ବୋଲି ଭାରତରେ ଏହାର ସମଧିକ ସମାଦର ପାଉଅଛି ।

ବିଶ୍ୱକୋଷରେ ଶ୍ରୀଧରସ୍ୱାମୀଙ୍କ ସମ୍ବନ୍ଧରେ ଗୋଟିଏ ଅନୁଚ୍ଛେଦ ଅଛି; ତହିଁରେ ତାଙ୍କ ଗୁରୁଙ୍କ ନାମ 'ପରମାନନ୍ଦ' ବୋଲି ଉଲ୍ଲେଖ ଅଛି ଏବଂ ଶ୍ରୀମଦ୍ ଭାଗବତର ଭାଷ୍ୟ ଓ ଆଉ କେତେଗୁଡ଼ିଏ କୃତିର ସଙ୍କେତ ଅଛି । ତେଣୁ ଦେଖାଯାଉଛି, ତାଙ୍କର ଗୁରୁ ଦୁଇଜଣ ବ୍ୟକ୍ତି । କିନ୍ତୁ ସେ ତାଙ୍କ ଟୀକାର ବହୁସ୍ଥାନରେ ଗୁରୁ ପରମାନନ୍ଦଙ୍କ

ନାମ ଉଲ୍ଲେଖ କରିଅଛନ୍ତି । କିନ୍ତୁ ସେଇଁଠି ହେଲେ ମଧ୍ୟ ଶ୍ରୀ ରମାକୃଷ୍ଣାନନ୍ଦ ସ୍ୱାମୀଙ୍କ ନାମ ଉଲ୍ଲେଖ କରିନାହାନ୍ତି କହୁଛ ବୋଲି ।

ପୁନଶ୍ଚ ଆଗ୍ନେୟ ଲେଖିଛନ୍ତି, ୟୁରୋପୀୟ ପଣ୍ଡିତଗଣଙ୍କ ମଧ୍ୟରେ ଡ଼ଃ ଜେ. ଏନ୍. ଫାର କିଉହାର "An out line of the religious literature of India" ନାମକ ତାଙ୍କ ପୁସ୍ତକରେ (Oxford University, 1920) ଆହୁରି ଲେଖିଛନ୍ତି—ସମ୍ଭବତଃ ୧୪୦୦ ଖ୍ରୀଷ୍ଟାବ୍ଦରେ ପୁରୀର ଶଙ୍କରାଚାର୍ଯ୍ୟ ସଂପ୍ରଦାୟର ଗୋବର୍ଦ୍ଧନ ମଠର ମହନ୍ତ ଶ୍ରୀଧର ସ୍ୱାମୀ ଶ୍ରୀମଦ ଭାଗବତ ପୁରାଣ ଗୋଟିଏ ଭାବାର୍ଥ ଦୀପିକା ନାମକ ଟୀକା ଲେଖିଥିଲେ । ସେହି ଲେଖା ଉକ୍ତ ଗ୍ରନ୍ଥର ଯଥାସମ୍ଭବ ପ୍ରଧାନ ଭାଷ୍ୟ । ସେ ଜଣେ ଉଚ୍ଚକୋଟୀର ପଣ୍ଡିତ ଥିଲେ ଏବଂ ନିଶ୍ଚୟ ଗୋଟିଏ ବିଶ୍ୱାସଯୋଗ୍ୟ ପରମ୍ପରା ସହିତ ପରିଚିତ ଥିଲେ । ସେ ତାଙ୍କ ଭାଷ୍ୟର ପ୍ରାରମ୍ଭରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି—ଏହି ମହାପୁରାଣ ଶ୍ରୀ ବୋପଦେବ କର୍ତ୍ତୃକ ଲିଖିତ ନୁହେଁ । ଡକଟର ଫାରକ୍ୟୁହାରଙ୍କ ପରେ ଡଃ ଏସ୍. କେ. ଦେ ଲେଖିଛନ୍ତି— ତାଙ୍କ ପ୍ରବନ୍ଧ Pre-Chaitanya vaishnabism in Bengal was published by Feitscrift Monizwinternity P.P 195 first 1933. ଏଥିରୁ ଜଣାଯାଏ ଯେ ଶ୍ରୀମାଧବେନ୍ଦ୍ର ପୁରୀ ଶଙ୍କରପନ୍ଥୀ ଥିଲେ ଏବଂ ଶ୍ରୀଈଶ୍ୱରପୁରୀ ଓ ଶ୍ରୀଧର ସ୍ୱାମୀ ମଧ୍ୟ ଶଙ୍କରପନ୍ଥୀ । ଅଦ୍ୱୈତମତ ସହିତ ଶ୍ରୀମଦ୍ ଭାଗବତର ପ୍ରେମଭକ୍ତିମୂଳକ ମତର ସମନ୍ୱୟ ସେ କରିଛନ୍ତି । ଭକ୍ତି ଓ ଜ୍ଞାନର ସମନ୍ୱୟ କରିବା ଲକ୍ଷ୍ୟ ତାଙ୍କର ଉଲ୍ଲିଖିତ ପ୍ରଚେଷ୍ଟାର ମୂଲ୍ୟାୟନ କରିବା । ଯାହାହେଉ, ପରେ କିମ୍ବଦନ୍ତୀରୁ ଜଣାଯାଏ ଯେ, କାଶୀରେ ଥିବା ସମୟରେ ଶ୍ରୀଧରଙ୍କର ଭାଷ୍ୟ ତାଙ୍କ ସଂପ୍ରଦାୟରେ ବିଶେଷ ଆନ୍ଦୋଳନ ସୃଷ୍ଟି କରେ । ଡଃ ଏସ୍. କେ. ଦେ କାଶୀବାସ ବିଷୟରେ ଯାହା ଲେଖିଥିଲେ, ତାହା ସଂସ୍କୃତ ଭକ୍ତମାଳରୁ ଉକ୍ତ ଗ୍ରନ୍ଥଟି ପ୍ରକାଶିତ ହୋଇଥିଲା ବମ୍ବେର ଭେଙ୍କଟେଶ୍ୱର ପ୍ରେସରୁ ୧୯୨୬ ଖ୍ରୀଷ୍ଟାବ୍ଦରେ । ତହିଁରେ ଶ୍ରୀଧରସ୍ୱାମୀଙ୍କର ଅତିମାନବୀୟ କର୍ମସମୂହ ବର୍ଣ୍ଣିତ ହୋଇଛି । ଶ୍ରୀଧର ସ୍ୱାମୀଙ୍କର ଜନ୍ମ ସମୟ ସମ୍ବନ୍ଧରେ ଶ୍ରୀ ଏସ୍.କେ. ଦେ ତାଙ୍କର ବଙ୍ଗଳା ସାହିତ୍ୟର ଇତିହାସ—୧୭ ପୃଷ୍ଠାର ପାଦଟୀକାରେ ମନ୍ତବ୍ୟ କରିଥିଲେ ଯେ, ଶ୍ରୀଧରସ୍ୱାମୀ ବୋପଦେବଙ୍କ ନାମ ଉଲ୍ଲେଖ କରିଥିବାରୁ ୧୩୦୦ ଖ୍ରୀଷ୍ଟାବ୍ଦ ପୂର୍ବବର୍ତ୍ତୀ ନୁହନ୍ତି । ଶ୍ରୀମନ୍ମହାପ୍ରଭୁଙ୍କର ଶ୍ରୀମୁଖୋକ୍ତି ହେଲା—"ଶ୍ରୀଧର ସ୍ୱାମୀର ପ୍ରସାଦେତେ ଭାଗବତ ଜାନି । ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ।।" (ଚୈ.ଚ. ଅନ୍ତ୍ୟ—୭ମ ପରିଛେଦ) । ୧୬୧୦ ସାଲରେ ଶ୍ରୀ ଚୈତନ୍ୟ ଚରିତାମୃତର ମତ ଛଡ଼ା ବି ଡଃ ଫାରକିଉହାରଙ୍କର ମତରେ ଶ୍ରୀଧର ସ୍ୱାମୀଙ୍କର ଜୀବିତକାଳ ୧୪୦୦ ଖ୍ରୀଷ୍ଟାବ୍ଦ । ଡଃ ଏସ୍, କେ. ଦେଙ୍କ ମତରେ ୧୩୦୦ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ ୧୪୦୯-୧୪୧୦ ମଧ୍ୟରେ । ଶ୍ରୀ ଚୈତନ୍ୟଦେବ ଯେତେବେଳେ ଓଡ଼ିଶାକୁ ଆସିଥିଲେ,

ସେ ସମୟରେ ଓଡ଼ିଶାର ଜନୈକ ଭକ୍ତକବି ଶ୍ରୀ ଜୟଦେବ ଆଗ୍ରେ୍ଧ "ଭକ୍ତ ଭାଗବତ ମହାତ୍ମ୍ୟ" ଓ "ଭକ୍ତି ବୈଭବ" ନାମକ ଗ୍ରନ୍ଥଦ୍ୱୟ ଲେଖିଥିଲେ । ତହିଁରୁ ଜଣାଯାଏ ଯେ, ଶ୍ରୀଧର ସ୍ୱାମୀଙ୍କ ଅପ୍ରକଟ ପରେ ମଧ୍ୟ ଓଡ଼ିଶାରେ ତାଙ୍କର ବିଶେଷ ପ୍ରଭାବ ପରିଲକ୍ଷିତ ହୋଇଥିଲା । ଏଥିରୁ ବୁଝାଯାଏ ଯେ, ଶ୍ରୀଧର ସ୍ୱାମୀ ରେମୁଣାର ଶ୍ରୀକ୍ଷୀରଚୋରା ଗୋପୀନାଥଙ୍କ ଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲେ ଏବଂ ଅଥର୍ବବେଦୀ ବ୍ରାହ୍ମଣମାନଙ୍କ ଦ୍ୱାରା ମଧ୍ୟ ପ୍ରଭାବିତ ହୋଇଥିଲେ ।

ଶ୍ରୀଧରସ୍ୱାମୀଙ୍କର ଆବିର୍ଭାବ ସ୍ଥାନ ଯେ ଓଡ଼ିଶାରେ, ଅର୍ଥାତ୍ ବାଲେଶ୍ୱର ଜିଲ୍ଲାନ୍ତର୍ଗତ ରେମୁଣା ଗ୍ରାମର ନିକଟବର୍ତ୍ତୀ "ମୟୂର ଗ୍ରାମ" ସେ ସମ୍ବନ୍ଧରେ ପ୍ରଥମ ପ୍ରମାଣ ହେଲା—ଶ୍ରୀକୃଷ୍ଣଦାସ ରଚିତ ଶ୍ରୀ ଶ୍ୟାମାନନ୍ଦ ପ୍ରକାଶ ବୈଷ୍ଣବ ଗ୍ରନ୍ଥରେ ସୁସ୍ପଷ୍ଟ ଉଲ୍ଲେଖ ରହିଛି ଯେ, ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଯେତେବେଳେ ରେମୁଣାସ୍ଥ ଶ୍ରୀକ୍ଷୀରଚୋରା ଗୋପୀନାଥ ଦର୍ଶନ ପାଇଁ ଯାଆନ୍ତି, ସେତେବେଳେ ଶ୍ରୀବିଗ୍ରହ-ଦର୍ଶନ ପରେ ଅନାଗତ ଶ୍ରୀବଳଦେବ ବିଦ୍ୟାଭୂଷଣଙ୍କ ନାମ ତିନିଥର ଉଚ୍ଚସ୍ୱରରେ ଉଚ୍ଚାରଣ କରି ତା'ପରେ "ମୟୂର ଗ୍ରାମ"କୁ ଯାଆନ୍ତି, ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ ଦର୍ଶନ କରିବା ନିମିତ୍ତ । ସେଠାରେ ଉପସ୍ଥିତ ହୋଇ ସ୍ତୁତି-ନତି ପୂର୍ବକ ଧୂଳିରେ ଗଡ଼ାଗଡ଼ି ଦିଅନ୍ତି ।

ରେମୁଣାତେ ଦୁଇ ପ୍ରଭୁ ବହୁ ଲୀଳା କୈଲ ।
ଯବନ ଶାହାଜୀ ଆସି ଦର୍ଶନ କରିଲ ।।

× × ×

ସପ୍ତଚିରା ରାମଚଣ୍ଡୀ, ବ୍ରଜ ସରୋବର ।
ମାଧବେନ୍ଦ୍ର ପୁରୀ ଯଥା ବିଶ୍ରାମ କରିଲ ।।
ଗର୍ଗେଶ୍ୱର ମହାଦେବ ଆଛେନ ତଥାୟ ।
ଗୌଡ଼ଦାଣ୍ଡେର ଶୋଭା କହନ ନା ଯାୟ ।।
ଶ୍ରୀଧରସ୍ୱାମୀର ସ୍ଥାନେ ଗମନ କରିଲ ।
ଦର୍ଶନ ମାତ୍ରେତେ ଧୂଲାୟ ଗଡ଼ାଗଡ଼ି ଦିଲ ।।
ବଲଦେବ ନାମ ତିନ ବାର ଉଚ୍ଚାରିଲ ।
ମହାପ୍ରଭୁ ଯୈଛେ ନରୋତ୍ତମ ପ୍ରକାଶିଲ ।

(ଶ୍ରୀ ଶ୍ୟାମାନନ୍ଦ ପ୍ରକାଶ : ୧୦ମ ଦଶା)

ଉପର୍ଯ୍ୟୁକ୍ତ ଗ୍ରନ୍ଥର ପ୍ରମାଣାନୁଯାୟୀ ଶ୍ରୀଧରସ୍ୱାମୀପାଦ ଓଡ଼ିଶାର ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ରେମୁଣା ସନ୍ନିକଟବର୍ତ୍ତୀ ମୟୂର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ।

ତାଙ୍କର ଜନ୍ମ ସମ୍ବନ୍ଧରେ ମ୍ୟାକସ୍‌ମୁଲର କହନ୍ତି—"୧୩୮୦ ସମ୍ବତ୍‌ରେ ଭକ୍ତି

ବା ଭଟ୍ଟ ନାମକ କବି ବର୍ତ୍ତମାନ ଥିଲେ । ଏହା ଗୁର୍ଜ୍ଜରପତି ବିଯୋଗଙ୍କ ପୁତ୍ର ପ୍ରଶାନ୍ତରାଗ କର୍ତ୍ତୃକ ଖୋଦିତ ନନ୍ଦୀପୁରୀର ସନନ୍ଦପତ୍ରରେ ମିଳେ । ଏମାନେ ମଧ୍ୟ ସପ୍ତମ ଶତାବ୍ଦୀରେ ବର୍ତ୍ତମାନ ଥିଲେ ।"

ତାହାଙ୍କ ରଚିତ ଗ୍ରନ୍ଥାବଳୀ:—୧ ଶ୍ରୀମଦ୍ ଭାଗବତ ଟୀକା 'ଭାବାର୍ଥଦୀପିକା' । ୨ ଶ୍ରୀମଦ୍ ଭଗବଦ୍ ଗୀତାର ଟୀକା 'ସୁବୋଧିନୀ' । ୩ ଶ୍ରୀ ବିଷ୍ଣୁ ପୁରାଣର ଟୀକା 'ଆତ୍ମ ପ୍ରକାଶ' । ୪. ସନତ୍ ସୁଜାତୀୟର ଟୀକା 'ବାଲବୋଧିନୀ' । ୫. ଗୀତାସାର ଟୀକା 'ବ୍ରହ୍ମସମ୍ବୋଧିନୀ' । ୬. ବ୍ରଜବିହାର କାବ୍ୟ । ୭. ପାଦାର୍ଥ ପ୍ରକାଶିକା, ୮. ବେଦସ୍ତୁତି ଟୀକା, ୯. ଶ୍ରୀ ରୂପଗୋସ୍ୱାମୀ ସଂଗୃହୀତ ପଦ୍ୟାବଳୀଧୃତ ୧୪, ୧୫, ୨୭, ୨୮, ୪୩ ଶ୍ଳୋକ । ଶ୍ରୀଧରସ୍ୱାମୀଙ୍କ ସମ୍ବନ୍ଧରେ କେତୋଟି ଆଖ୍ୟାୟିକା । ୧ । ନାଭଜୀକୃତ ହିନ୍ଦୀ 'ଭକ୍ତମାଳ'ର 'ବାର୍ତ୍ତିକ ପ୍ରକାଶ'ରେ ବର୍ଣ୍ଣିତ ଅଛି ଯେ, ଶ୍ରୀଧର ସ୍ୱାମୀ ପୂର୍ବାଶ୍ରମରେ ଜଣେ ଧନବାନ୍ ସଦାଚାରୀ ଗୃହସ୍ଥ ଥିଲେ । ଆଗ୍ରାରୁ ଗୃହାଭିମୁଖେ ଫେରୁଥିବା ସମୟରେ କେତେଜଣ ଠକ ତାଙ୍କୁ ଅନୁସରଣ କରନ୍ତି । ସେମାନେ ତାଙ୍କ (ଶ୍ରୀଧରଙ୍କ) ସାଙ୍ଗ ଆଉ କିଏ ଅଛନ୍ତି, ଜିଜ୍ଞାସା କରିବାରୁ ସେ ଉତ୍ତର ଦିଅନ୍ତି ଯେ, ତାଙ୍କର ପ୍ରାଣାଧାର ଧନୁର୍ଦ୍ଧାରୀ ରଘୁବୀର ତାହାଙ୍କ ସାଙ୍ଗରେ ଅଛନ୍ତି । ଏ କଥା ଶୁଣି ଠକମାନେ ଶ୍ରୀଧରଙ୍କର କୌଣସି ପ୍ରକୃତ ରକ୍ଷକ ନାହାନ୍ତି ଜାଣି ତାଙ୍କ ପ୍ରାଣସଂହାର ପୂର୍ବକ ଧନାଦି ଗ୍ରହଣ କରିବା ଉପାୟ ଚିନ୍ତା କରିବାରୁ ଭଗବାନ୍ ଶ୍ରୀ ରାମଚନ୍ଦ୍ର ଶ୍ରୀଧରଙ୍କ ସହିତ ରକ୍ଷକ ରୂପେ ଚାଲିବାକୁ ଲାଗିଲେ । ଏହା ବଞ୍ଚକଗଣ ଦେଖିବାକୁ ପାଇଲେ । ଶ୍ରୀଧର ନିରାପଦରେ ଘରେ ଉପସ୍ଥିତ ହେବାରୁ ଧନୁର୍ଦ୍ଧାରୀ ଭଗବାନ୍ ଅନ୍ତର୍ହିତ ହୁଅନ୍ତି । ସେତେବେଳେ ତଦନୁସରଣକାରୀ ପ୍ରତାରକମାନେ ଶ୍ରୀଧରଙ୍କ ନିକଟରେ ଉକ୍ତ ଧନୁର୍ଦ୍ଧାରୀ ବୀରଙ୍କ ଦର୍ଶନ ପ୍ରାର୍ଥନା କରନ୍ତି । ଶ୍ରୀଧର ସେତେ-ବେଳେ ବୁଝିପାରିଲେ ଯେ, ସେ ଠକମାନଙ୍କୁ ବଞ୍ଚନା କରିବା ପାଇଁ ଯେଉଁ ଭଗବାନଙ୍କର ନାମମାତ୍ର ଉଲ୍ଲେଖ କରିଥିଲେ, ସେହି ଭଗବାନ ସତକୁ ସତ ତାଙ୍କର ରକ୍ଷକ ରୂପେ ଏତେ କ୍ଳେଶ ସ୍ୱୀକାର ପୂର୍ବକ ତାହାଙ୍କୁ ଦୁର୍ଗମ ପଥରେ ରକ୍ଷା କରି ଗୃହରେ ପହଞ୍ଚାଇ ଦେଇଛନ୍ତି ।

ଏଥିଲାଗି ତାଙ୍କ ହୃଦୟରେ ଏକାଧାରରେ ଗ୍ଳାନି (ପ୍ରଭୁଙ୍କୁ କଷ୍ଟ ଦେଇଛନ୍ତି ବୋଲି) ଓ ବିଶ୍ୱାସ ଭକ୍ତିର ଉଦୟ ହୁଏ ଏବଂ ସେ ସନ୍ନ୍ୟାସ ଗ୍ରହଣ କରି ଶ୍ରୀ ହରି-ଭଜନାର୍ଥ ବହିର୍ଗତ ହୁଅନ୍ତି । ତତ୍‌ପରେ ଶ୍ରୀମଦ୍ ଭାଗବତର ଭାବାର୍ଥ ଦୀପିକା ଟୀକା ରଚନା କରନ୍ତି ।

୨ । ଶ୍ରୀଲାଲଦାସ-କୃତ ବଙ୍ଗଳା 'ଭକ୍ତମାଳା' ଗ୍ରନ୍ଥର ବର୍ଣ୍ଣନାନୁସାରେ ଶ୍ରୀଧର ଶ୍ରୀ ପରମାନନ୍ଦ ପୁରୀ ନାମକ ଜନୈକ ସନ୍ନ୍ୟାସୀଙ୍କର କୃପାଲାଭ କରି ଶ୍ରୀ ନୃସିଂହୋ-

ପାସକ ଓ ପରମ ଭଗବତ ହୋଇଥିଲେ । ତାଙ୍କ ହୃଦୟରେ ବୈରାଗ୍ୟ ଉଦୟ ହେବାରୁ ସେ ଗୃହରେ ପୂର୍ଣ୍ଣଗର୍ଭବତୀ ସ୍ତ୍ରୀକୁ ଏକାକିନୀ ଛାଡ଼ି ବନଗମନାର୍ଥ ସଙ୍କଳ୍ପ କଲେ । କିନ୍ତୁ ତତ୍ପୂର୍ବେ ହିଁ ତାଙ୍କର ପତ୍ନୀ ଗୋଟିଏ ପୁତ୍ର ସନ୍ତାନ ପ୍ରସବ କରି ପରଲୋକ ଗମନ କରିବାରୁ ଶ୍ରୀଧର ଶିଶୁପୁତ୍ରକୁ କି ପ୍ରକାରେ ଏକାକୀ ରଖି ଗୃହତ୍ୟାଗ କରିବେ, ଏହା ଭାବି ଆକୁଳ ହୋଇ ପଡ଼ନ୍ତି । ଏପରି ସମୟରେ ଘରର ଛାତରୁ ଗୋଟିଏ ଝିଟିପିଟିର ଡ଼ିମ୍ବ ମାଟିରେ ପଡ଼ି ଭାଙ୍ଗିଗଲା ଓ ତହିଁରୁ ଗୋଟିଏ ଶାବକ ବାହାରି ପଡ଼ି ସମ୍ମୁଖସ୍ଥ ଗୋଟିଏ ମକ୍ଷିକାକୁ ଖାଇଦେଲା । ଏହି ଘଟଣାରୁ ଶ୍ରୀଧର ବୁଝିପାରିଲେ ଯେ ଭଗବାନ ହିଁ ଏକମାତ୍ର ସମସ୍ତଙ୍କର ରକ୍ଷକ । ଶ୍ରୀଧର ତତ୍କ୍ଷଣାତ୍ ଗୃହତ୍ୟାଗ କରିବାରୁ ଗ୍ରାମସ୍ଥ ବ୍ୟକ୍ତିଗଣ ସଦ୍ୟଜାତ ଶିଶୁକୁ ଲାଳନପାଳନ କରିବାକୁ ଲାଗିଲେ । ଏହି ଶିଶୁ ହିଁ କାଳକ୍ରମେ ବିଖ୍ୟାତ 'ଭକ୍ତିକାବ୍ୟ' ଗ୍ରନ୍ଥର ରଚୟିତା ବୋଲି ପରିଚିତ ହୁଅନ୍ତି ।

୩ । ଶ୍ରୀଧାମ ବୃନ୍ଦାବନର ଶ୍ରୀ ଗୋପାଳଭଟ୍ଟ ପରିବାର ଶ୍ରୀ ଗୋପୀନାଥ ପୂଜାରୀଙ୍କ ବଂଶୋଦ୍ଭବ ଶ୍ରୀ ରାଧାରମଣ ଦାସ ଗୋସ୍ୱାମୀ ମହାଶୟ ଶ୍ରୀଧରସ୍ୱାମୀ-ପାଦଙ୍କର 'ଭାବାର୍ଥ ଦୀପିକା'ର ଅନୁଗତ 'ଦୀପିକା ଦୀପନ' ନାମକ ଟୀକାର ପ୍ରାରମ୍ଭରେ ଶ୍ରୀ ସ୍ୱାମୀପାଦଙ୍କ ସମ୍ବନ୍ଧରେ ଗୋଟିଏ ଐତିହ୍ୟର ଉଲ୍ଲେଖ କରିଛନ୍ତି । ଶ୍ରୀଧର ପୂର୍ବାଶ୍ରମରେ ଦିଗ୍ବିଜୟୀ ପଣ୍ଡିତ ଥିଲେ । ସେ ଏକସମୟରେ ଦିଗ୍ବିଜୟ କରି ଗୃହକୁ ପ୍ରତ୍ୟାବର୍ତ୍ତନ କାଳରେ ରାସ୍ତାରେ କେତେଜଣ ଦସ୍ୟୁକର୍ତ୍ତୃକ ଆକ୍ରାନ୍ତ ହୁଅନ୍ତି ଏବଂ ଭୟରେ ଚକ୍ଷୁ ମୁଦ୍ରିତ କରି ନିଜ ଗୃହଦେବତା ଶ୍ରୀ ରାମଚନ୍ଦ୍ରଙ୍କୁ ସ୍ମରଣ କରିବା ମାତ୍ରେ ତତ୍କ୍ଷଣାତ୍ ଧନୁର୍ଦ୍ଧାରୀ ଶ୍ରୀ ରାମଚନ୍ଦ୍ର ଦସ୍ୟୁଗଣଙ୍କୁ ନାନାପ୍ରକାର ଭୟ ପ୍ରଦର୍ଶନ କରନ୍ତି । ସେତେବେଳେ ଦସ୍ୟୁମାନେ ଶ୍ରୀଧରଙ୍କର ପାଦପଦ୍ମରେ ପତିତ ହୋଇ କହିଲେ—ହେ ବିପ୍ର ! ତୁମର ସଙ୍ଗୀ ଦୁର୍ବାଦଳଶ୍ୟାମ ଜଣେ ବାଳକ ଆମ୍ଭମାନଙ୍କୁ ବାଣବିଦ୍ଧ କରୁଛି; ରକ୍ଷା କର, ରକ୍ଷା କର ! ତାହା ଶୁଣି ଶ୍ରୀଧର ମନେ ମନେ ଦୁଃଖିତ ହେଲେ ଏବଂ ଚିନ୍ତାକଲେ, 'ଏହି ତୁଚ୍ଛଧନ ରକ୍ଷାର୍ଥ ମୋର ପ୍ରାଣର ପ୍ରଭୁ ଏତେ କଷ୍ଟ ସ୍ୱୀକାର କରୁଛନ୍ତି ! ସେତେବେଳେ ହିଁ ସେ ସଂସାର ତ୍ୟାଗ କରି କାଶୀଧାମକୁ ଗମନ ପୂର୍ବକ ସନ୍ନ୍ୟାସ ଗ୍ରହଣ ଓ ଶ୍ରୀ ପରମାନନ୍ଦସ୍ୱାମୀଙ୍କ ନିକଟରୁ ଶ୍ରୀ ନୃସିଂହ ମନ୍ତ୍ରରେ ଦୀକ୍ଷାଲାଭ କରନ୍ତି ।

୪ । କେହି କେହି କହନ୍ତି—'ଶ୍ରୀ ଭଗବନ୍ନାମକୌମୁଦୀ' ଗ୍ରନ୍ଥର ରଚୟିତା ଶ୍ରୀ ଲକ୍ଷ୍ମୀଧରଙ୍କର ସତୀର୍ଥ ଭ୍ରାତା ଥିଲେ ଶ୍ରୀଧରସ୍ୱାମୀପାଦ । ଶ୍ରୀ ସ୍ୱାମୀପାଦଙ୍କ ରଚିତ ଗ୍ରନ୍ଥାବଳୀରୁ ଯେଉଁସବୁ ସଂକ୍ଷିପ୍ତ ତଥ୍ୟ ସଂଗ୍ରହ କରାଯାଇଛି, ତହିଁରୁ ଜଣାଯାଏ ଯେ ସେ କେବଳାଦ୍ୱୈତାବାଦି ସମ୍ପ୍ରଦାୟର କାଶୀବାସୀ ଏକଦଣ୍ଡୀ ସନ୍ନ୍ୟାସୀ ଥିଲେ । କିନ୍ତୁ ମାୟାବାଦୀ ନଥିଲେ । ସେ ଅଦ୍ୱୈତବାଦୀ ସଂପ୍ରଦାୟର ଶୋଧନ ଲାଗି ବିଶେଷ

ଯତ୍ନ କରିଥିଲେ । ସେ ପରମାନନ୍ଦ ନାମକ ଗୁରୁଙ୍କର ପାଦାଶ୍ରୟ କରିଥିଲେ । ତାଙ୍କର ସନ୍ନ୍ୟାସ ନାମ—ଯତି ଶ୍ରୀଧରସ୍ୱାମୀ ଏବଂ ସେ ଶ୍ରୀ ନୃସିଂହ ଉପାସକ ଥିଲେ ।

ସେ ଶ୍ରୀହରି-ହରଙ୍କୁ ଏକାତ୍ମା ଜାଣି ମଧ୍ୟ ଶ୍ରୀ ମାଧବଙ୍କୁ ହିଁ 'ସ୍ୱୟଂରୂପ ଭଗବାନ ବୋଲି ଜାଣିଥିଲେ । ସେ କାଶୀରେ ଅବସ୍ଥାନ ପୂର୍ବକ ଶ୍ରୀ ବିନ୍ଦୁମାଧବଙ୍କର ସନ୍ତୋଷାର୍ଥ ଚିତ୍‌ସୁଖାଚାର୍ଯ୍ୟଙ୍କର ବ୍ୟାଖ୍ୟା ଆଲୋଚନା କରି ଶ୍ରୀ ବିଷ୍ଣୁପୁରାଣର 'ଆତ୍ମ ପ୍ରକାଶ' ଟୀକା ରଚନା କରିଥିଲେ । ଶ୍ରୀମଦ୍ ଭାଗବତର 'ଭାବାର୍ଥଦୀପିକା' ଟୀକା ମଧ୍ୟ ସେ ସ୍ୱ-ସଂପ୍ରଦାୟର ବିଶୁଦ୍ଧି ଲାଗି ହିଁ ରଚନା କରିଥିଲେ ।

୫ । ଶ୍ରୀ ଭାଗବତ ଓ ଶ୍ରୀଗୀତାର ଟୀକା ନେଇ ବିଦ୍ୱତ୍-ସମାଜରେ ବିବାଦ ଉପସ୍ଥିତ ହେବାରୁ ତାର ମୀମାଂସା ଲାଗି ଉକ୍ତ ଟୀକାଦ୍ୱୟ ଶ୍ରୀ ବେଣୀମାଧବଙ୍କର ଶ୍ରୀଚରଣରେ ଅର୍ପଣ କରାହୁଏ । ଶ୍ରୀ ନୃସିଂହଦେବଙ୍କ ପ୍ରସାଦରେ ଶ୍ରୀଧରସ୍ୱାମୀଙ୍କ ଟୀକା ହିଁ ପ୍ରାମାଣ୍ୟ ବୋଲି ସ୍ୱପ୍ନାଦେଶ ହୁଏ ନିମ୍ନୋକ୍ତ ଶ୍ଳୋକାକାରରେ:—

ଅହଂ ବେଦ୍ମି ଶୁକୋ ବେତ୍ତି
ବ୍ୟାସୋ ବେତ୍ତି ନ ବେତ୍ତି ବା ।
ଶ୍ରୀଧରଃ ସକଳଂ ବେତ୍ତି
ବେତ୍ତି ଶ୍ରୀନୃସିଂହ-ପ୍ରସାଦତଃ ।।

ଏଥିରୁ ବୁଝାଯାଏ, ଶ୍ରୀଧରଙ୍କର ଟୀକାଦ୍ୱୟ ଶ୍ରୀନୃସିଂହଦେବଙ୍କ ପ୍ରସାଦପୂତ ।
ଶ୍ରୀଧରେର ଆନୁଗତ୍ୟେ ଯେ କରେ ଲିଖନ ।
ସବଲୋକ ମାନ୍ୟକରି କରିବେ ଗ୍ରହଣ ।।"

ଧର୍ମପ୍ରୋଜ୍‌ଝିତ କୈତବୋଽତ୍ର . . . . .ଶୁଶ୍ରୂଷୁଭିସ୍ତତକ୍ଷଣାତ ।
ଇଦାନୀଂ ଶ୍ରୋତୃ ପ୍ରବର୍ତ୍ତନାୟ ଶ୍ରୀମଦ ଭାଗବତସ୍ୟ କାଣ୍ଡତ୍ରୟଂ
ବିଷୟେଭ୍ୟଃ ସର୍ବଶାସ୍ତ୍ରେଭ୍ୟଃ ଶ୍ରେଷ୍ଠ୍ୟଂ ଦର୍ଶୟତି ଧର୍ମ

ଇତି ଶ୍ଳୋକର ଟୀକାନୁସାରେ ଶ୍ରୀଚୈତନ୍ୟଚରିତାମୃତକାର ଲେଖିଛନ୍ତି ।

ଅଜ୍ଞାନ ତମେର ନାମ କହିୟେ କୈତବ ।
ଧର୍ମ-ଅର୍ଥ-କାମ ମୋକ୍ଷ ବାଞ୍ଛା ଆଦି ସବ ।।
ତାର ମଧ୍ୟେ ମୋକ୍ଷବାଞ୍ଛା କୈତବ ପ୍ରଧାନ ।
ଯାହା ହୈତେ କୃଷ୍ଣଭକ୍ତି ହୟ ଅନ୍ତର୍ଦ୍ଧାନ ।।

ଶ୍ରୀଧର ଏହି ଶ୍ଳୋକର ବ୍ୟାଖ୍ୟାରେ ପ୍ରଚ୍ଛନ୍ନ ବୌଦ୍ଧବାଦ ବା କେବଳା-ଦ୍ୱୈତବାଦ ଖଣ୍ଡନ କରିଛନ୍ତି । ସ୍ୱାତ୍ୱତ ଆଗ୍ରମ୍ଭ ଚତୁଷ୍ଟୟଙ୍କର କେବଳ ଶ୍ରୀ ବିଷ୍ଣୁ-ସ୍ୱାମୀଙ୍କର ସର୍ବଜ୍ଞ ସୂକ୍ତର ପ୍ରମାଣ ଉଦ୍ଧାର କରିଛନ୍ତି । ଶ୍ରୀଧର ବିଷ୍ଣୁପୁରାଣର ଟୀକାରେ ମଧ୍ୟ କେବଳାଦ୍ୱୈତବାଦ ମତ ଖଣ୍ଡନପର ଶୁଦ୍ଧାଦ୍ୱୈତ (ଶ୍ରୀମଦ୍ ଭାଗବତର ୮୭ ଅଧ୍ୟାୟରେ ବ୍ରହ୍ମସ୍ତୁତି-୧୦।୮୭) ବିଚାର କରିଛନ୍ତି । ଭକ୍ତି, ଭଗବାନ୍ ଓ ଭକ୍ତର ପାର୍ଥକ୍ୟ । ଚେତନାଚେତନ ପ୍ରପଞ୍ଚରେ ପରମାତ୍ମୋପାଦାନର ନିର୍ଭେଦ ମୁକ୍ତିର ନିନ୍ଦା ଏବଂ ଶ୍ରବଣ କୀର୍ତ୍ତନାଦି ଭକ୍ତିର ନିତ୍ୟତା ପ୍ରତିପାଦନ କରିଅଛନ୍ତି । ମାୟାବାଦିଗଣ ସବିଶେଷ ବ୍ରହ୍ମଙ୍କୁ ପରତତ୍ତ୍ୱ ବୋଲି ସ୍ୱୀକାର କଲେ ମଧ୍ୟ ଶ୍ରୀଧର ଶ୍ରୀକୃଷ୍ଣଙ୍କୁ ହିଁ ବ୍ରହ୍ମର ପ୍ରତିଷ୍ଠା ବା ଘନୀଭୂତ ବ୍ରହ୍ମ କହିଛନ୍ତି । ଅଦ୍ୱୈତବାଦିଗଣ ଶ୍ରୀଭଗବାନଙ୍କର ବିଗ୍ରହ, ନାମ, ରୂପ, ଗୁଣ, ବିଭୂତି, ଧର୍ମ ଓ ପରିକରଗଣଙ୍କର ନିତ୍ୟତା ସ୍ୱୀକାର ନ କଲେ ମଧ୍ୟ ଶ୍ରୀଧର ଶ୍ରୀବିଗ୍ରହଙ୍କର ସନାତନତ୍ୱ ଓ ଅପରି-ମେୟତ୍ୱାଦି ସ୍ଥାପନ କରିଅଛନ୍ତି । 'ପ୍ରଭୁ' ଶବ୍ଦର ବ୍ୟାଖ୍ୟା ଅବସରରେ ଭଗବାନଙ୍କର ଅପ୍ରାକୃତ ଗୁଣ ନିଚୟର ପ୍ରତିପାଦନ କରିଅଛନ୍ତି । 'ସବିଶେଷ' ଶବ୍ଦରେ ବିଷ୍ଣୁ-ପୁରାଣର ଟୀକାରେ ଅଚିନ୍ତ୍ୟ ଶବ୍ଦର ବ୍ୟାଖ୍ୟାରେ ଅର୍ଥାପତ୍ତି ପ୍ରମାଣ ଦ୍ୱାରା ଅଚିନ୍ତ୍ୟ ଭେଦାଭେଦବାଦର ବୀଜ ନିହିତ କରିଛନ୍ତି । ସେ ଯେ ସ୍ୱସମ୍ପ୍ରଦାୟର ଅନୁରୋଧରେ ଶ୍ରୀଭାଗବତର ଓ ଶ୍ରୀଗୀତାର ଟୀକା ଲେଖିଥିଲେ, ତାର ସ୍ୱୀକୃତିରେ ନିଜେଇ କହିଛନ୍ତି—

ସମ୍ପ୍ରଦାୟାନୁରୋଧେନ ପୌର୍ବାପର୍ଯ୍ୟାନୁସାରତଃ ।
ଶ୍ରୀଭାଗବତଭାବାର୍ଥଦୀପିକେୟଂ ପ୍ରତନ୍ୟତେ ॥

## ଟୀକା ପୂର୍ବରେ ତାଙ୍କର ଦୈନ୍ୟୋକ୍ତି—

କ୍ୱାହଂ ମନ୍ଦମତିଃ କ୍ୱେଦଂ ମଥନଂ କ୍ଷୀରବାରିଧେଃ ।
କିଂ ତତ୍ର ପରମାଣୁର୍ବୈ ଯତ୍ର ମଜ୍ଜତି ମନ୍ଦରଃ ॥
ଶ୍ରୀମଦ୍ ଭାଗବତାଭିଧଃ ସୁରତରୁସ୍ତାରାଙ୍କୁରଃ ସଜ୍ଜନିଃ ।
ସ୍କନ୍ଧୈର୍ଦ୍ୱାଦଶଭିସ୍ତତଃ ପ୍ରବିଲସଦ ଭକ୍ତ୍ୟାଲ ବାଲୋଦୟଃ ॥
ଦ୍ୱାତ୍ରିଂଶତ୍ରିଶତଞ୍ଚ ଯସ୍ୟ ବିଲସତ୍ ଶାଖାଂ ସହସ୍ରାନାଳମ୍ ।
ପର୍ଣ୍ଣାନ୍ୟଷ୍ଟଦଶେଷ୍ଟୋତି ସୁଲଭୋ ବର୍ତ୍ତତେ ସର୍ବୋପରି ॥
ମୂକଂ କରୋତି ବାଚାଳଂ ପଙ୍ଗୁମ୍ ଲଂଘୟତେ ଗିରିମ୍ ॥

## ଶ୍ରୀ ଗୀତାର ସୁବୋଧିନୀ ଟୀକାର ପ୍ରାରମ୍ଭରେ-

— -

ଶେଷାଶେଷମୁଖଂ ବ୍ୟାଖ୍ୟାଚାତୁର୍ଯ୍ୟଂ ତ୍ୱେକ ବକ୍ତ୍ରତଃ ।
ଦଧାନମଦ୍‌ଭୁତଂ ବନ୍ଦେ ପରମାନନ୍ଦ-ମାଧବମ୍ ।।
ଶ୍ରୀମାଧବଂ ପ୍ରଣମ୍ୟ ମାଧବଂ ବିଶ୍ୱେଶମାଦରାତ୍ ।
ତଦ୍‌ଭକ୍ତି ଯାନ୍ତିତା କୁର୍ବେ ଗୀତାବ୍ୟାଖ୍ୟାନ୍ୟାଂ
ସୁବୋଧିନୀମ୍ ।।

ଭାଷ୍ୟକାରମତଂ ସମ୍ୟକ୍ ତଦ୍ ବ୍ୟାଖ୍ୟାତୃଗିରସ୍ତଥା ।
ଯଥାମତି ସମାଲୋକ୍ୟ ଗୀତାବ୍ୟାଖ୍ୟାଂ ସମାରଭେ ।।

ଶ୍ରୀଧର କେବଳାଦ୍ୱୈତବାଦ ଖଣ୍ଡନମୁଖରେ ଶୁଦ୍ଧାଦ୍ୱୈତ ବିଗ୍ରହ ହୋଇଛି । ବିଷ୍ଣୁପୁରାଣର ଟୀକାରେ (୬-୧୬) ଶ୍ରୀଧର ଅଦ୍ୱୈତବାଦ ପରମ୍ପରା ଶିଷ୍ୟ ଥିଲେ; କିନ୍ତୁ ବସ୍ତୁତଃ ଭକ୍ତିବାଦ ପ୍ରଧାନ ଥିଲେ ଏବଂ ଅନ୍ତରରେ ପରମ ବୈଷ୍ଣବ ଥିଲେ, ଯେଉଁଥିପାଇଁ ଶ୍ରୀଚୈତନ୍ୟଦେବ ତାହାଙ୍କୁ ଗୁରୁ ରୂପେ ସମ୍ମାନ ଦେଇଥିଲେ । ଶ୍ରୀଳ ଶ୍ରୀଜୀବ ଗୋସ୍ୱାମୀପାଦ କହନ୍ତି—ଶ୍ରୀ ଶ୍ରୀଧରସ୍ୱାମୀ ପରମ ବୈଷ୍ଣବ । ତାଙ୍କ ଟୀକାରେ ସେ ଶ୍ରୀ ଭଗବାନଙ୍କର ବିଗ୍ରହ, ଗୁଣ, ଐଶ୍ୱର୍ଯ୍ୟ, ଧାମ ଏବଂ ପାର୍ଷଦଗଣଙ୍କର ନିତ୍ୟତ୍ୱ ଏବଂ ମୁକ୍ତି ପରେ ମଧ୍ୟ ଭକ୍ତିର ଅନୁବୃତ୍ତିର ସିଦ୍ଧାନ୍ତ ପ୍ରପଞ୍ଚିତ କରିଛନ୍ତି । ତଥାପି ତାଙ୍କ ଗ୍ରନ୍ଥର ସ୍ଥାନେ ସ୍ଥାନେ ଯେଉଁସବୁ କେବଳ ଦ୍ୱୈତବାଦ ପ୍ରତିମ ବା ମାୟାବାଦ ପ୍ରତିମ ସିଦ୍ଧାନ୍ତର ଉଲ୍ଲେଖ ଦୃଷ୍ଟ ହୁଏ, ତାହା କେବଳ ତଦାନୀନ୍ତନ ମଧ୍ୟଦେଶବ୍ୟାପ୍ତ ଅଦ୍ୱୈତବାଦିଗଣଙ୍କୁ "ବଡ଼ିଶାମିଷାର୍ପଣ" ନ୍ୟାୟ ଅବଲମ୍ବନରେ କୌଣସିରୂପେ ଭୁଲାଇ ଶ୍ରୀଭଗବାନଙ୍କର ନାମ, ରୂପ, ଗୁଣ ଓ ଲୀଳା ଶ୍ରବଣ କରାଇ ତାଙ୍କ ମହିମାରେ ଅବଗାହନ କରାଇବାର ଉଦ୍ଦେଶ୍ୟ । "ଭକ୍ତିରସିକାବିରଳା × × ଶ୍ରୁତିଷ୍ଟ ମୁକ୍ତେରପ୍ୟାଧିକ୍ୟଂ ଭକ୍ତେର୍ଦର୍ଶୟତି ; ଯଥାହ—ଯଂ ସର୍ବେ ଦେବା ନମନ୍ତି ମୁମୁକ୍ଷବୋ ବ୍ରହ୍ମବାଦିନ ଶ୍ଚ ; ଇତି । —ବ୍ୟାଖ୍ୟାତଞ୍ଚ ସର୍ବଜ୍ଞୈର୍ଭାଷ୍ୟଛଦ୍‌ଭିଃ—"ମୁକ୍ତା ଅପି ଲୀଲୟା ବିଗ୍ରହଂ କୃତ୍ୱା ଭଗବନ୍ତଂ ଭଜନ୍ତେ ଇତି— । ତ୍ୟଂ କଥାମୃତ ପାଥୋଧୌ ବିହରନ୍ତୋ ମହାମୁଦଃ । କୁର୍ବନ୍ତି କୃତିନଃ କେଚିଚ୍ଚତୁର୍ବର୍ଗଂ ତୃଣୋପମମ୍ ।"

(ଭା. ଦୀ. ୧୦–୮୭–୨୧)

ଅର୍ଥାତ୍ ଭକ୍ତିରସିକଗଣ ବିରଳ । ଶ୍ରୁତି ଓ ମୁକ୍ତି ଅପେକ୍ଷା ଭକ୍ତିର ଆଧିକ୍ୟ ପ୍ରଦର୍ଶନ କରିଛନ୍ତି । ଯଥା—ସକଳ ଦେବଗଣ, ମୁମୁକ୍ଷୁଗଣ ଓ ବ୍ରହ୍ମବାଦଗଣ ଯାହାଙ୍କୁ ପ୍ରଣାମ କରନ୍ତି, ସର୍ବଜ୍ଞଭାଷ୍ୟକାର ଏ ପ୍ରକାର ବ୍ୟାଖ୍ୟା କରିଛନ୍ତି । ମୁକ୍ତଗଣ ମଧ୍ୟ ଲୀଳାରେ ବିଗ୍ରହ ଧାରଣ କରି ଭଗବାନଙ୍କର ଭଜନ କରନ୍ତି । ଆପଣଙ୍କ କଥାମୃତ

ରୂପ ସମୁଦ୍ରରେ ବିହାରକାରୀ ପରମାନନ୍ଦଶାଳୀ କୌଣସି କୌଣସି କୃତିଗଣ ଚତୁ-ବର୍ଗକୁ ତୃଣତୁଲ୍ୟ ଜ୍ଞାନ କରିଥାନ୍ତି ।

ଶ୍ରୀସ୍ୱାମୀପାଦ ଶ୍ରୀକୃଷ୍ଣନାମ ଭଜନର ସହିତ ଅନ୍ୟାନ୍ୟ ସାଧନର ତୁଲ୍ୟତା ସ୍ୱୀକାର ନ କରି ମାୟାବାଦ ବିଜୃମ୍ଭିତ ସମନ୍ୱୟବାଦ ନିରସନ କରିଛନ୍ତି ଏବଂ ଶ୍ରୀକୃଷ୍ଣନାମ ଓ ତାଙ୍କର ଶ୍ରବଣ କୀର୍ତ୍ତନର ଅସମୋର୍ଦ୍ଧ୍ୱତା ଜ୍ଞାପନ କରିଛନ୍ତି ।

ଜ୍ଞାନମସ୍ତି ତୁଳିତଞ୍ଚ ତୁଳାୟାଂ,
ପ୍ରେମାନୈବ ତୁଳିତସ୍ତୁ ତୁଳାୟାମ ।
ସିଦ୍ଧିରେବ ତୁଳିତାତ୍ର ତୁଳାୟାଂ
କୃଷ୍ଣନାମ ତୁଳିତଂ ନ ତୁଳାୟାମ୍ ।।

(ପଦ୍ୟାବଳୀ-୧୪)

"ସଦା ସର୍ବତ୍ରାସ୍ତେ ନନୁ ବିମଇମାଦ୍ୟଂ
ତବ ପଦଂ ତଥାପ୍ୟେକଂ
ସ୍ତୋକଂ ନ ହି ଭବତରୋଃ ପତ୍ରମଭିନତ୍
କ୍ଷଣଂ ଜିହ୍ୱାଗ୍ରସ୍ଥଂ ତବ
ତୁ ଭଗବାନ ନାମ ନିଖିଳଂ ସମୂଳଂ ସଂସାରଂ କର୍ଷତି କତରତ ସେବ୍ୟମାନ ୟୋ ।"

(ପଦ୍ୟାବଳୀ-୨୭)

ଶ୍ରୀଜୀବଗୋସ୍ୱାମୀପାଦ ଆହୁରି କହିଛନ୍ତି—ଅଦ୍ୱୈତବାଦୀଗଣଙ୍କୁ ଆକର୍ଷଣ କରିବାକୁ ହେଲେ ସେମାନଙ୍କର ଭବ, ଭଷା ଓ ଆକାର ପ୍ରକାର ଗ୍ରହଣ ନ କଲେ ସେମାନେ ନିତ୍ୟଭକ୍ତି ମହିମା ଜଥାରେ କର୍ଣ୍ଣପାତ ହିଁ କରିବେ ନାହିଁ । ଏଥିଲାଗି ହିଁ ଅନ୍ତରରେ ପରମ ବୈଷ୍ଣବ ଶ୍ରୀଧର ବାହ୍ୟ ଲୋକ ବ୍ୟବହାରରେ ଅଦ୍ୱୈତବାଦର ମିଶ୍ରଣରେ ତଦୀୟ ଲିପି ବିଚିତ୍ରିତ କରିଛନ୍ତି ।

ଶ୍ରୀଳ ଶ୍ରୀଜୀବଗୋସ୍ୱାମୀପାଦଙ୍କର ତତ୍ତ୍ୱସନ୍ଦର୍ଭର ଟୀକାରେ ଶ୍ରୀବଳଦେବ ବିଦ୍ୟାଭୂଷଣ ମଧ୍ୟ ଏହି ଏକ କଥାରେ ପୁନରବୃତ୍ତି କରିଛନ୍ତି—"ଶ୍ରୀଧରସ୍ୱାମୀ ନୋ ବୈଷ୍ଣବ ଏବ ତତଟୀକାସୁ ଭଗବଦ ବିଗ୍ରହ ଗୁଣ ବିଭୂତି ଧାମ୍ନାଂ ତତ୍ ପାର୍ଷଦତ ନୂନାଞ୍ଚ ନିତ୍ୟତ୍ୱୋକ୍ତେର୍ଭଗବଦଭକ୍ତେଃ ସର୍ବୋତ୍କୃଷ୍ଟ ମୋକ୍ଷାନୁବୃତ୍ତେରୁକ୍ତେଶ୍ଚ । ତଥାପି କଚିନ୍ମାୟା ବାଦୋଲ୍ଲେଖସ୍ତଦବାଦିନୋ ଭଗବଦ ଭକ୍ତୌ ପ୍ରବେଶୟିତୁଂ ବଡ଼ିଶା-ମିଷାର୍ପଣ ନ୍ୟାୟେ ନୈବେତି ବିଦିତମିତି ।"

ପୂର୍ବେ ଯେ କୁହାଯାଇଛି—କପଳାସ ତୀର୍ଥରେ ପାର୍ବତୀ ଦେବୀଙ୍କ ମୂର୍ତ୍ତିର ଗୋଟିଏ ପାର୍ଶ୍ୱରେ ଶ୍ରୀନୃସିଂହଦେବଙ୍କର ମୂର୍ତ୍ତି ସ୍ଥାପିତ ହୋଇଅଛି । ଶ୍ରୀଧର ଏହି ଶ୍ରୀନୃସିଂହଙ୍କର ଉପାସନା କରିଥିଲେ । ଶ୍ରୀନୃସିଂହଙ୍କର ଅଙ୍କଦେଶରେ ମହାଲକ୍ଷ୍ମୀ ବିରାଜମାନା । "ଲକ୍ଷ୍ମୀର୍ଯସ୍ୟ ଚ ବକ୍ଷସି ।" ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ଶ୍ରୀଲକ୍ଷ୍ମୀ-ନୃସିଂହ ଦେବଙ୍କ ସ୍ତୋତ୍ର ରଚନା କରିଥିଲେ । ତାଙ୍କର ପ୍ରତ୍ୟେକ ଶ୍ଳୋକର ଶେଷରେ "ଲକ୍ଷ୍ମୀନୃସିଂହ ମହ୍ୟଂ ଦେହି କରାବଲମ୍ବମ୍ ।" ଶ୍ରୀଧରଙ୍କ ପରି ସନ୍ନ୍ୟାସିଗଣ ଶ୍ରୀଲକ୍ଷ୍ମୀ-ନୃସିଂହଙ୍କର ଯୁଗଳମୂର୍ତ୍ତିର ଉପାସନା କରିଥିଲେ । ଓଡ଼ିଶାରେ ବିଶେଷତଃ ଢେଙ୍କାନାଳର ବ୍ରାହ୍ମଣଗଣଙ୍କ ସ୍ୱଗୃହରେ ଶ୍ରୀଲକ୍ଷ୍ମୀନୃସିଂହ ବା ଶ୍ରୀଲକ୍ଷ୍ମୀନାରାୟଣଙ୍କର ଉପାସନା ବିଶେଷ ଭାବେ ପ୍ରଚଳିତ ରହିଛି । ଢେଙ୍କାନାଳର ରାଜଗୁରୁ କାନ୍ତି ଓ ମଠର ମହନ୍ତମାନେ ଓ ବ୍ରହ୍ମଚାରୀଗଣଙ୍କର ଶ୍ରୀଲକ୍ଷ୍ମୀନୃସିଂହ ଦେବ ହିଁ ପରମ୍ପରାକ୍ରମେ ଉପାସ୍ୟ । ଶ୍ରୀମଦ୍‌ଭାଗବତର ଦଶମ ସ୍କନ୍ଧର ଏକତ୍ରିଂଶ ଅଧ୍ୟାୟ ଟୀକାର ଉପସଂହାରରେ ଶ୍ରୀଧର ଲେଖିଛନ୍ତି—

"ସେୟଂ ଶ୍ରୀପରମାନନ୍ଦ ସେବି ଶ୍ରୀଧରନିର୍ମିତା ।
ଶ୍ରୀଭାଗବତଭାବାର୍ଥଦୀପିକାଦଶମା ଶ୍ରୟା ।"
ଆତ୍ମପ୍ରକାଶ ଟୀକାର ପ୍ରାରମ୍ଭରେ—
ଶ୍ରୀବିନ୍ଦୁମାଧବଂ ବନ୍ଦେ ପରମାନନ୍ଦ ବିଗ୍ରହମ୍ ।
ବାଚଂ ବିଶ୍ୱେଶ୍ୱରଂ ଗଙ୍ଗାଂ ପରାଶରମୁଖାନ୍ ମୁନୀନ୍ ।।
ପୁନଶ୍ଚ ଭାବାର୍ଥଦୀପିକାର ଶେଷ ଶ୍ଳୋକରେ—
"ପ୍ରୀୟତାଂ ପରମାନନ୍ଦୋ ନୃହରିଃ ସଦ୍‌ଗୁରୁଃ ସ୍ୱୟମ୍ ।
ଶ୍ରୀପରମାନନ୍ଦସଂପ୍ରୀତେଃ ଗୁହ୍ୟଂ ଭାଗବତଂ ମୟା ।
ବିବୃତଂ ତନ୍ମତେନୈବ (ନେଦଂ) ନତୁ ସମ୍ମତ ବୈଭବମ୍ ।।"

ଶ୍ରୀପରମାନନ୍ଦ ନାମକ ସନ୍ନ୍ୟାସୀ ହିଁ ମୋର ସଦଗୁରୁ । ଅଥବା ପରମାନନ୍ଦ ସ୍ୱରୂପ ଶ୍ରୀନୃସିଂହଦେବହିଁସଦ୍‌ଗୁରୁ । ଶ୍ରୀଧର ତାଙ୍କର ଟୀକା ଭାଷ୍ୟର ଆଦ୍ୟନ୍ତରେ ଶ୍ରୀହରିସ୍ମରଣ କରିଛନ୍ତି ନିର୍ବିଘ୍ନରେ ଗ୍ରନ୍ଥାରମ୍ଭୋପସଂହାର ଲାଗି ।

"ଆଦ୍ୟାବନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।" ଗ୍ରନ୍ଥର କଳେବର ବୃଦ୍ଧିଭୟରେ ଶ୍ରୀସ୍ୱାମୀପାଦଙ୍କର ବିସ୍ତୃତ ଚରିତ୍ରାଲୋଚନା ଓ ତାହାଙ୍କର ମତବାଦର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣରୁ ବିରତ ହେଲି ।

।। ଇତି ନବମ ବୈଭବ ।।

---

# ଦଶମ ବୈଭବ

## ( ଶ୍ରୀପାଦ ଈଶ୍ୱରପୁରୀଙ୍କର ଚରିତାସ୍ୱାଦନ )

## ଜଗଦଗୁରୁ ଶ୍ରୀଚୈତନ୍ୟଦେବଙ୍କର ଗୁରୁ ଶ୍ରୀପାଦ ଈଶ୍ୱରପୁରୀ :

ଜୟ ମାଧବେନ୍ଦ୍ର ପୁରୀ କୃଷ୍ଣଲୀଳାପୁର ।
ଭକ୍ତିକଳ୍ପତରୁର ତିହେଁ। ପ୍ରଥମ ଅଙ୍କୁର ।।
ଶ୍ରୀଈଶ୍ୱରପୁରୀ ରୂପେ ଅଙ୍କୁର ପୁଷ୍ଟ ହୈଲ ।
ଆପନେ ଚୈତନ୍ୟମାଲୀ ସ୍କନ୍ଧ ଉପଜିଲ ।।

(ଶ୍ରୀଚୈତନ୍ୟଚରିତାମୃତ : ଆଦି-୯ମ ପରି)

ଶ୍ରୀକୃଷ୍ଣଭକ୍ତି ପଥର ସର୍ବାଦି ସୂତ୍ରଧର ଶ୍ରୀପାଦ ମାଧବେନ୍ଦ୍ର ପୁରୀଙ୍କର ମାଧ୍ୟମରେ ଅନାଦିକାଳରୁ ନିହିତ ପରମମାଧୁର୍ଯ୍ୟପୂର୍ଣ୍ଣ ଶ୍ରୀବ୍ରଜଲୀଳାରସର ସ୍ୱରୂପତାର ପୂର୍ଣ୍ଣତର ପରିଣତି ଚିନ୍ମୟ-ଭକ୍ତିକଳ୍ପ ବୃକ୍ଷର ନବାଙ୍କୁରର ଉଦ୍‌ଗମ ହେଲା । ଏହି ଅକ୍ଷୟ ପ୍ରେମାଙ୍କୁର ଶ୍ରୀପାଦ ଈଶ୍ୱରପୁରୀଙ୍କ ମାଧ୍ୟମରେ ପୁଷ୍ଟହୋଇ କଳିଜୀବର ପ୍ରେମଫଳ ପ୍ରଦାନକାରୀ ଶ୍ରୀ ଗୌରସୁନ୍ଦର ପ୍ରେମବୃକ୍ଷ ରୂପେ ରୂପ ପରିଗ୍ରହ କଲେ । ଏହି ପ୍ରେମ ବୃକ୍ଷରୁ ଶ୍ରୀମଦ୍ ନିତ୍ୟାନନ୍ଦ ପ୍ରଭୁ ଓ ଶ୍ରୀ ଅଦ୍ୱୈତପ୍ରଭୁ ଦୁଇସ୍କନ୍ଧ ପ୍ରକାଶ କଲେ ଏବଂ ଏହି ସ୍କନ୍ଧରୁ ଶାଖା-ପ୍ରଶାଖା ଓ ଉପଶାଖା ପ୍ରକାଶ କରି ତ୍ରିଭୁବନ ବ୍ୟାପିତ କଲେ । ଅଦ୍ୟାବଧି ସେହି ଶାଖା-ପ୍ରଶାଖାରୁ ନବ ନବ ଶାଖା-ପ୍ରଶାଖା ପ୍ରକାଶିତ ହୋଇ ମହୀମଣ୍ଡଳରେ ବିଶୁଦ୍ଧ ପ୍ରେମଭକ୍ତି ପ୍ରଚାର ହୋଇ ଆସୁଅଛି । ସର୍ବପ୍ରଥମ ଶ୍ରୀପାଦ ମାଧବେନ୍ଦ୍ରପୁରୀ ପାଦଙ୍କର ମାଧ୍ୟମରେ ବିଶୁଦ୍ଧ ପ୍ରେମଭକ୍ତି ପ୍ରଚାରିତ ହୋଇ-ଥିଲା । ତତ୍‌ପରେ ଶ୍ରୀପାଦ ଈଶ୍ୱରପୁରୀ ଶ୍ରୀପାଦ ମାଧବେନ୍ଦ୍ରପୁରୀପାଦଙ୍କର ଅଭୟ ପଦାରବିନ୍ଦରେ ଆଶ୍ରୟ ଗ୍ରହଣ କରି ପରମ ଆନ୍ତରିକତା ପୂର୍ଣ୍ଣ ଗୁରୁସେବାର ବୈଶିଷ୍ଟ୍ୟରେ ବ୍ରହ୍ମାଦି ଦେବଗଣଙ୍କ ବାଞ୍ଛିତ ସୁଦୁର୍ଲଭ ପ୍ରେମଭକ୍ତି ଧନରେ ଧନୀ ହୋଇଥିଲେ । ସେହି ପ୍ରେମରସର ସୂତ୍ର ଧରି ତ୍ରିଭୁବନାରାଧ୍ୟ ଦ୍ୱିଭୁଜ ମୁରଲୀ-ମନୋହର ଶ୍ୟାମସୁନ୍ଦର ଶ୍ରୀକୃଷ୍ଣ ମହାଭାବ ସ୍ୱରୂପିଣୀ ବୃନ୍ଦାବନେଶ୍ୱରୀ ଶ୍ରୀମତୀ ରାଧାରାଣୀଙ୍କର ଭାବକାନ୍ତି ଅଙ୍ଗୀକାର କରି ନିଜ ପ୍ରେମଲୀଳା ରସମାଧୁରୀ ସ୍ୱ-ଆସ୍ୱାଦନ ମାଧ୍ୟମରେ ଜୀବଜଗତକୁ ଶିକ୍ଷା-ଦାନ ଲାଗି ରସରାଜ ଶ୍ରୀଗୌରାଙ୍ଗ ରୂପରେ ସର୍ବ ଅବତାରର, ସର୍ବଭାବର ଭକ୍ତବୃନ୍ଦଙ୍କ ସମଭିବ୍ୟାହାରରେ ଶ୍ରୀଧାମ ନବଦ୍ୱୀପରେ ଆର୍ବିଭୂତ ହେଲେ ଏବଂ ଶ୍ରୀପାଦ ଈଶ୍ୱର-

ପୁରୀଙ୍କ ଭକ୍ତିର ଐତିହ୍ୟରେ ତାଙ୍କୁ ଗୁରୁରୂପେ ବରଣ କରି ଶ୍ରୀକୃଷ୍ଣନାମ ପ୍ରେମତରଙ୍ଗରେ ନିଜେ ଭାସିଲେ ଓ ତ୍ରିଭୁବନ ଭସାଇଲେ । ଯାହାଙ୍କ ଦର୍ଶନ ଲାଭ ପାଇଁ ମୁନିଋଷିଗଣ ଯୁଗ ଯୁଗ ଧରି କଠୋର ତପସ୍ୟାଚରଣ କରୁଛନ୍ତି, ଯାହାଙ୍କର ମହିମା ସହସ୍ର ବଦନରେ ଅନନ୍ତଦେବ ବର୍ଣ୍ଣନା କରିବାରେ ଅସମର୍ଥ, ସେହି ତ୍ରିଭୁବନର ଏକମାତ୍ର ଆରାଧ୍ୟଧନ ଶ୍ରୀଗୌରସୁନ୍ଦର ତାହାଙ୍କୁ ଗୁରୁରୂପେ ବରଣ କରି ତାହାଙ୍କର ସ୍ତୁତି ନତିପୂର୍ବକ ନିଜ ମୁଖରେ ତଦୀୟ ଅଚିନ୍ତ୍ୟ ମହିମାରାଶି ପ୍ରକାଶ କରିଛନ୍ତି; ସେହି ମହିମାର ଅତ୍ୟୁଜ୍ଜ୍ୱଳତମ ଅକ୍ଷୟ ନିଦର୍ଶନ "ଶ୍ରୀଚୈତନ୍ୟଡ଼ୋବା" ମହାତୀର୍ଥ ସୃଷ୍ଟିବିଳାସର କାହାଣୀ ମଧ୍ୟରେ ପରିସ୍ଫୁଟ ରହିଛି । ଏହା ଅପେକ୍ଷା ଶ୍ରୀପାଦଙ୍କର ମହିମା ପରିଚୟର ଶ୍ରେଷ୍ଠତ୍ୱ ଆଉ କଣ ହୋଇପାରେ ? ଶ୍ରୀମନ୍ମହାପ୍ରଭୁ ଯୁଗେ ଯୁଗେ ଶ୍ରୀପାଦଙ୍କୁ ତାଙ୍କର ଭକ୍ତିର ଐତିହ୍ୟରେ ତାଙ୍କୁ ଗୁରୁରୂପେ ବରଣ କରି ଆସିଛନ୍ତି ଏବଂ ନିଜ ମୁଖରେ ତାହାଙ୍କର ମହିମା କୀର୍ତ୍ତନ କରିଆସୁଛନ୍ତି । ସେଥିପାଇଁ ତାଙ୍କ ପ୍ରେମବିଳାସ ଚରମ ଉତ୍କର୍ଷର ପରମ ମାଧୁର୍ଯ୍ୟପୂର୍ଣ୍ଣ ବୈଶିଷ୍ଟ୍ୟ ।

## ଶ୍ରୀପାଦଙ୍କର ବଂଶ ପରିଚୟ :

ରାଢ଼ୀୟ ବ୍ରାହ୍ମଣ ଶ୍ୟାମସୁନ୍ଦର ଆଚାର୍ଯ୍ୟ ।
କୁମାରହଟ୍ଟବାସୀ ବିପ୍ର ସର୍ବଗୁଣେ ବର୍ଯ୍ୟ ।।
ତାଁର ପୁତ୍ର ଈଶ୍ୱରପୁରୀ ବୁଦ୍ଧ୍ୟେ ବୃହସ୍ପତି ।
ବେଦବେଦାନ୍ତାଦି ଶାସ୍ତ୍ରେ ତାଁର ମତିଗତି ।।
ପରମ ପଣ୍ଡିତ ଈଶ୍ୱର ଛାଡ଼ି ଗୃହବାସ ।
ମାଧବେନ୍ଦ୍ର ଶିଷ୍ୟ ହୈୟା କରିଲ୍ଲ ସନ୍ନ୍ୟାସ ।।

(ପ୍ରେମବିଳାସ–୨୩)

ଜଗଦାଦି ଗୁରୁଙ୍କର ଗୁରୁ ଶ୍ରୀପାଦ ଈଶ୍ୱରପୁରୀ ରାଢ଼ୀୟ ବ୍ରାହ୍ମଣବଂଶରେ ଶୁଭ-ବୈଶାଖ ପୂର୍ଣ୍ଣିମା ତିଥିରେ ଶ୍ରୀକୁମାରହଟ୍ଟଠାରେ ଅଧୁନା ହାଲିସହର ଗ୍ରାମରେ ଆବିର୍ଭୂତ ହୁଅନ୍ତି । ତାଙ୍କ ପିତାଙ୍କ ନାମ ଶ୍ରୀଳ ଶ୍ୟାମସୁନ୍ଦର ଆଚାର୍ଯ୍ୟ । ତାଙ୍କ ବାଲ୍ୟନାମ ଓ ପ୍ରଥମ ଜୀବନର ଲୀଳା କାହାଣୀ ସମ୍ବନ୍ଧରେ ସଠିକ କିଛି ଜଣାଯାଏ ନାହିଁ । ତେବେ ସେ ପ୍ରଥମ ଜୀବନରେ ସଂସ୍କୃତବିଦ୍ୟା ଅଧ୍ୟୟନ କରି ବେଦବେଦାନ୍ତାଦି ଭକ୍ତିଶାସ୍ତ୍ରରେ ଅପରିମେୟ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଏହାର ସାକ୍ଷ୍ୟ ବହନ କରିଛି ତାଙ୍କ ସ୍ୱରଚିତ ଶ୍ରୀକୃଷ୍ଣ ଲୀଳାମୃତ ମହାକାବ୍ୟ ।

ଜଗଦଗୁରୁ ଶ୍ରୀପାଦ ଈଶ୍ୱରପୁରୀ ସର୍ବସ୍ୱ ତ୍ୟାଗକରି ଶ୍ରୀକୃଷ୍ଣ ଭକ୍ତିରସର ଆଦି ସୂତ୍ରଧର ଶ୍ରୀପାଦ ମାଧବେନ୍ଦ୍ର ପୁରୀପାଦଙ୍କର ଶ୍ରୀଚରଣରେ ଆଶ୍ରୟ ଗ୍ରହଣ ପୂର୍ବକ

କାୟମନୋବାକ୍ୟରେ ତାଙ୍କର ପରିଚର୍ଯ୍ୟା କାର୍ଯ୍ୟରେ ବ୍ରତୀ ହୋଇ ତାଙ୍କ ସଙ୍ଗରେ ହିଁ ଅବସ୍ଥାନ କରିବାକୁ ଲାଗିଲେ । ଶ୍ରୀପାଦ ଈଶ୍ୱରପୁରୀ ସ୍ୱୀୟ ଅଭୀଷ୍ଟଦେବ ଶ୍ରୀଲ ମାଧବେନ୍ଦ୍ରଙ୍କର ସେବାକାର୍ଯ୍ୟରେ ଆତ୍ମନିୟୋଗ କରି ଶ୍ରୀକୃଷ୍ଣ ପ୍ରେମାସ୍ୱାଦନ କରିବାକୁ ଲାଗିଲେ । ଶ୍ରୀଲ ମାଧବେନ୍ଦ୍ର ପୁରୀପାଦଙ୍କର ଲୀଳାସମ୍ବରଣର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେବା କରନ୍ତି । ଶ୍ରୀଗୁରୁଦେବ କି ବସ୍ତୁ ? କି ପ୍ରକାରେ ସେବାକଲେ ଶ୍ରୀଗୁରୁଙ୍କର ଅଯାଚିତ କରୁଣା ପ୍ରଭାବରେ ମାୟାମୁଗ୍ଧ ମୂଢ଼ ଜୀବ ମଧ୍ୟ ଦୁରନ୍ତ ମାୟାର ଦୁର୍ଭେଦ୍ୟ ବନ୍ଧନରୁ ମୁକ୍ତ ହୋଇ ସୁଦୁର୍ଲଭ ବିଶୁଦ୍ଧ ଶ୍ରୀକୃଷ୍ଣପ୍ରେମଲାଭ କରି ଶ୍ରୀରାଧାଗୋବିନ୍ଦଙ୍କର ଚିର, ଶାଶ୍ୱତ ସେବାସୁଖଲାଭର ଅଧିକାରୀ ହେବାକୁ ସକ୍ଷମ ହୋଇପାରିବ ଏବଂ ଶ୍ରୀଗୁରୁଦେବଙ୍କର ଅଚିନ୍ତ୍ୟ ଚରମସ୍ଥାନୀୟ ମହିମା କିଞ୍ଚିତ ଉପଲବ୍ଧିଗମ୍ୟ ହୁଏ, ତାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ରଖିଯାଇଛନ୍ତି । ତାଙ୍କର ଏକାନ୍ତ ଆନ୍ତରିକତାପୂର୍ଣ୍ଣ ଶ୍ରୀଗୁରୁ ସେବାର ଉଦାହରଣ ଶ୍ରୀଚୈତନ୍ୟ ଚରିତାମୃତରେ ଶ୍ରୀକବିରାଜ ଗୋସ୍ୱାମୀ ଦେଖାଇଛନ୍ତି-

ଈଶ୍ୱରପୁରୀ କରେନ ଶ୍ରୀପାଦସେବନ ।
ସ୍ୱହସ୍ତେ କରେନ ମଳମୂତ୍ରାଦି ମାର୍ଜନ ।।
ନିରନ୍ତର କୃଷ୍ଣନାମ କରନ ସ୍ମରଣ ।
କୃଷ୍ଣନାମ କୃଷ୍ଣଲୀଳା ଶୁନାୟ ଅନୁକ୍ଷଣ ।।

(ଶ୍ରୀଚୈତନ୍ୟ ଚରିତାମୃତ, ଅନ୍ତ୍ୟ ୮ମ ପରି)

ରେମୁଣାରେ ଶ୍ରୀମାଧବେନ୍ଦ୍ର ପୁରୀପାଦଙ୍କର ଅନ୍ତିମ ଅସୁସ୍ଥାବସ୍ଥାରେ ଶ୍ରୀଈଶ୍ୱର-ପୁରୀ ଏକାଧାରରେ ସ୍ୱହସ୍ତରେ ମଳମୂତ୍ରାଦି ପରିଷ୍କାରାଦି ଗୁହ୍ୟ ସେବାକାର୍ଯ୍ୟ ମାଧ୍ୟମରେ ଦୈହିକ ଓ ମାନସିକ ସୁଖପ୍ରଦାନ କରୁଥିଲେ । ଅପର ଦିଗରେ ଶ୍ରୀମଦ୍ ଭାଗବତାଦି ଭକ୍ତିଶାସ୍ତ୍ର ପାଠ ଓ ସୁମଧୁର ଶ୍ରୀକୃଷ୍ଣ ନାମଗୁଣ କୀର୍ତ୍ତନ ମାଧ୍ୟମରେ ଶ୍ରୀରାଧା ଗୋବିନ୍ଦ-ଙ୍କର ଲୀଳାଗୁଣାଦି ଶୁଣାଇ ବିଶୁଦ୍ଧ ପ୍ରେମାମୃତ ରସାସ୍ୱାଦନର ପରମ ଆନୁକୂଲ୍ୟ ବିଧାନ କରୁଥିଲେ । ତାଙ୍କର ଏପ୍ରକାର ଏକନିଷ୍ଠ ଗୁରୁସେବାରେ ଶ୍ରୀପାଦ ମାଧବେନ୍ଦ୍ର-ପୁରୀ ଅନ୍ତରରେ ଅତ୍ୟନ୍ତ ଶ୍ରୀକୃଷ୍ଣ ପ୍ରେମସୁଖାନୁଭବ କରି ଆଶୀର୍ବାଦ କରନ୍ତି ।

ତୁଷ୍ଟ ହୈୟା ପୁରୀ ତାରେ କୈଲ ଆଲିଙ୍ଗନ ।
ବରଦିଲ କୃଷ୍ଣେ ତୋମାର ହଉକ ପ୍ରେମଧନ ।।
ସେଇ ହୈତେ ଈଶ୍ୱରପୁରୀ ପ୍ରେମର ସାଗର ।

(ଶ୍ରୀଚୈତନ୍ୟ ଚରିତାମୃତ, ଅନ୍ତ୍ୟ-୮ମ ପରି.)

ସର୍ବତୋଭାବେ ଶ୍ରୀପାଦ ଗୁରୁଦେବଙ୍କୁ ଏପ୍ରକାର ସୁଖ ପ୍ରଦାନ କରିଥିଲେ ଯେ, ଶ୍ରୀପାଦ ଅପ୍ରକଟ ପୂର୍ବେ ପରମ ଆନ୍ତରିକତା ସହିତ ଅକପଟରେ ନିଜର ସର୍ବଶକ୍ତି

ଶିଷ୍ୟ ଈଶ୍ୱରପୁରୀଙ୍କୁ ଅର୍ପଣ କରିଯାଆନ୍ତି; ଅର୍ଥାତ ନିଜର ବହୁକଷ୍ଟର ସାଧନାର୍ଜିତ ସାଧ୍ୟ ଶ୍ରୀକୃଷ୍ଣପ୍ରେମଫଳ ଅକାତରରେ ନିଃଶେଷ ସମର୍ପଣ କରିଗଲେ । ଯା'ର ଫଳଶ୍ରୁତି ଶ୍ରୀଗୁରୁକୃପା ଶକ୍ତିର ଅତ୍ୟାଶ୍ଚର୍ଯ୍ୟ ପ୍ରଭାବ ସଞ୍ଚାରିତ ହେଲା ଶିଷ୍ୟ ଈଶ୍ୱରପୁରୀଙ୍କ ଅନ୍ତରରେ । ଆଜି ଶ୍ରୀପାଦ ଈଶ୍ୱରପୁରୀ ବହୁକାଳର ଶ୍ରୀଗୁରୁଲବ୍ଧ ଓ ସଂରକ୍ଷିତ ଅପରିମେୟ ସୁବିମଳ ଶ୍ରୀକୃଷ୍ଣ ପ୍ରେମଭକ୍ତି ଭଣ୍ଡାରର ଏକମାତ୍ର ସର୍ବମୟ ଅଧିକାରୀ ।

ଯତ ପ୍ରେମ ମାଧବେନ୍ଦ୍ର ପୁରୀର ଶରୀରେ ।
ସନ୍ତୋଷେ ଦିଲେନ ସବ ଈଶ୍ୱରପୁରୀରେ ।।

(ଶ୍ରୀଚୈତନ୍ୟ ଭାଗବତ ଆଦି ୯ମ ଅଧ୍ୟାୟ)

ସେଇ ହୈତେ ଈଶ୍ୱରପୁରୀ ପ୍ରେମେର ସାଗର ।
ରାମଚନ୍ଦ୍ର ପୁରୀ ହୈଲ ସର୍ବନିନ୍ଦାକର ।।
ମହଦନୁଗ୍ରହ ନିଗ୍ରହେର ସାକ୍ଷୀ ଦୁଇଜନ ।
ଏଇ ଦୁଇଦ୍ୱାରେ ଶିଖାଇଲା ଜଗଜନ ।।

(ଶ୍ରୀଚୈତନ୍ୟ ଚରିତାମୃତ, ଅନ୍ତ୍ୟ ୮ମ ପରି.)

ଶ୍ରୀପାଦ ମାଧବେନ୍ଦ୍ରପୁରୀ ଶିଷ୍ୟ ଈଶ୍ୱରଙ୍କୁ ସର୍ବଶକ୍ତି ସମର୍ପଣ କରି 'ଅୟିଦୀନ-ଦୟାର୍ଦ୍ରନାଥ ହେ'....ଇତ୍ୟାଦି ଚିରଅଭ୍ୟସ୍ତ ଶ୍ଳୋକପାଠ କରୁ କରୁ ନିତ୍ୟଲୀଳାରେ ପ୍ରବିଷ୍ଟ ହୁଅନ୍ତି । ତତ୍ପରେ ଶ୍ରୀଗୁରୁକୃପାଲବ୍ଧ କୃଷ୍ଣପ୍ରେମରେ ପ୍ରମତ୍ତ ଓ ଶ୍ରୀଗୁରୁବିରହର ବିଚ୍ଛେଦ ଜନିତ ବ୍ୟଥାରେ ବିଧୁର ହୋଇପଡ଼ନ୍ତି । ତାପରେ ଆହାର ନିଦ୍ରାହୀନତା କାରଣରୁ ଦେହ ଶୀର୍ଣ୍ଣପ୍ରାୟ । ପରିଧାନରେ ଜୀର୍ଣ୍ଣମଳିନ ବସନ, ଦିବାନିଶି ବିଗ୍ରହବିହୀନ ହୋଇ ଓ ବାହ୍ୟଜ୍ଞାନ ବିସ୍ମୃତ ହୋଇ ଶ୍ରୀକୃଷ୍ଣ ପ୍ରେମୋନ୍ମତ୍ତତାରେ ଯଥାତଥା ପର୍ଯ୍ୟଟନ କରିବାକୁ ଲାଗିଲେ ।

ପାଇୟା ଗୁରୁର ପ୍ରେମ କୃଷ୍ଣେର ପ୍ରସାଦେ ।
ଭ୍ରମଣେ ଈଶ୍ୱରପୁରୀ ଅତି ନିର୍ବିରୋଧେ ।।

(ଶ୍ରୀଚୈତନ୍ୟ ଭାଗବତ, ଆଦିଖଣ୍ଡ ୯ମ ଅଧ୍ୟାୟ)

ତା'ପରେ ଶ୍ରୀଅଦ୍ୱୈତ ପ୍ରଭୁଙ୍କ ସଙ୍ଗେ ମିଳନ ପାଇଁ ଶାନ୍ତିପୁରରେ ଉପସ୍ଥିତ ହେଲେ ଶ୍ରୀପାଦ ଈଶ୍ୱରପୁରୀ । ସେତେବେଳେ ଶ୍ରୀ ଅଦ୍ୱୈତପ୍ରଭୁ ଭକ୍ତଦୁଃଖ ବିନାଶ ଲାଗି ଶ୍ରୀ ଈଶ୍ୱରପୁରୀ ପାଦଙ୍କ ସମୀପରେ ନିଜର ବିଦ୍ୟାଗର୍ବ ଚୂର୍ଣ୍ଣକରି ଶ୍ରୀପାଦଙ୍କର ମହିମା ଜଗତରେ ପ୍ରଚାର କଲେ । ଶାନ୍ତିପୁରରୁ ଶ୍ରୀପାଦ ଶ୍ରୀନବଦ୍ୱୀପଧାମକୁ ଆଗମନ କଲେ ।

ହେନକାଲେ ନବଦ୍ୱୀପେ ଶ୍ରୀ ଈଶ୍ୱରପୁରୀ ।
ଆଇଲେନ ଅତି ଅଲକ୍ଷିତ ବେଶ ଧରି ।।

ତାଙ୍କର ବେଶଭୂଷା ଦେଖି ପ୍ରଥମେ ତାଙ୍କୁ କେହି ଚିହ୍ନିପାରି ନଥିଲେ । କିନ୍ତୁ ତାଙ୍କର ସାଧନାଦୀପ୍ତ ତେଜ ଦେଖି ଜାଣିପାରନ୍ତି ଯେ, ସେ ଜଣେ ମହାପ୍ରେମିକ ବୈଷ୍ଣବ ସନ୍ନ୍ୟାସୀ ।

ବୈଷ୍ଣବେର ତେଜ କଭୁ ବୈଷ୍ଣବେର ନା ଲୁକାୟ ।
ପୁନଃ ପୁନଃ ଅଦ୍ୱୈତ ତାହାର ପାନେ ଚାୟ ।।
ଅଦ୍ୱୈତ ବିଲନ ବାପ ତୁମି କୋନ ଜନ ।
ବୈଷ୍ଣବ-ସନ୍ନ୍ୟାସୀ ତୁମି ହେନ ଲୟ ମନ ।।
ବଲେନ ଈଶ୍ୱରପୁରୀ ଆମି ଶୂଦ୍ରାଧମ ।
ଦେଖିବାରେ ଆଇଲମ ତୋମାର ଚରଣ ।।

(ଶ୍ରୀ ଚୈତନ୍ୟ ଭାଗବତ : ଆଦିଖଣ୍ଡ ୯ମ ଅଧ୍ୟାୟ)

ଶ୍ରୀ ଅଦ୍ୱୈତ ପ୍ରଶ୍ନ କଲେ—ତୁମେ କିଏ ? ମନେହୁଏ କୌଣସି ବୈଷ୍ଣବ ସନ୍ନ୍ୟାସୀ ! ଶ୍ରୀପାଦ ସଦୈନ୍ୟରେ କହିଲେ—"ମୁଁ ଜଣେ ଶୂଦ୍ରାଧମ । ଆପଣଙ୍କ ଶ୍ରୀଚରଣ ଦର୍ଶନ ଲାଗି ଏଠାକୁ ଆସିଛି । ଏ କଥା ଶୁଣି ଶ୍ରୀ ଅଦ୍ୱୈତାଚାର୍ଯ୍ୟ ଶ୍ରୀଳ ମୁକୁନ୍ଦଙ୍କୁ କହିଲେ ଶ୍ରୀକୃଷ୍ଣରସବିଷୟକ ଲୀଳାପଦ କୀର୍ତ୍ତନ କରିବାକୁ । ଶ୍ରୀ ମୁକୁନ୍ଦଙ୍କର କଣ୍ଠବିନିଃସୃତ ନାମଗାନ ଶ୍ରବଣ ମାତ୍ରେ ଶ୍ରୀପାଦ ଛିନ୍ନତରୁନ୍ୟାୟ ପ୍ରେମାବେଶରେ ପୃଥିବୀରେ ଲୋଟିପଡ଼ିଲେ । ସେତେବେଳେ ତାଙ୍କ ଶରୀରରେ ଅଷ୍ଟସାତ୍ତ୍ୱିକବିକାର ବୈଭବର ପ୍ରକାଶ ହେଉଥାଏ ଏବଂ ନୟନ ଯୁଗଳରୁ ଅବିଶ୍ରାନ୍ତ ପ୍ରେମବାରି-ବନ୍ୟାରେ "ଶାନ୍ତିପୁର ଡୁବୁ ଡୁବୁ ନଦେ ଭେସେ ଯାୟ"—ଏ ପ୍ରକାର ଅତ୍ୟାଶ୍ଚର୍ଯ୍ୟ ପ୍ରେମବିକାର ଦର୍ଶନ କରି ପ୍ରେମୋନ୍ମତ୍ତ ଶାନ୍ତିପୁରନାଥ ତାଙ୍କୁ କୋଳକୁ ଟୋକିନେଇ ଆଲିଙ୍ଗନ କରିବାକୁ ଲାଗିଲେ । ଉଭୟଙ୍କର ପ୍ରବଳ ହୁଙ୍କାର ଓ ଗର୍ଜନରେ ଜଗତ୍ କମ୍ପିତ ଏବଂ ପରସ୍ପରର ପ୍ରେମନିଃସୃତ ନୟନ ଜଳରେ ପରସ୍ପର ସିଞ୍ଚିତ ହେବାକୁ ଲାଗିଲେ । ସେମାନଙ୍କ ନୟନ ଜଳରେ ଜଗତ୍ ଆଜି ସିକ୍ତ ଓ ଧନ୍ୟ । ଉଭୟଙ୍କର ଅକୈତବ-କୃଷ୍ଣ ପ୍ରେମଲାଭର ଉତ୍ସସ୍ଥଳ ଶ୍ରୀପାଦ ମାଧବେନ୍ଦ୍ର ପୁରୀ ଏବଂ ଉଭୟଙ୍କ ସମ୍ପର୍କ ସତୀର୍ଥ ଗୁରୁଭ୍ରାତା । ଉଭୟଙ୍କର କୃଷ୍ଣ ପ୍ରେମୋନ୍ମତ୍ତତା ଏକ ପ୍ରକାରର ହେବ, ଏଥିରେ ଆଶ୍ଚର୍ଯ୍ୟ କଣ ? ଯେଉଁ ସୌଭାଗ୍ୟବାନ ପୁରୁଷଗଣ ଜଗଦାଦିଗୁରୁର ଗୁରୁ ଶ୍ରୀପାଦ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀଙ୍କର ଆନୁଗତ୍ୟ ଓ କୃପାଲାଭ କରିଛନ୍ତି, ସେମାନେ କେବଳ ଏ ପ୍ରକାର ଅପୂର୍ବ ଶ୍ରୀକୃଷ୍ଣ ପ୍ରେମର ଉତ୍ତରାଧିକାରୀର ଯୋଗ୍ୟତା ଲାଭରେ ସକ୍ଷମ ହୋଇପାରନ୍ତି । ସେଥିପାଇଁ ଶ୍ରୀମନ୍ମହାପ୍ରଭୁ କହିଛନ୍ତି—

କିନ୍ତୁ ତୋମାର ପ୍ରେମ ଦେଖି ମନେ ଅନୁମାନି ।
ମାଧବେନ୍ଦ୍ରପୁରୀର ସମ୍ବନ୍ଧ ଧର ଜାନି ।।
କୃଷ୍ଣପ୍ରେମା ତାଁହା ଯାହାଁ ତାଁହାର ସମ୍ବନ୍ଧ ।
ତାହା ବିନା ଏଇ ପ୍ରେମାର କାହାଁ ନାହିଁ ଗନ୍ଧ ।।

(ଶ୍ରୀ ଚୈତନ୍ୟ ଚରିତାମୃତ : ମଧ୍ୟ–୧୭ଶ ପରି)

## ଶ୍ରୀ ମନ୍ମହାପ୍ରଭୁଙ୍କ ସହ ଶ୍ରୀପାଦଙ୍କର ପ୍ରଥମ ମିଳନ–

ଏଇମତ ଈଶ୍ୱରପୁରୀ ନବଦ୍ୱୀପ ପୁରେ ।
ଅଲକ୍ଷିତେ ବୁଲେନ ଚିନିତେ କେହ ନାରେ ।।

ଏହି ପ୍ରକାରେ ନବଦ୍ୱୀପରେ ଦିନେ ମହାପ୍ରଭୁଙ୍କ ସହିତ ପଥ ମଧ୍ୟରେ ସାକ୍ଷାତ ହୁଏ । ସେତେବେଳେ ମହାପ୍ରଭୁ ଶିଷ୍ୟ ସମଭିବ୍ୟାହାରରେ ଚତୁଷ୍ପାଠୀରୁ ଗୃହାଭିମୁଖେ ଆଗମନ କରୁଥିଲେ ।

ପଥେ ଦେଖା ହୈଲ ଈଶ୍ୱରପୁରୀ ସନେ ।
ଭୃତ୍ୟ ଦେଖି ପ୍ରଭୁ ନମସ୍କରିଲ୍ଲ ଆପନେ ।।

(ଶ୍ରୀ ଚୈତନ୍ୟ ଭାଗବତ . ଆଦି–୯ମ ଅଧ୍ୟାୟ)

ଅନାଦିକାଳରୁ ଭୃତ୍ୟ ହୋଇ ଆସିଛନ୍ତି ଏବଂ ଯାହାଙ୍କର ଏକାନ୍ତ ଭୃତ୍ୟତ୍ୱର ଆକର୍ଷଣରେ ଯୁଗେ ଯୁଗେ ପ୍ରଭୁ ଯାହାଙ୍କୁ ଗୁରୁ ରୂପେ ବରଣ କରି ତାହାଙ୍କର ଭୃତ୍ୟତ୍ୱର ସ୍ୱୀକୃତି ନିଜ ମୁଖରେ ପ୍ରକାଶ କରି ଆସିଛନ୍ତି, ସେହି ଚିର ପରିଚିତ ଏକାନ୍ତ ଅନୁରାଗୀ ପ୍ରେମିକ ଭକ୍ତ ଚୂଡ଼ାମଣି ଶ୍ରୀପାଦ ଈଶ୍ୱରପୁରୀଙ୍କୁ ଦର୍ଶନ କରିବା ମାତ୍ରେ ପ୍ରଚଣ୍ଡ ଗର୍ବିତ ପ୍ରଭୁ ଅତୀବ ଅସ୍ୱାଭାବିକ ନମ୍ରଭାବରେ ଶ୍ରୀପାଦଙ୍କର ପଦାରବିନ୍ଦରେ ପ୍ରଣିପାତ କଲେ । ଶ୍ରୀପାଦ ପ୍ରଭୁଙ୍କର ଅନିର୍ବଚନୀୟ ଅଲୌକିକ ଭୁବନମୋହନ ରୂପରାଶିର ମାଧୁର୍ଯ୍ୟରେ ବିମୋହିତ ହୋଇ ପଡ଼ନ୍ତି । କ୍ଷଣକାଳ ପରେ ସାନନ୍ଦରେ ଶ୍ରୀପାଦ ସସ୍ନେହରେ ଜିଜ୍ଞାସା କଲେ–

ଜିଜ୍ଞାସେନ କି ନାମ ତୋମାର ବିପ୍ରବର ।
କି ପୁଁଥି ପଡ଼ାଓ ପଡ଼ କୋନ ସ୍ଥାନେ ଘର ।।

( ଶ୍ରୀଚୈତନ୍ୟ ଭାଗବତ : ଆଦି ୯ମ ଅଧ୍ୟାୟ)

ଏହିଭାବେ ପ୍ରଭୁଙ୍କର ପରିଚୟ ଜିଜ୍ଞାସା କରନ୍ତି ଶ୍ରୀପାଦ । ଶିଷ୍ୟଗଣ ମନେ ମନେ ମନେ ଚିନ୍ତା କରିବାକୁ ଲାଗିଲେ–"ସର୍ବଜନବିଦିତ ଭୁବନବିଜୟୀ ନିମାଇ

ପଣ୍ଡିତଙ୍କୁ ଏହି ସନ୍ନ୍ୟାସୀ ଚିହ୍ନିପାରୁ ନାହାନ୍ତି ? ପରେ ପ୍ରସଙ୍ଗକ୍ରମେ ପ୍ରଭୁଙ୍କର 'ନିମାଇଁ ପଣ୍ଡିତ' ନାମ ଶୁଣି "ତୁମେ ସେଇ ?"—ଏହା କହି ଶ୍ରୀପାଦ ଅତୀବ ହୃଷ୍ଟ ହେଲେ । ପରେ ଶ୍ରୀମହାପ୍ରଭୁ ଶ୍ରୀପାଦଙ୍କୁ ନିମନ୍ତ୍ରଣ ଗ୍ରହଣର ଅନୁରୋଧ କରି ମହା-ସମାରୋହରେ ଯଥୋଚିତ ପରିଚର୍ଯ୍ୟା କଲେ । ସେଠାରୁ ଶ୍ରୀପାଦ କିଛିଦିନ ନବଦ୍ୱୀପଧାମସ୍ଥ ଶ୍ରୀଳ ଗୋପୀନାଥ ଆଚାର୍ଯ୍ୟଙ୍କ ଗୃହରେ ଅବସ୍ଥାନ କରିବାକୁ ଲାଗିଲେ । ଶ୍ରୀପାଦଙ୍କର ପ୍ରେମର ବୈଭବ ଦେଖି ପ୍ରେମିକ ଭକ୍ତଗଣ ତାଙ୍କୁ ଦର୍ଶନ କରିବା ପାଇଁ ଆଚାର୍ଯ୍ୟ ଭବନକୁ ଆସିବାକୁ ଲାଗିଲେ । ଶ୍ରୀଗୋପୀନାଥାଚାର୍ଯ୍ୟଙ୍କର ଗୃହରେ ଅବସ୍ଥାନ କାଳରେ "ଶ୍ରୀକୃଷ୍ଣଲୀଳାମୃତ" ମହାକାବ୍ୟ ରଚନା କରି ଶ୍ରୀ ଗଦାଧର ପଣ୍ଡିତଙ୍କ ମାଧ୍ୟମରେ ପ୍ରତ୍ୟହ ପାଠ କରାଇଲେ । ଏଣେ ଶ୍ରୀମହାପ୍ରଭୁ ମଧ୍ୟ ପ୍ରତିଦିନର ଅଧ୍ୟାପନାଦି କାର୍ଯ୍ୟର ଶେଷରେ ସନ୍ଧ୍ୟା ସମୟରେ ଶ୍ରୀପାଦଙ୍କୁ ନମସ୍କାର କରିବାଲାଗି ଆଚାର୍ଯ୍ୟ ଭବନକୁ ଆସିବାକୁ ଲାଗିଲେ ।

ପ୍ରଭୁ ଦେଖି ଈଶ୍ୱରପୁରୀହରଷିତ ।
ପ୍ରଭୁ ହେନ ନା ଜାନେନ ତବୁ ବଡ଼ ପ୍ରୀତ ।।
( ଶ୍ରୀଚୈତନ୍ୟ ଭାଗବତ : ଆଦି-୯ମ ଅଧ୍ୟାୟ)

ପ୍ରଭୁ ପ୍ରତି ସନ୍ଧ୍ୟାରେ ଆସିବା ହେତୁ ଶ୍ରୀପାଦ ଅନ୍ତରରେ ଅତ୍ୟନ୍ତ ଆନନ୍ଦିତ ହେବାକୁ ଲାଗିଲେ । ତାପରେ ଶ୍ରୀପାଦ ଦିନେ ମହାପ୍ରଭୁଙ୍କୁ ସହାସ୍ୟ ବଦନରେ କହିଲେ, "ଶୁଣିଛି, ତୁମେ ଭୁବନ ବିଜୟୀ ସର୍ବଶ୍ରେଷ୍ଠ ପଣ୍ଡିତ । ମୁଁ 'ଶ୍ରୀକୃଷ୍ଣଲୀଳାମୃତ' ନାମକ ଖଣ୍ଡିଏ ଗ୍ରନ୍ଥ ରଚନା କରିଛି । ଏହି ଗ୍ରନ୍ଥରେ ଯଦି ଭ୍ରମ-ପ୍ରମାଦମୂଳକ କୌଣସି ତ୍ରୁଟି ଥାଏ ତାହା ତୁମେ ଯଥୋପଯୁକ୍ତ ବିଚାର କରି ସଂଶୋଧନ କରିଦେଲେ ମୁଁ ଅତ୍ୟନ୍ତ ସୁଖୀ ହେବି ।"

ସକଳ ବଲିବା କଥା ଥାକେ କୋନ ଦୋଷ ।
ଇହାତେ ଆମାର ବଡ଼ ପରମ ସନ୍ତୋଷ ।।
(ଶ୍ରୀଚୈତନ୍ୟ ଭାଗବତ : ଆଦି ୯ମ ଅଧ୍ୟାୟ)

ଶ୍ରୀପାଦଙ୍କ ବାକ୍ୟରେ ମହାପ୍ରଭୁ ନମ୍ରଭାବେ ସହାସ୍ୟ ବଦନରେ କହିଲେ—

ପ୍ରଭୁ ବଲେ ଭକ୍ତବାକ୍ୟ କୃଷ୍ଣେର ବର୍ଣ୍ଣନ ।
ଇହାତେ ଦୋଷ ଦେଖେ ସେଇ ପାପୀ ଜନ ।।
ଭକ୍ତେର କବିତ୍ୱ ଯେତେ ମତେ କେନେ ନୟ ।
ସର୍ବଥା କୃଷ୍ଣେର ପ୍ରୀତ ତାହାତେ ନିଶ୍ଚୟ ।।
(ଶ୍ରୀଚୈତନ୍ୟ ଭାଗବତ, ଆଦି ୯ମ ଅଧ୍ୟାୟ)

ଶ୍ରୀପ୍ରଭୁ କହିଲେ–ଭକ୍ତଙ୍କର ଅନୁରାଗପୂର୍ଣ୍ଣ ବର୍ଣ୍ଣନ ହିଁ ଶ୍ରୀଭଗବଦ୍ ବର୍ଣ୍ଣନ । ଭଗବାନ ଭକ୍ତର ହୃଦୟରେ ସଦା ବିରାଜ କରନ୍ତି । ତୁମ ନ୍ୟାୟ ପ୍ରେମିକଙ୍କର ପ୍ରେମର ବର୍ଣ୍ଣନାରେ ଦୋଷାରୋପ କରିବା ଶକ୍ତି ଧରନ୍ତି ଏପ୍ରକାର କିଏ ଅଛନ୍ତି ? ତୁମ ହୃଦୟରେ ଶ୍ରୀକୃଷ୍ଣ ଅଧିଷ୍ଠାନ କରନ୍ତି ଏବଂ ପ୍ରେମରସ ଆସ୍ୱାଦନ କରନ୍ତି । ଭାଷାରେ ଅପୂର୍ବ ବର୍ଣ୍ଣନ ପ୍ରକାଶ କରି ତୁମ ମାଧ୍ୟମରେ ତାହାଙ୍କର ଅପୂର୍ବ ପ୍ରେମଲୀଳା ମାଧୁର୍ଯ୍ୟ ପ୍ରକାଶ କରିଥାନ୍ତି । ଶ୍ରୀମହାପ୍ରଭୁଙ୍କ କଥା ଶୁଣି ଶ୍ରୀପାଦ ପୁଲକିତ ହୋଇ କହିବାକୁ ଲାଗିଲେ–ଯଦି କେଉଁଠି ଦୋଷଥାଏ, ତାହା ତୁମେ କେବଳ ମୋ ଅନୁରୋଧରେ ଯଥାଯଥ ଭାବେ ବିଚାର କରି ଅବଶ୍ୟ କହିବ । ତହିଁରେ ତୁମର କୌଣସି ଦୋଷ ହେବ ନାହିଁ; ବରଂ ମୁଁ ଅତ୍ୟନ୍ତ ଖୁସି ହେବି ।

ଏ ପ୍ରକାର କହିବା ପରେ ମହାପ୍ରଭୁ ପ୍ରତ୍ୟହ ଦୁଇ-ଚାରି ଦଣ୍ଡ ବସି ଗ୍ରନ୍ଥବିଚାର କରିବାକୁ ଲାଗିଲେ ନିଜର ବିଦ୍ୟାଗର୍ବ ସମ୍ବରଣର ସମୟ ବୁଝିକରି ।

ଏକଦିନ ପ୍ରଭୁ ତାର କବିତ୍ୱ ଶୁନିୟା ।
ହାସି ଦୂଷିଲେନ ଧାତୁ ଲାଗେ ନା ବଲିୟା ।।
(ଶ୍ରୀ ଚୈତନ୍ୟ ଭାଗବତ : ଆଦ ୯ମ ଅଧ୍ୟାୟ)

ଦିନେ ପ୍ରଭୁ "ଧାତୁ ଠିକ ଲାଗୁନାହିଁ" ବୋଲି ଦୋଷାରୋପ କଲେ । ଯେଉଁ ଧାତୁ ଆତ୍ମନେପଦୀ ବୋଲି ଶ୍ରୀପାଦ ପ୍ରୟୋଗ କରିଅଛନ୍ତି, ତାହା ପରସ୍ମୈପଦୀ ବୋଲି ପ୍ରଭୁ ଉଲ୍ଲେଖ କରି ସେଦିନ ଗୃହକୁ ଚାଲିଗଲେ । ସର୍ବଶାସ୍ତ୍ରରେ ସୁପଣ୍ଡିତ ଶ୍ରୀପାଦ ପୁନଃ ପୁନଃ ପୁଙ୍ଖାନୁପୁଙ୍ଖ ବିଚାର କରି ଦେଖିଲେ । ପରଦିନ ସନ୍ଧ୍ୟା ସମୟରେ ପ୍ରଭୁ ଆସିଲେ, ସହାସ୍ୟ ବଦନରେ ଶ୍ରୀପାଦ କହିଲେ–

ଯେ ଧାତୁ ପରସ୍ମୈପଦୀ ବଲି ଗେଲା ତୁମି ।
ତାହା ଏଇ ସାଧିଲ ଆତ୍ମନେପଦୀ ଆମି ।।
(ଶ୍ରୀଚୈତନ୍ୟ ଭାଗବତ : ଆଦ ୯ମ ଅଧ୍ୟାୟ)

ଶ୍ରୀପାଦଙ୍କର ଅସାଧାରଣ ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟାରେ ଶ୍ରୀମନ୍ମହାପ୍ରଭୁ ଅତ୍ୟନ୍ତ ଆନନ୍ଦିତ ହେଲେ । କାରଣ ପ୍ରଭୁ ସର୍ବଦା ନିଜ ଭୃତ୍ୟର ବିଜୟ ବର୍ଦ୍ଧନ କରିଥାନ୍ତି ।

ସର୍ବକାଲେ ପ୍ରଭୁ ବାଡ଼ାୟେନ ଭୃତ୍ୟଜୟ ।
ଏ ତାର ସ୍ୱଭାବ ସକଲ ବେଦେ କୟ ।।
(ଶ୍ରୀଚୈତନ୍ୟ ଭାଗବତ : ଆଦି ୯ମ ଅଧ୍ୟାୟ)

ତ୍ରିଭୁବନବିଜୟୀ ମହାପ୍ରଭୁ ନିଜ ଭକ୍ତର ବିଜୟବର୍ଦ୍ଧନ କରି ଭକ୍ତ ମାଧ୍ୟମରେ ନିଜର ପ୍ରଚଣ୍ଡ ବିଦ୍ୟାଗର୍ବ, ଯେଉଁ ଗର୍ବ ସର୍ବଗର୍ବହାରୀଙ୍କ ର ତାହା ଖର୍ବ କରିବାର ତ୍ରିଭୁବନରେ କେହି ସମର୍ଥ ନୁହନ୍ତି, ତାହା ଶ୍ରୀପାଦଙ୍କର ପ୍ରବଳ ପାଣ୍ଡିତ୍ୟ ନିକଟରେ ସମ୍ବରଣ କରିବା ଅଭିପ୍ରାୟରେ ଏପ୍ରକାର ଅସ୍ୱାଭାବିକ ଭଙ୍ଗୀ ପ୍ରକାଶ କଲେ ।

ଏ ପ୍ରକାରେ ଶ୍ରୀପାଦ କିଛିଦିନ ମହାପ୍ରଭୁଙ୍କ ସହିତ ବିଦ୍ୟାବିଳାସ ଉତ୍ସରେ ସେଠାରେ ଅବସ୍ଥାନ କରିବାକୁ ଲାଗିଲେ ।

ଭକ୍ତିରସେ ଚଞ୍ଚଳ ଏକତ୍ର ନହେ ସ୍ଥିତି ।
ପର୍ଯ୍ୟଟନେ ଚଳିଲେନ ପବିତ୍ର କରି କ୍ଷିତି ।।

(ଶ୍ରୀଚୈତନ୍ୟ ଭାଗବତ ଆଦି ୯ମ ଅଧ୍ୟାୟ)

ଏ ପ୍ରକାରେ ଭକ୍ତିରସରେ ଚଞ୍ଚଳ ଶ୍ରୀପାଦ ସେଠାରେ କିଛିଦିନ ଅବସ୍ଥାନ କରି ପୁନଃ ପର୍ଯ୍ୟଟନରେ ବହିର୍ଗତ ହେଲେ । ତାଙ୍କର ଶ୍ରୀଚରଣ ସ୍ପର୍ଶରେ ପୃଥିବୀ ଧନ୍ୟ ହେଲା । ଯେଉଁ ପୃଥିବୀ ପାପୀ ତାପୀ ନିନ୍ଦକାଦି ପରଶରେ ଅପବିତ୍ର ହୋଇଥିଲା । କତିପୟ ଦିବସ ବିଦ୍ୟାବିଳାସ ମାଧ୍ୟମରେ ମହାପ୍ରଭୁ ଓ ଶ୍ରୀପାଦଙ୍କ ମଧ୍ୟରେ ସେହି ଅନାଦିକାଳର ନିତ୍ୟ ସମ୍ପର୍କର ଆନ୍ତରିକ ନିଗୂଢ଼ ବନ୍ଧନ ଉଭୟ ଉଭୟଙ୍କୁ ନିଜର କରି ରଖିବାର ଅଦମ୍ୟ ବ୍ୟାକୁଳତା ବ୍ୟଥିତ କରିବାକୁ ଲାଗିଲା ।

## ଶ୍ରୀଗୟାଧାମରେ ମହାପ୍ରଭୁ ଶ୍ରୀପୁରୀପାଦଙ୍କ ସହ ମିଳନ ଓ ଦୀକ୍ଷାଗ୍ରହଣ

ସଂକୀର୍ତ୍ତନ କରୁ କରୁ ଏକଦା ମହାପ୍ରଭୁ ପିତୃପିଣ୍ଡଦାନ ଉଦ୍ଦେଶ୍ୟରେ ଯିବାର ସଂକଳ୍ପ କଲେ । ପରେ ମାତାଙ୍କ ଆଦେଶରେ ଶ୍ରୀଗୟାଧାମ ଯାଇ ପିତୃପିଣ୍ଡଦାନ କାର୍ଯ୍ୟ ଆରମ୍ଭ କଲେ । ସେଠାରେ ବିପ୍ରଗଣଙ୍କ ମୁଖରେ ଶ୍ରୀଗୟା ମାହାତ୍ମ୍ୟ ଶ୍ରବଣ କରି ପ୍ରେମାବିଷ୍ଟ ହୋଇପଡ଼ିଲେ ଏବଂ ସେହି ଅବସ୍ଥାରେ ପିତୃ ପିଣ୍ଡଦାନ କାର୍ଯ୍ୟରେ ବ୍ୟାପୃତ ଅଛନ୍ତି, ଏପରି ସମୟରେ ଶ୍ରୀପାଦଙ୍କ ସହିତ ସାକ୍ଷାତ ହୁଏ । ପ୍ରେମାବିଷ୍ଟ ଚିତ୍ତରେ ତାହାଙ୍କ ଶ୍ରୀଚରଣରେ ଲୋଟିପଡ଼ିଲେ । ଶ୍ରୀପାଦ ମହାପ୍ରଭୁଙ୍କୁ ଦର୍ଶନକରି ପରମାନନ୍ଦ ଅନୁଭବ କଲେ । ତତ୍ପରେ କୋଳକୁ ଟୋକିନେଇ ପ୍ରେମାଲିଙ୍ଗନ କରୁ କରୁ ଉଭୟଙ୍କ ଦେହ ଅଶ୍ରୁସିକ୍ତ ହେଲା । ମହାପ୍ରଭୁ ନିଜର ଦୀନତା ପ୍ରକାଶକରି ଶ୍ରୀପାଦଙ୍କର ମହିମା କୀର୍ତ୍ତନ କରିବାକୁ ଲାଗିଲେ ।

ପ୍ରଭୁ ବଲେ ଗୟାଯାତ୍ରା ସଫଲ ଆମର ।
ଯତକ୍ଷଣେ ଦେଖିଲାଙ୍ ଚରଣ ତୋମାର ।।

(ଶ୍ରୀ ଚୈ. ଭା. ଆଦି–୯ମ ଅଧ୍ୟାୟ)

ସର୍ବଶେଷରେ ପୁଣି କହିଲେ–

ଅତଏବ ତୀର୍ଥ ନହେ ତୋମାର ସମାନ ।
ତୀର୍ଥେର ପରମ ତୁମି ମଙ୍ଗଳ ପ୍ରଧାନ ।।
(ଶ୍ରୀ ଚୈ. ଭ. –ଆଦି–୯ମ ଅଧ୍ୟାୟ)

ଶ୍ରୀଗୟାଧାମରେ ପିଣ୍ଡଦାନ ମାଧ୍ୟମରେ ପିତୃପୁରୁଷଗଣଙ୍କର ବନ୍ଧନ ବିମୋଚନରୁ ଶ୍ରୀଲଗିବିଷ୍ଣୁ ପାଦପଦ୍ମରେ ଉପନୀତ ହୋଇ ତୀର୍ଥ-ମହାତ୍ମ୍ୟ ସହିତ ନିଜର ଅଚିନ୍ତ୍ୟ ମହିମାର ତୁଳନା ହୋଇ ନ ପାରେ । କାରଣ ଯାହାଙ୍କୁ ପିଣ୍ଡଦାନ, ସେ ହିଁ କେବଳ ମୁକ୍ତିଲାଭରେ ସକ୍ଷମ ହୋଇଥାନ୍ତି । ତୀର୍ଥଗଣ ପାପୀ-ତାପୀଗଣଙ୍କର ପାପାଦି ଗ୍ରହଣକରି ଓ ସେମାନଙ୍କୁ ମୁକ୍ତିପ୍ରଦାନ କରି ଭରାକ୍ରାନ୍ତ ହୋଇପଡ଼ିବାରୁ ସେହି ପାପ-ତାପରୁ ଅବ୍ୟାହତି ନିମିତ୍ତ ଆପଣଙ୍କର ଶ୍ରୀଚରଣ ସ୍ପର୍ଶ କାମନା କରିଥାନ୍ତି ।

ଭବଦ୍‌ବିଧା ଭାଗବତାସ୍ତୀର୍ଥୀଭୂତାଃ ସ୍ୱୟଂ ପ୍ରଭୋ ।
ତୀର୍ଥୀ କୁର୍ବନ୍ତି ତୀର୍ଥାନି ସ୍ୱାନ୍ତସ୍ଥେନ ଗଦାଭୃତା ।।
(ଶ୍ରୀ ମଦ୍‌ଭାଗବତ ୧ମ ସ୍କନ୍ଧ, ୧୩ଶ ଅଧ୍ୟାୟ, ୮ମ ଶ୍ଲୋକ)

ଆପଣଙ୍କ ନ୍ୟାୟ ଭାଗବତଗଣ ସ୍ୱୟଂ ତୀର୍ଥସ୍ୱରୂପ । ସେମାନଙ୍କ ଅନ୍ତରରେ ଶ୍ରୀଭଗବାନ ବିରାଜମାନ । ସେମାନେ ତୀର୍ଥ ସକଳକୁ ପବିତ୍ର କରିଥାନ୍ତି । ଆପଣ ହିଁ ସର୍ବତୀର୍ଥର ଆରାଧ୍ୟ । ଆପଣ ହିଁ ସବୁ ତୀର୍ଥର ସାର । ଆପଣ ସର୍ବ ମଙ୍ଗଳଦାତା । ଆପଣଙ୍କର କରୁଣା-କଣା ବ୍ୟତୀତ ମୋର ଅନ୍ୟ କୌଣସି ଉପାୟ ନାହିଁ ।

ସଂସାର-ସମୁଦ୍ର ହୈତେ ଉଦ୍ଧାରେ ଆମାରେ ।
ଏଇ ଆମି ଦେହ ସମର୍ପିଲାମ ତୋମାରେ ।।
କୃଷ୍ଣପାଦପଦ୍ମେର ଅମୃତ-ରସ ପାନ ।
ଆମାରେ କରାଓ, ତୁମି ଏହି ଚାହି ଦାନ ।।
(ଶ୍ରୀଚୈତନ୍ୟ ଭାଗବତ–ଆଦି ୧୭ଶ ଅଧ୍ୟାୟ)

ଆପଣ ନିଜେ ଅଯାଚିତ କରୁଣାସିକ୍ତ ବୋଲି ଏହି ଦୁର୍ଲଂଘ୍ୟ ସଂସାର ସମୁଦ୍ରରୁ ମୋତେ ଉଦ୍ଧାର କରନ୍ତୁ । ମୁଁ ମୋର ସର୍ବସ୍ୱ ଆପଣଙ୍କ ଶ୍ରୀଚରଣରେ ସମର୍ପଣ କରୁଅଛି । ଶ୍ରୀପୁରୀପାଦ ଶ୍ରୀମନ୍ମହାପ୍ରଭୁଙ୍କର ଦୈନ୍ୟାର୍ତ୍ତି ଶୁଣି ତାଙ୍କ ଚିତ୍ତ ବିଚଳିତ ହେଲା । ସେ ପ୍ରେମାପ୍ଲୁତ କଣ୍ଠରେ କହିଲେ–ତୁମେ ଈଶ୍ୱର ଅଂଶ । ତୁମର ପାଣ୍ଡିତ୍ୟ, ଅଦୃଷ୍ଟପୂର୍ବ ଅପାର୍ଥିବ, ନିର୍ମଳ ଚରିତ୍ର ଓ ଅଲୌକିକ ଈଶ୍ୱରତୁଲ୍ୟ ରୂପମାଧୁର୍ଯ୍ୟ ଈଶ୍ୱର-ଅଂଶ ବିନା ଅନ୍ୟଠାରେ ସମ୍ଭବ ହୋଇପାରେ ନାହିଁ ।

ଯେନ ଆଜି ଆମି ଶୁଭ ସ୍ୱପ୍ନ ଦେଖିଲାମ ।
ସାକ୍ଷାତେ ତାହାର ଫଲ ଏଇ ପାଇଲାମ ।।
(ଶ୍ରୀ ଚୈତନ୍ୟ ଭଗବତ ଆଦ—୧୫ଶ ଅଧ୍ୟାୟ)

ଗତରାତ୍ରିରେ ସ୍ୱପ୍ନଯୋଗେ ଯାହା ଦେଖିଥିଲି, ତାହାଙ୍କର ହିଁ ସାକ୍ଷାତ୍ ଦର୍ଶନ ପାଇଲି ।

ଯଦବଧି ତୋମା ଦେଖିଯାଛି ନଦୀୟାୟ ।
ତଦବଧି ଚିତ୍ତେ ଆର କିଛୁ ନାହି ଭାୟ ।
ସତ୍ୟ ଏଇ କହି ଇଥେ ଅନ୍ୟ କିଛୁ ନାଇ ''
କୃଷ୍ଣ ଦରଶନ ସୁଖ, ତୋମା ଦେଖି ପାଇ ।।
(ଶ୍ରୀଚୈତନ୍ୟ ଭଗବତ ଆଦ ୧୫ଶ ଅଧ୍ୟାୟ)

ଶ୍ରୀପାଦଙ୍କର ଏ ପ୍ରକାର କଥା ଶୁଣି ମହାପ୍ରଭୁ ନିଜ ସ୍ୱରୂପ ପ୍ରଚ୍ଛନ୍ନ କରି କହିଲେ—

ଶୁନି ପ୍ରିୟ ଈଶ୍ୱରପୁରୀର ସତ୍ୟ ବାକ୍ୟ ।
ହାସିୟା ବଲେନ ପ୍ରଭୁ ମୋର ବଡ଼ ଭାଗ୍ୟ ।।
(ଶ୍ରୀ ଚୈ. ଭ. ଆଦ ୧୬ଶ ଅଧ୍ୟାୟ)

ଏହି ପ୍ରକାରେ କେତେକ୍ଷଣ କୌତୁକ-ସମ୍ଭାଷଣ କରି ନିଜ ନିଜ କର୍ମପଥରେ ପ୍ରସ୍ଥାନ କଲେ । ମହାପ୍ରଭୁ ଶ୍ରୀପାଦଙ୍କର ଆଦେଶ ନେଇ ପିତୃପିଣ୍ଡ ଦାନ କାର୍ଯ୍ୟରେ ନିଯୁକ୍ତ ହେଲେ । ମହାପ୍ରଭୁ ପିଣ୍ଡଦାନାନ୍ତେ ବାସସ୍ଥଳକୁ ଫେରିଆସି ଆହାରର ବ୍ୟବସ୍ଥା କଲେ ।

ରନ୍ଧନ ସମ୍ପୂର୍ଣ୍ଣ ହୈଲ ହେନ-ଇ ସମୟ ।
ଆଇଲେନ ଶ୍ରୀ ଈଶ୍ୱର ପୁରୀ ମହାଶୟ ।।
ପ୍ରେମ ଯୋଗେ କୃଷ୍ଣନାମ ବଲିତେ ବଲିତେ ।
ଆଇଲେନ ମତ୍ତପ୍ରାୟ ଢୁଲିତେ ଢୁଲିତେ ।।
(ଶ୍ରୀ ଚୈ. ଭ. ଆଦି—୧୫ଶ ଅଧ୍ୟାୟ)

ମହାପ୍ରଭୁ ଶ୍ରୀପାଦଙ୍କୁ ଦର୍ଶନକରିବା ମାତ୍ରେ ସମସ୍ତ କାର୍ଯ୍ୟ ପକାଇରଖି ସର୍ବାଗ୍ରେ ସମ୍ଭ୍ରମରେ ତାଙ୍କୁ ପ୍ରଣାମାଦି କରି ଯଥାଯୋଗ୍ୟ ଅଭ୍ୟର୍ଥନା କଲେ । ତତ୍ପରେ ଶ୍ରୀପାଦ ସକୌତକରେ ମହାପ୍ରଭୁଙ୍କୁ କହିଲେ—

ହାସିୟା ବଲେନ ପୁରୀ ଶୁନହ ପଣ୍ଡିତ ।
ଭାଲ ଓ ସମୟେ ହଇଲାମ ଉପନୀତ ।।
ପ୍ରଭୁ ବଲେ, ସବେ ହୈଲ ଭାଗ୍ୟେର ଉଦୟ ।
ଏଇ ଅନ୍ନ ଭିକ୍ଷା ଆଜି, କର ମହାଶୟ ।।

(ଶ୍ରୀ ଚୈ. ଭ. ଆଦି—୧୫ଶ ଅଧ୍ୟାୟ)

"ପଣ୍ଡିତ ! ଭଲ ସମୟରେ ହିଁ ଉପନୀତ ହେଲି ।" ପ୍ରଭୁଙ୍କର ରନ୍ଧନାଦି ଶେଷ ହୋଇଛି । ଶ୍ରୀପାଦଙ୍କର ରହସ୍ୟପୂର୍ଣ୍ଣ କଥା ଶୁଣି ମହାପ୍ରଭୁ ଅତୀବ ଆନନ୍ଦିତ ହେଲେ ଏବଂ ସାଗ୍ରହରେ କହିଲେ—ମୋର ଆଜି ପରମ ସୌଭାଗ୍ୟ ଯେ, ଆପଣ କୃପାକରି ଅଯାଚିତଭାବେ ଉପସ୍ଥିତ ହୋଇଛନ୍ତି । ଆପଣ କୃପାପୂର୍ବକ ଅଦ୍ୟ ଏଠାରେ ଅନ୍ନଭିକ୍ଷା ଅଙ୍ଗୀକାର କରନ୍ତୁ ।

ହେନ କୃପା ପ୍ରଭୁର ଈଶ୍ୱର ପୁରୀ ପ୍ରତି ।
ପୁରୀର ନାହିକ କୃଷ୍ଣଛାଡ଼ା ଅନ୍ୟ ଗତି ।।

(ଶ୍ରୀ ଚୈ. ଭ. ଆଦି—୧୫ଶ ଅଧ୍ୟାୟ)

ଶ୍ରୀପୁରୀପାଦଙ୍କର କୃଷ୍ଣ ହିଁ ଧ୍ୟାନ, ଜ୍ଞାନ ଓ ଏକମାତ୍ର ସମ୍ବଳ । ପାର୍ଥିବ ଜଗତରେ ନିଜର ବୋଲି ଯାହାକିଛି ରହିଛି, ସମସ୍ତ ହିଁ ଶ୍ରୀକୃଷ୍ଣଙ୍କର ଅଭୟ ଚରଣରେ ସମର୍ପଣକରି ନିଃସ୍ୱ ଓ ରିକ୍ତ । ସେଥିଲାଗି ତାଙ୍କପ୍ରତି ଶ୍ରୀକୃଷ୍ଣଙ୍କର ତଥା ଶ୍ରୀମନ୍ମହାପ୍ରଭୁଙ୍କର ଏତେ କରୁଣା !

ଶ୍ରୀହସ୍ତେ ଆପନେ ପ୍ରଭୁ କରେ ପରିବେଷଣ ।
ପରମାନନ୍ଦ ସୁଖେ ପୁରୀ କରେନ ଭୋଜନ ।।

(ଶ୍ରୀ ଚୈ. ଭ. ଆଦି—୧୫ ଅଧ୍ୟାୟ)

ଏତେକ୍ଷଣ ମହାପ୍ରଭୁ ଅନ୍ତରଙ୍ଗ ପ୍ରିୟଭକ୍ତଙ୍କ ସହିତ କୃପାଲୀଳା ପରେ ଶ୍ରୀପାଦଙ୍କର ମହିମା ପ୍ରକାଶକରି ତାଙ୍କୁ ମହାସମାରୋହରେ ଭୋଜନାଦି କରାଇ ଗନ୍ଧଦ୍ରବ୍ୟାଦି ଦାନ କଲେ ।

ହେନ ପ୍ରୀତ ଈଶ୍ୱରେର ଈଶ୍ୱରପୁରୀରେ ।
ଭକ୍ତେରେ ବାଢ଼ାତେ ପ୍ରଭୁ ସର୍ବଶକ୍ତି ଧରେ ।।

(ଶ୍ରୀ ଚୈ. ଭ. ଆଦି—୧୫ଶ ଅଧ୍ୟାୟ)

ଏହି ରୂପେ ଭକ୍ତ ଓ ଶ୍ରୀ ଭଗବାନଙ୍କର ସମ୍ପର୍କ ପ୍ରକାଶକରି ଦୀକ୍ଷାଗ୍ରହଣରେ ଇଚ୍ଛା ଜ୍ଞାପନ କଲେ ।

ଆରଦିନ ନିଭୃତେ ଈଶ୍ୱରପୁରୀ ସ୍ଥାନେ ।
ମନ୍ତ୍ରଦୀକ୍ଷା ଗ୍ରହିଲେନ ମଧୁର ବଚନେ ।।

(ଶ୍ରୀ ଚୈ. ଭ. ଆଦ—୧୫ଶ ଅଧ୍ୟାୟ)

ଜଗଦାରାଧ୍ୟ ସ୍ୱୟଂ ଭଗବାନ ଶ୍ରୀମନ୍ମହାପ୍ରଭୁଙ୍କ ଦୀକ୍ଷାଗ୍ରହଣର କୌଣସି ପ୍ରୟୋଜନ ନାହିଁ । ତେବେ ବି ଜୀବଶିକ୍ଷା ଲାଗି ତାଙ୍କର ଲୀଳାଭିନୟ । "ଆପନି ଆଚରି ଧର୍ମଜୀବେରେ ଶିଖାୟ ।" ଆମ୍ଭେମାନେ ଯେ ଈଶ୍ୱରଙ୍କର ନିତ୍ୟଦାସ, ତାହା ଭୁଲିଯାଇ ଅନିତ୍ୟ, ଆପାତଃ-ରମ୍ୟ ବସ୍ତୁରେ ନିତ୍ୟଜ୍ଞାନ ସ୍ଥାପନପୂର୍ବକ ମାୟା-ପ୍ରଲୁବ୍ଧ ହୋଇରହିଛୁ । ଯେତେବେଳେ ଶାସ୍ତ୍ର ଶ୍ରବଣ ଓ ମହାପୁରୁଷଗଣଙ୍କର କୃପାପ୍ରଭାବରେ ନିଜର ଭ୍ରମ ଦୂରୀଭୂତ ହୁଏ, ସେତେବେଳେ ଜୀବର ଏକମାତ୍ର ନିଜ ଜନ ଜଗତ୍‌ପିତା ଶ୍ରୀକୃଷ୍ଣଙ୍କୁ ପାଇବା ଲାଗି ପ୍ରବଳ ଆକାଙ୍କ୍ଷା ଜାଗେ । କିନ୍ତୁ ସେହି ଆକାଙ୍କ୍ଷା ପୂର୍ଣ୍ଣ କରିବାକୁ ହେଲେ ଶ୍ରୀକୃଷ୍ଣଙ୍କ ସହିତ ପୁନଃ ସମ୍ବନ୍ଧ ସ୍ଥାପନ ପ୍ରୟୋଜନ । ସେହି ସମ୍ବନ୍ଧ ସ୍ଥାପନରେ ନାମ ହିଁ "ଦୀକ୍ଷା ।" ସେଥିଲାଗି ଶ୍ରୀମନ୍ମହାପ୍ରଭୁ ନିଜ ଆଚରଣ ମାଧ୍ୟମରେ ଜଗଜ୍ଜୀବଙ୍କୁ ଶିକ୍ଷାଦାନର ଅବତାରଣା କରିଛନ୍ତି ଅର୍ଥାତ୍ ସମସ୍ତଙ୍କର ଯେ ଦୀକ୍ଷାଗ୍ରହଣର ପ୍ରୟୋଜନ, ତାହା ପ୍ରଭୁଙ୍କର ହାର୍ଦ୍ଦ ଅଭିପ୍ରାୟ ।

ଆପନି କରିମୁ ଭକ୍ତଭାବ ଅଙ୍ଗୀକାର ।
ଆପନି ଆଚରି ଭକ୍ତି ଶିଖାଇମୁ ସବାର ।।
ଆପନି ନା କୈଲେ ଧର୍ମ ଶିଖାନ ନା ଯାୟ ।
ଏଇ ତ ସିଦ୍ଧାନ୍ତ ଗୀତା ଭାଗବତେ ଗାୟ ।।

(ଶ୍ରୀଚୈତନ୍ୟ ଚରିତାମୃତ—ଆଦି ୩ୟ ପରିଚ୍ଛେଦ)

ଶ୍ରୀଗୁରୁରୂପେ ଜୀବର ନିସ୍ତାରର ସୋପାନ ପ୍ରଦର୍ଶନ କରି ନରଲୀଳାକାରୀ ଶ୍ରୀମନ୍ମହା-ପ୍ରଭୁ ଶାସ୍ତ୍ରଯୁକ୍ତି ଅନୁସାରେ ଜଗତ୍‌ବାସୀଙ୍କ ଶିକ୍ଷା ଲାଗି ଶ୍ରୀପାଦଙ୍କ ସମୀପରେ ମନ୍ତ୍ରଦୀକ୍ଷା ପ୍ରାର୍ଥନା କଲେ । ସେତେବେଳେ ଶ୍ରୀପାଦ ସସ୍ନେହରେ କହିଲେ—

ପୁରୀ ବଲେ ମନ୍ତ୍ର ବା ବଲିୟା କୋନ୍ କଥା ।
ପ୍ରାଣ ଆମି ଦିତେ ପାରି ତୋମାରେ ସର୍ବଥା ।।

(ଶ୍ରୀ ଚୈ.ଭ. ଆଦି—୧୫ଶ ଅଧ୍ୟାୟ)

ମନ୍ତ୍ରଦୀକ୍ଷା କାହିଁକି ? ତୁମେ ମୋ ନିକଟରୁ ଯାହା ଗ୍ରହିବ, ଏପରି କି ମୋର ପ୍ରାଣ ପର୍ଯ୍ୟନ୍ତ ଦେଇପାରେ । ତା'ପରେ ଶ୍ରୀପାଦ ଗୟାଧାମସ୍ଥ ବ୍ରହ୍ମକୁଣ୍ଡତୀରରେ ମହାପ୍ରଭୁଙ୍କ

ନିବେଦନକ୍ରମେ ସାଦରରେ ଶ୍ରୀମନ୍ମହାପ୍ରଭୁଙ୍କର କର୍ଣ୍ଣମୂଳରେ "ଶ୍ରୀଦଶାକ୍ଷର ମନ୍ତ୍ର" ପ୍ରଦାନ କଲେ ।

ତବେ ତାଁର ସ୍ଥାନେ ଶିକ୍ଷାଗୁରୁ ନାରାୟଣ ।
କରିଲେନ ଦଶାକ୍ଷର—ମନ୍ତ୍ରେର ଗ୍ରହଣ ।।
(ଶ୍ରୀ ଚୈ.ଭ—ଆଦି ୧୫ଶ ଅଧ୍ୟାୟ)

ତେବେ ଶ୍ରୀପାଦଙ୍କ ସମୀପରେ ଶିକ୍ଷାଗୁରୁ ନାରାୟଣ ଅର୍ଥାତ୍ ଶ୍ରୀମନ୍ମହାପ୍ରଭୁ ମନ୍ତ୍ରଦୀକ୍ଷା ଗ୍ରହଣ କରିବାରୁ ତାଙ୍କୁ ଶିକ୍ଷାଗୁରୁ ରୂପେ ନିର୍ଦ୍ଦେଶ କରାହୋଇଛି । ଗୁରୁ ଦୁଇପ୍ରକାର । ପ୍ରଥମ—ଦୀକ୍ଷାଗୁରୁ; ଦ୍ୱିତୀୟ—ଶିକ୍ଷାଗୁରୁ । ଦୀକ୍ଷାଗୁରୁ ଅଜ୍ଞାନାନ୍ଧକାର ପ୍ରଲୁବ୍ଧ ଚର ବହିର୍ମୁଖ ଜୀବନିଚୟଙ୍କୁ ନିଜ ଅଯାଚିତ କୃପାଶକ୍ତି ପ୍ରଭାବରେ କୃଷ୍ଣୋନ୍ମୁଖ କରି ଦିବ୍ୟଜ୍ଞାନଚକ୍ଷୁ ପ୍ରଦାନ କରି ଶ୍ରୀକୃଷ୍ଣପ୍ରାପ୍ତିର ସହଜ ସନ୍ଧାନ କହିଦିଅନ୍ତି । ତତ୍ପରେ ଶିକ୍ଷାଗୁରୁ ସଦୁପଦେଶ ପ୍ରଦାନ ଦ୍ୱାରା ନିର୍ଦ୍ଦିଷ୍ଟ ମାର୍ଗରେ ଅଗ୍ରସର ହେବାର ସହାୟତା କରନ୍ତି ।

ଶିକ୍ଷାଗୁରୁକେ ତ ଜାନି କୃଷ୍ଣେର ସ୍ୱରୂପ ।
ଅନ୍ତର୍ଯ୍ୟାମୀ ଭକ୍ତଶ୍ରେଷ୍ଠ ଏଇ ଦୁଇ ରୂପ ।।
(ଶ୍ରୀ ଚୈ. ଚରିତାମୃତ ଆଦି—୧ମ ଅଧ୍ୟାୟ)

ଶିକ୍ଷାଗୁରୁ ଦୁଇପ୍ରକାର । ଗୋଟିଏ ଅନ୍ତର୍ଯ୍ୟାମୀ ପୁରୁଷ । ଅନ୍ୟଟି ଭକ୍ତଶ୍ରେଷ୍ଠରୂପ । ଅନ୍ତର୍ଯ୍ୟାମୀ ପୁରୁଷ ହେଲେ ସର୍ବାରାଧ୍ୟ ଶ୍ରୀକୃଷ୍ଣ । ସେ ଜୀବ ହୃଦୟରେ ଅବସ୍ଥାନ କରି ସର୍ବଦା ସତ୍‌ବିଚାର ମାଧ୍ୟମରେ ସାଧକକୁ ସାଧନ ପଥରେ ଅଗ୍ରଣୀ ହେବାରେ ସହାୟତା କରନ୍ତି ।

କୃଷ୍ଣ ଯଦି କୃପାକରେ କୋନ ଭାଗ୍ୟବାନେ ।
ଗୁରୁ ଅନ୍ତର୍ଯ୍ୟାମୀ ରୂପେ ଶିଖାୟ ଆପନେ ।।
(ଶ୍ରୀ ଚୈ.ଚ.—ମଧ୍ୟ—୨୨ଶ ଅଧ୍ୟାୟ)

ଭକ୍ତଶ୍ରେଷ୍ଠ ରୂପେ ସାଧନ ବିଷୟକ ସଦୁପଦେଶ ଓ ସ୍ୱୀୟ ଅଭୀଷ୍ଟଙ୍କର ଅପୂର୍ବ ଲୀଳା ଗୁଣାଦି ଶୁଣାଇ ଜୀବର ସାଧନର ଅନୁରାଗ ବର୍ଦ୍ଧନର ସହାୟତା କରିଥାନ୍ତି । ଦୀକ୍ଷାଗୁରୁ ଓ ଶିକ୍ଷାଗୁରୁ ମଧ୍ୟରେ ନିଜର ସ୍ୱରୂପଶକ୍ତି ପ୍ରକାଶ କରିଥାନ୍ତି ।

ଜୀବେର ନିସ୍ତାର ଲାଗି ନନ୍ଦସୁତ ହରି ।
ଭୁବନେ ପ୍ରକାଶି ହନ ଗୁରୁ ରୂପ ଧରି ।।
(ଶ୍ରୀଲ ସନାତନ ଗୋସ୍ୱାମୀ ବିରଚିତ ଗୁରୁମହିମା ବର୍ଣ୍ଣନରେ)

ଶ୍ରୀମଦ ଭଗବତ ୧୧ ସ୍କନ୍ଦ ୧୭ଶ ଅଧ୍ୟାୟ ୨୭ଶ ଶ୍ଲୋକରେ ଉକ୍ତ ହୋଇଛି—

ଆଚାର୍ଯ୍ୟଂ ମାଂ ବିଜାନିୟାତ୍ ନାବମନ୍ୟେତ କର୍ହିଚିତ୍ ।
ନ ମର୍ତ୍ତ୍ୟବୁଦ୍ଧ୍ୟାସୂୟେତ ସର୍ବଦେବମୟୋ ଗୁରୁଃ ।।"

ଶ୍ରୀ ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହିଲେ, ହେ ଉଦ୍ଧବ ! ଶ୍ରୀଗୁରୁଦେବଙ୍କୁ ମତ୍‌ସ୍ୱରୂପ ଜାଣିବ । ଗୁରୁଙ୍କୁ ସାମାନ୍ୟ ମନୁଷ୍ୟ ଜ୍ଞାନ କରିବ ନାହିଁ । ଗୁରୁ ସର୍ବ-ଦେବମୟ । ଗୁରୁଙ୍କଠାରେ ମୋର ସ୍ୱରୂପଶକ୍ତି ବିଦ୍ୟମାନ ।

ତବେ ପ୍ରଭୁ ପ୍ରଦକ୍ଷିଣ କରିୟା ପ୍ରଭୁରେ ।
ପ୍ରଭୁ ବଲେ ଦେହ ଆମି ଦିଲାମ ତୋମାରେ ।।
(ଶ୍ରୀ ଚୈ ଭଗବତ : ଆଦି ୧୫ ଶ ଅ)

ଶ୍ରୀମନ୍ମହାପ୍ରଭୁ ଶ୍ରୀପାଦ ଈଶ୍ୱରପୁରୀଙ୍କୁ ପ୍ରଦକ୍ଷିଣ କରି ସବିନୟରେ କହିଲେ— ଆଜି ମୁଁ ଆପଣଙ୍କର ଶ୍ରୀଚରଣରେ ଦେହ, ମନ, ପ୍ରାଣ ବିଦ୍ୟା, ବୁଦ୍ଧି ଓ ଇନ୍ଦ୍ରିୟାଦି, ସବୁକିଛି ସମର୍ପଣ କଲି । ମୋର ବୋଲି ଆଉ କିଛି ରଖିଲି ନାହିଁ ।

ଦୀକ୍ଷାକାଲେ ଭକ୍ତ କରେ ଆତ୍ମସମର୍ପଣ ।
ସେଇ କାଲେ କୃଷ୍ଣ ତାରେ କରେ ଆତ୍ମସମ ।।
ସେଇ ଦେହ କରେ ତାର ଚିଦାନନ୍ଦମୟ ।
ଅପ୍ରାକୃତ ଦେହେ ତାର ଚରଣ ଭଜୟ ।।
(ଶ୍ରୀଚୈତନ୍ୟଚରିତାମୃତ : ଅନ୍ତ-୪ର୍ଥ ଅ)

ଏହି ଚିରଶାଶ୍ୱତ ଶାସ୍ତ୍ର ପ୍ରମାଣର ସାର୍ଥକତା ଶ୍ରୀମନ୍ମହାପ୍ରଭୁ ତାଙ୍କର ନିଜର ଆଚରଣ ମାଧ୍ୟମରେ ଶ୍ରୀଗୁରୁକୃପା ପ୍ରାର୍ଥନା କରି କହିଲେ—

ହେନ କୃପାଦୃଷ୍ଟି ତୁମ କରହ ଆମାରେ ।
ଯେନ ଆମି ଭସି କୃଷ୍ଣପ୍ରେମେର ସାଗରେ ।

ଶ୍ରୀମନ୍ମହାପ୍ରଭୁଙ୍କର ଏ ପ୍ରକାର ଦୈନ୍ୟୋକ୍ତିରେ ଶ୍ରୀପାଦଙ୍କ କୋମଳ ହୃଦୟ ବିଚଳିତ ହେଲା ଏବଂ ସସ୍ନେହରେ ପ୍ରଭୁଙ୍କୁ ଆଲିଙ୍ଗନ କରି ପ୍ରେମାନନ୍ଦରେ ଭାସିବାକୁ ଲାଗିଲେ ଶ୍ରୀପାଦ । ସେମାନେ ଉଭୟେ ଉନ୍ମତ୍ତ ପ୍ରାୟ କାନ୍ଦିବାକୁ ଲାଗିଲେ । ଏହି ପ୍ରକାର ଲୀଳା ମାଧ୍ୟମରେ ଶ୍ରୀଗୟାଧାମରେ ଏକତ୍ର ଅବସ୍ଥାନ କରିବାକୁ ଲାଗିଲେ ।

ହେନମତେ ଈଶ୍ୱରପୁରୀରେ କୃପା କରି ।
କତଦିନ ଗୟାୟ ରହିଲ ଗୌରହରି ॥
(ଶ୍ରୀ ଚୈ. ଚ: ଅନ୍ତ୍ୟ-୪ର୍ଥ ପରିଚ୍ଛେଦ)

ତା' ପରେ ଶ୍ରୀମନ୍ମହାପ୍ରଭୁ ଶ୍ରୀଗୟାଧାମରୁ ଶ୍ରୀଧାମ ନବଦ୍ୱୀପକୁ ପ୍ରତ୍ୟାବର୍ତ୍ତନ କରି ଶ୍ରୀକୃଷ୍ଣପ୍ରେମ ପ୍ରକାଶଲୀଳା ନାଟ୍ୟର ଶୁଭ ଉଦବୋଧନ ଆରମ୍ଭ କଲେ ।

ଈଶ୍ୱରପୁରୀର ସ୍ଥାନେ ଲଇୟା ବିଦାୟ ।
ଗୃହେ ଆଇଲେନ ପ୍ରଭୁ ଶ୍ରୀଗୌରାଙ୍ଗରାୟ ॥
(ଶ୍ରୀ ଚୈ, ଚ. ଅନ୍ତ୍ୟ. ୪ର୍ଥ ପରିଚ୍ଛେଦ)

ଏଣେ କୃଷ୍ଣପ୍ରେମୋନ୍ମତ୍ତ ଶ୍ରୀପାଦ ଈଶ୍ୱରପୁରୀ ଏକମାତ୍ର ହୃଦୟସର୍ବସ୍ୱ ଶ୍ରୀଗୁରୁଦେବ ଶ୍ରୀଳ ମାଧବେନ୍ଦ୍ର ପୁରୀପାଦଙ୍କର ବିୟୋଗଜନିତ ନିଦାରୁଣ ବିରହବିଚ୍ଛେଦରେ ବେଶିଦିନ ଧରାଧାମରେ ଜୀବନଧାରଣ କରିବାକୁ ଚାହିଁଲେ ନାହିଁ । ୧୪୩୩ ଶକାବ୍ଦ (୧୫୧୧ ଖ୍ରୀଷ୍ଟାବ୍ଦ) ଗୌର ଫାଲ୍‌ଗୁନୀ କୃଷ୍ଣା ଦ୍ୱାଦଶୀ ତିଥିରେ ଜଗଦଗୁରୁ ଶ୍ରୀଳ ଈଶ୍ୱରପୁରୀପାଦ ପାର୍ଥିବଲୀଳା ସମ୍ବରଣ କରି ଅପ୍ରାକୃତ ନିତ୍ୟଲୀଳାରେ ପ୍ରବିଷ୍ଟ ହେଲେ । ଶ୍ରୀପାଦଙ୍କର ଲୀଳାସମ୍ବରଣର ପ୍ରାକ୍‌କାଳରେ ତାଙ୍କର ନିତ୍ୟସେବକ ଶ୍ରୀ ଗୋବିନ୍ଦ ଦାସ ଓ ଶ୍ରୀ କାଶୀଶ୍ୱର ଗୋସ୍ୱାମୀ ନାମକ ଦୁଇ ଅନ୍ତରଙ୍ଗଙ୍କର ଆନ୍ତରିକତା ପୂର୍ଣ୍ଣସେବାଗୁଣରେ ବିମୁଗ୍ଧ ହୋଇ ଉପଦେଶ ଦାନ ପ୍ରସଙ୍ଗରେ ଏକ ଦୁର୍ଲଭ କୃପାଦେଶ ପ୍ରଦାନ କରନ୍ତି । ଏହି ଆଦେଶର ବାର୍ତ୍ତାବାହକ ଶ୍ରୀ ଗୋବିନ୍ଦ ଦାସଙ୍କ ସହିତ ଶ୍ରୀମନ୍ମହାପ୍ରଭୁଙ୍କର ମିଳନ ଲଗ୍ନରେ ଶ୍ରୀ ଗୋବିନ୍ଦ ଦାସଙ୍କ ଶ୍ରୀମୁଖ -ବର୍ଣ୍ଣନା ଏହି ପ୍ରକାର ।

ସିଦ୍ଧିପ୍ରାପ୍ତିକାଲେ ଗୋସାଇଁ ଆଜ୍ଞା କୈଲ ମୋରେ ।
କୃଷ୍ଣଚୈତନ୍ୟ ନିକଟେ ଯାଇ ସେବିହ ତାଁହାରେ ॥
(ଶ୍ରୀଚୈତନ୍ୟ ଚରିତାମୃତ . ମଧ୍ୟ-୧୦ମ ପ.)

"ଗୋଲୋକବିହାରୀ ଶ୍ରୀକୃଷ୍ଣ କଳିଜୀବ ନିସ୍ତାର ଲାଗି ନଦୀୟାରେ ସଂକୀର୍ତ୍ତନ ବିଳାସୀ ଶ୍ରୀଗୌରାଙ୍ଗ ରୂପେ ଅବତୀର୍ଣ୍ଣ ହୋଇଅଛନ୍ତି । ବର୍ତ୍ତମାନ ସନ୍ନ୍ୟାସ ଗ୍ରହଣ କରି ଶ୍ରୀକୃଷ୍ଣଚୈତନ୍ୟ ନାମ ଧାରଣ ପୂର୍ବକ ଶ୍ରୀ ନୀଳାଚଳରେ ଅବସ୍ଥାନ କରୁଅଛନ୍ତି । ତୁମ୍ଭେମାନେ ମୋର ଏହି ନିର୍ଦ୍ଦେଶାନୁସାରେ କାୟମନୋବାକ୍ୟରେ ଅନନ୍ୟଚିତ୍ତରେ ତାହାଙ୍କର ଚରଣରେ ଶରଣ ନେଇ ଏକାନ୍ତ ଭକ୍ତେ ଦାସ୍ୟାନୁରାଗରେ ତାଙ୍କର ପରିଚର୍ଯ୍ୟା କାର୍ଯ୍ୟେ ଯାବତ ଜୀବନ ଆତ୍ମନିୟୋଗ କରିବ ।" ଶ୍ରୀପାଦଙ୍କଠାରୁ ଏ ପ୍ରକାର କୃପାଦେଶ ପ୍ରାପ୍ତ ହୋଇ ଶ୍ରୀ ଗୋବିନ୍ଦ ଦାସ ସିଧାସଳଖ ଶ୍ରୀନୀଳାଚଳ ଧାମରେ ଶ୍ରୀମନ୍ମହାପ୍ରଭୁଙ୍କ

ସମୀପରେ ଉପନୀତ ହେଲେ । ଶ୍ରୀ କାଶୀଶ୍ୱର ଗୋସ୍ୱାମୀ ତୀର୍ଥଭ୍ରମଣ କରି ପରେ ଶ୍ରୀମହାପ୍ରଭୁଙ୍କ ନିକଟରେ ଉପସ୍ଥିତ ହେଲେ । ଶ୍ରୀ ଗୋବିନ୍ଦ ଦାସ ପ୍ରଭୁଙ୍କ ଶ୍ରୀଚରଣରେ ପ୍ରଣାମ କରି ନିଜ ପରିଚୟ ପ୍ରଦାନ କରି ଅତୀବ ବିନମ୍ର ଭବରେ କହିଲେ—

ଈଶ୍ୱରପୁରୀର ଭୃତ୍ୟ ଗୋବିନ୍ଦ ମୋର ନାମ ।
ପୁରୀ ଗୋସାଇଁର ଆଜ୍ଞାୟ ଆଇନୁ ତୋମାର ସ୍ଥାନ ।

"ଆପଣ ମୋତେ ଦାସ ରୂପେ ଅଙ୍ଗୀକାର କରନ୍ତୁ"—ଏହା କହି ଶ୍ରୀପାଦଙ୍କର ବୃତ୍ତାନ୍ତ ଆଦ୍ୟପ୍ରାନ୍ତ ସମସ୍ତ ବର୍ଣ୍ଣନା କରନ୍ତି ଶ୍ରୀମନ୍ମହାପ୍ରଭୁଙ୍କ ନିକଟରେ । ପ୍ରଥମେ ଶ୍ରୀମନ୍ମହା-ପ୍ରଭୁ ଶ୍ରୀପାଦଙ୍କର ଲୀଳା ସମ୍ବରଣର ସମ୍ବାଦ ଶୁଣି କିୟତ୍‌କ୍ଷଣ ବିମର୍ଷ ହୋଇ ଉପବିଷ୍ଟ ରହିଲେ । ପରେ ଶ୍ରୀ ଗୋବିନ୍ଦ ଦାସଙ୍କ ଆବେଦନ ପ୍ରସଙ୍ଗରେ କହିବାକୁ ଲାଗିଲେ—

ଗୋସାଇଁ କୈଲ ପୁରୀଶ୍ୱର ବାତ୍ସଲ୍ୟ କରି ମୋରେ ।
କୃପାକରି ମୋର ଠାଇଁ ପାଠାଲ ତୋମାରେ ।।

(ଶ୍ରୀ ଚୈ.ଚ. ମଧ୍ୟ—୧୦ମ ପ.)

'ପୁରୀଶ୍ୱର' ଅର୍ଥାତ୍ ପୁରୀ ସମ୍ପ୍ରଦାୟର ମୁକୁଟମଣି ମହାପ୍ରେମିକ ଭକ୍ତଚୂଡ଼ାମଣି ଶ୍ରୀପାଦ ଈଶ୍ୱରପୁରୀ' ମୋତେ ବାତ୍ସଲ୍ୟଭାବରେ ଅତୀବ ପ୍ରୀତି କରୁଥିଲେ । ସେହି କାରଣରୁ କୃପାପୂର୍ବକ ମୋର ସୁଖବିଧାନ ଲାଗି ମୋ ସମୀପକୁ ତୁମକୁ ପଠାଇଛନ୍ତି ।" ପ୍ରଥମେ ମହାପ୍ରଭୁ ଶ୍ରୀଗୋବିନ୍ଦଙ୍କୁ ଶ୍ରୀଗୁରୁଦେବଙ୍କ ସେବକ ଓ ପୂଜ୍ୟ ହିସାବରେ ନିଜ ସେବକ ରୂପେ ଅଙ୍ଗୀକାର କରିବାକୁ ଅନିଚ୍ଛୁକ ହୁଅନ୍ତି । ପରେ ଶ୍ରୀ ସାର୍ବଭୌମ ଭଟ୍ଟା-ଚାର୍ଯ୍ୟଙ୍କୁ ଏହି ସିଦ୍ଧାନ୍ତର ଯଥୋପଯୁକ୍ତ ବିଚାର ଲାଗି ଜିଜ୍ଞାସା କରନ୍ତି । ସେତେବେଳେ ସାର୍ବଭୌମ ଭଟ୍ଟାଚାର୍ଯ୍ୟ କହିଲେ—

ଭଟ୍ଟ କହେ, ଗୁରୁର ଆଜ୍ଞା ହୟ ବଲବାନ୍ ।
ଗୁରୁଆଜ୍ଞା ନା ଲଂଘିବେ ଶାସ୍ତ୍ରେର ପ୍ରମାଣ ।।

(ଶ୍ରୀ ଚୈ.ଚ. ମଧ୍ୟ—୧୦ମ ପ.)

"ଗୁରୋରାଜ୍ଞା ହ୍ୟବିଚାରଣୀୟା ।" (ରଘୁବଂଶ)

ଶ୍ରୀ ସନାତନ ଗୋସ୍ୱାମୀ ବର୍ଣ୍ଣିତ ଗୁରୁମହିମାରେ—

ସତ୍ୟଜ୍ଞାନେ ଗୁରୁବାକ୍ୟେ ଯାହାର ବିଶ୍ୱାସ ।
ଅବଶ୍ୟ ତାହାର ହୟ ବ୍ରଜଭୂମେ ବାସ ।।
ତବେ ମହାପ୍ରଭୁ ତାରେ କୈଲ ଅଙ୍ଗୀକାର ।
ଆପନ ଶ୍ରୀଅଙ୍ଗସେବାୟ ଦିଲ ଅଧିକାର ।
ପ୍ରଭୁର ପ୍ରିୟ ଭୃତ୍ୟ କରି ସବେ କରେ ମାନ ।
ସକଲ ବୈଷ୍ଣବେର ଗୋବିନ୍ଦ କରେ ସମାଧାନ ।।
(ଶ୍ରୀ ଚୈ.ଚ. ମଧ୍ୟ–୧୦ମ ପ.)

ତତ୍‌ପରେ ଶ୍ରୀ ଗୟାଧାମରୁ ଶ୍ରୀଧାମ ନବଦ୍ୱୀପକୁ ଆସି ସଂକୀର୍ତ୍ତନ ବିଳାସ କରି ଜଗଜ୍ଜୀବ ଉଦ୍ଧାର ଅଭିପ୍ରାୟରେ ଚବିଶ ବର୍ଷ ବୟସରେ ମହାପ୍ରଭୁ କାଟୋୟା-କାଞ୍ଚନ ନଗରସ୍ଥ ଶ୍ରୀଳ କେଶବ ଭାରତୀ ନାମକ ଜନୈକ ସର୍ବଗୁଣ ସମ୍ପନ୍ନ ବୈଷ୍ଣବ ସମୀପରୁ ସନ୍ନ୍ୟାସ ଗ୍ରହଣ କରି ଶାନ୍ତିପୁରକୁ ଆସନ୍ତି । ସେଠାରେ ବିରହକାତର ଶ୍ରୀଶଚୀମାତାଙ୍କୁ ଆଣି ମାତୃ-ଆଦେଶକ୍ରମେ ଶ୍ରୀନୀଳାଚଳକୁ ଗମନ କରନ୍ତି । ସେଠାରେ ଦୁଇମାସ ରହି ବୈଶାଖ ମାସର ପ୍ରଥମେ ଦକ୍ଷିଣଦେଶ ଭ୍ରମଣ ଲାଗି ବହିର୍ଗତ ହୁଅନ୍ତି । ପୁନଃ ଶ୍ରୀ ନୀଳାଚଳକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଭକ୍ତଗଣଙ୍କର ସର୍ବଶେଷ ଅନୁରୋଧରେ ତିନିବର୍ଷ କାଳ ଶ୍ରୀନୀଳାଚଳରେ ବାସକରି ଅବଶେଷରେ ଗୌଡ଼ଦେଶର ମଧ୍ୟ ଦେଇ ଶ୍ରୀଧାମ ବୃନ୍ଦାବନ ଯାତ୍ରାର ଇଚ୍ଛା ପ୍ରକାଶ କରନ୍ତି । ୧୪୩୪ ଶକାବ୍ଦରେ ଗୌଡ଼ର ବୈଷ୍ଣବମଣ୍ଡଳି ସର୍ବପ୍ରଥମ ଶ୍ରୀନୀଳାଚଳକୁ ଆସି ଶ୍ରୀ ରଥଯାତ୍ରା ଠାରୁ ନିୟମ ସେବା ଶେଷ ପର୍ଯ୍ୟନ୍ତ ବର୍ଷା ଚାରିମାସ ପ୍ରଭୁଙ୍କ ସମୀପରେ ବାସକରି ପୁନଃ ଗୌଡ଼ଦେଶକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ଯେଉଁ ବର୍ଷ ମହାପ୍ରଭୁ ଗୌଡ଼ଦେଶ ଦେଇ ଶ୍ରୀଧାମ ବୃନ୍ଦାବନ ଯାତ୍ରାର ସଂକଳ୍ପ କଲେ, ସେହି ବର୍ଷ ଗୌଡ଼ର ବୈଷ୍ଣବମଣ୍ଡଳୀ ରଥଯାତ୍ରା ଦର୍ଶନ କରି ଏବଂ ଚାତୁର୍ମାସ୍ୟ ବ୍ରତୋଦ୍‌ଯାପନ କରି ୧୪୩୬ ଶକାବ୍ଦରେ ଶୁଭ ବିଜୟାଦଶମୀ ତିଥିରେ ଶ୍ରୀନୀଳାଚଳରୁ ସପାର୍ଷଦ ମହାପ୍ରଭୁ ଗୌଡ଼ଦେଶାଭିମୁଖେ ଯାତ୍ରା କଲେ । ରାସ୍ତାରେ ଭବାନୀପୁରରେ ଶ୍ରୀ ରାମାନନ୍ଦ ରାୟଙ୍କ ସହ ମିଳନ ହୁଏ । ସେଠାରେ ଶ୍ରୀ ବାଣୀନାଥ ପ୍ରେରିତ ଶ୍ରୀମହାପ୍ରସାଦ ସେବାକରି, ପରଦିନ ପ୍ରାତଃ-କାଳରେ ଭୁବନେଶ୍ୱରରେ ଉପସ୍ଥିତ ହୁଅନ୍ତି । ସେଠାରୁ କଟକ ଆସି ସ୍ୱପ୍ନେଶ୍ୱରଠାରେ ମହାରାଜ ଶ୍ରୀ ପ୍ରତାପରୁଦ୍ରଙ୍କୁ ସାକ୍ଷାତକାର ଦିଅନ୍ତି । ରାଜା, ଶ୍ରୀ ହରିଚନ୍ଦନ ଓ ଶ୍ରୀ ମଙ୍ଗଳରାଜ ନାମକ ଦୁଇ ମହାପାତ୍ରଙ୍କୁ ପ୍ରଭୁଙ୍କର ସେବାନୁକୂଲ୍ୟ ପାଇଁ ସାଙ୍ଗରେ ପଠାନ୍ତି । ସେହିଦିନ ସନ୍ଧ୍ୟା ସମୟରେ ରାଜଦତ୍ତ ନୂତନ ନୌକା ଯୋଗେ ଜ୍ୟୋତ୍ସ୍ନାସ୍ନାତ ରଜନୀରେ ଚତୁର୍ଦ୍ୱାରରେ (ଚୌଦ୍ୱାର) ଉପନୀତ ହୋଇ ପ୍ରଭାତରେ ପ୍ରାତଃସ୍ନାନ ସମାପନ କରନ୍ତି । ସେଠାରୁ ଗଦାଧର ପଣ୍ଡିତଙ୍କୁ ବିଦାୟ ଦେଇ ନୌକାଯୋଗେ ଯାଜପୁରରେ ଉପସ୍ଥିତ ହେଲେ । ସେଠାରୁ ରାଜଦତ୍ତ ସେବକଦ୍ୱୟଙ୍କୁ ବିଦାୟ ଦିଅନ୍ତି ।

ଏହିପରି ଭାବରେ ସପାର୍ଷଦ ଶ୍ରୀ ଗୌରସୁନ୍ଦର ଚାଲୁ ଚାଲୁ "ମହାତୀର୍ଥ ଶ୍ରୀଚେମୁଣାର ମହାସଙ୍ଗମ"ରେ ଉପନୀତ ହେଲେ । ସେଠାରୁ ଶ୍ରୀ ରାୟ ରାମାନନ୍ଦଙ୍କୁ ବିଦାୟ ଦେଇ ଓଡ୍ରଦେଶରେ ଉପସ୍ଥିତ ହେଲେ । ଓଡ୍ରଦେଶାଧିପତି ପ୍ରଭୁଙ୍କୁ ପାଇ ମହାନନ୍ଦରେ ଦୁଇ ଚାରିଦିନ ସେବା କଲେ । ପରେ ମ୍ଳେଚ୍ଛାଧିପତିଙ୍କୁ କୃପାଦୃଷ୍ଟି କରି, ତାଙ୍କ ସହାନୁଭୂତିରେ ତତ୍‌ପ୍ରଦତ୍ତ ନୂତନ ନୌକାଯୋଗେ ଦୁଷ୍ଟ "ମନ୍ତେଶ୍ୱର" ନଦୀ ପାରି ହେଲେ । ରାଜା ଦଶଟି ନୌକା ସୈନ୍ୟ ସହଯୋଗରେ ନିଜ ଅଧିକାରଭୁକ୍ତ 'ପିଛଲଦା' ପର୍ଯ୍ୟନ୍ତ ତାହାଙ୍କୁ ପହଞ୍ଚାଇଦେଲେ ।

ଶ୍ରୀମନ୍ ମହାପ୍ରଭୁ ପିଛଲଦାରୁ ଯବନ ସୈନ୍ୟମାନଙ୍କୁ ବିଦାୟ ଦେଇ ସେହି ନୌକା ଯୋଗେ "ପାନିହାଟୀ"ରେ ପହଞ୍ଚିଲେ । ରାଘବ ପଣ୍ଡିତଙ୍କ ଭବନରେ କାର୍ତ୍ତିକ କୃଷ୍ଣଦ୍ୱାଦଶୀ ତିଥିରେ ଅବସ୍ଥାନ ଓ ସେବାଗ୍ରହଣ କରନ୍ତି । ପାନିହାଟୀରେ ପହଞ୍ଚିବାକୁ ସପାର୍ଷଦ ଶ୍ରୀମନ୍ମହାପ୍ରଭୁଙ୍କୁ ଅଷ୍ଟାଦଶ ଦିବସ ସମୟ ଲାଗିଥିଲା । ତହିଁ ଆର ଦିନ ପ୍ରତ୍ୟୁଷରେ ଶାନ୍ତିପୁର ଅଭିମୁଖେ ଯାତ୍ରାରମ୍ଭ କରନ୍ତି । ସେତେବେଳେ ମହାପ୍ରଭୁଙ୍କ ସହିତ ଶ୍ରୀ ନିତ୍ୟାନନ୍ଦ ପ୍ରଭୁ, ପରମାନନ୍ଦ ପୁରୀ, ସ୍ୱରୂପ ଦାମୋଦର, ଜଗଦାନନ୍ଦ ପଣ୍ଡିତ, ମୁକୁନ୍ଦ, ଗୋବିନ୍ଦ ଦାସ, କାଶୀଶ୍ୱର, ହରିଦାସ ଠାକୁର, ବକ୍ରେଶ୍ୱର ପଣ୍ଡିତ, ଗୋପୀନାଥ ଆଚାର୍ଯ୍ୟ, ପଣ୍ଡିତ ଦାମୋଦର, ରାମାଇ, ନନ୍ଦାଇ ପ୍ରମୁଖ ଅଗଣିତ ପାର୍ଷଦବୃନ୍ଦ ସାଙ୍ଗରେ ଥିଲେ । ମହାପ୍ରଭୁ ଶ୍ରୀ ନିତ୍ୟାନନ୍ଦ ପ୍ରଭୁଙ୍କ ସହିତ ସଂକୀର୍ତ୍ତନ କରୁ କରୁ ସ୍ନାନ ଓ ତର୍ପଣାଦି ମାଧ୍ୟମରେ ପତିତତାରିଣୀ ଶ୍ରୀ ବିଷ୍ଣୁପାଦସମ୍ଭୂତା ଗଙ୍ଗାଦେବୀଙ୍କୁ ପୂଜା କରିବା ମାନସରେ ତା' ତୀରେ ତୀରେ ଅଗ୍ରସର ହେବାକୁ ଲାଗିଲେ । ଶ୍ରୀମନ୍ମହାପ୍ରଭୁଙ୍କର ପ୍ରେମବିଳାସ ଦର୍ଶନ କରି ପରମ ଭାଗ୍ୟବତୀ ଶ୍ରୀଗଙ୍ଗାଦେବୀ ମହାନନ୍ଦରେ ପରିପୂରିତ ହେଲେ ।

କବେ ହଇବେକ ମୋର ଯମୁନାର ଭାଗ୍ୟ ।
ନିରବଧି ଗଙ୍ଗା ଏଇ ବଲିତେନ ବାକ୍ୟ ।।
ଯଦ୍ୟପିଓ ଗଙ୍ଗା ଅଜ-ଭବାଦି ବନ୍ଦିତା ।
ତଥାପିଓ ଯମୁନାର ପଦ ସେ ବାଂଛିତା ।
ବାଞ୍ଛାକଳ୍ପତରୁ ପ୍ରଭୁ ଶ୍ରୀଗୌରସୁନ୍ଦର ।
ଜାହ୍ନବୀର ବାଞ୍ଛା ପୂର୍ଣ୍ଣ କରେ ନିରନ୍ତର ।

(ଶ୍ରୀ ଚୈ. ଭା. ଆଦି ୭ମ ଅଧ୍ୟାୟ)

ଏହିଭାବେ ଶ୍ରୀମନ୍ମହାପ୍ରଭୁ ଶ୍ରୀ ଗଙ୍ଗାଦେବୀଙ୍କର ବାଞ୍ଛିତ ଅଭିଳାଷ ପୂରଣକରି ଚାଲୁ ଚାଲୁ ପଥ ମଧ୍ୟରେ କୁମାରହଟ୍ଟ ଗ୍ରାମର ନାମ ଶୁଣି ନିତ୍ୟଲୀଳା ପ୍ରବିଷ୍ଟ ସ୍ୱୀୟ

ଅଭୀଷ୍ଟଦେବ ଜଗଦ୍‌ଗୁରୁ ଶ୍ରୀଳ ଈଶ୍ୱରପୁରୀ ପାଦଙ୍କର ସୁପବିତ୍ର ଆବିର୍ଭାବ ସ୍ଥାନର କଥା ସହସା ଅନ୍ତରରେ ଜାଗ୍ରତ ହେଲା । ସେତେବେଳେ ଶ୍ରୀପାଦଙ୍କର ପୁଣ୍ୟସ୍ମୃତି ବିଜଡ଼ିତ ପରମ ପବିତ୍ର ଜନ୍ମଭୂମି ଦର୍ଶନଲାଗି ଶ୍ରୀମନ୍ମହାପ୍ରଭୁ ଅତ୍ୟନ୍ତ ବ୍ୟଗ୍ରହୋଇ ପଡ଼ିଲେ । ସେଠାରେ ଶ୍ରୀଳ ପୁରୀପାଦଙ୍କ ଜନ୍ମଭିଟା ସନ୍ନିକଟରେ ଶ୍ରୀମନ୍ମହାପ୍ରଭୁଙ୍କ ସଂକୀର୍ତ୍ତନ-ରସବିଳାସର ଚରମ ରସାସ୍ୱାଦୀ ପରମଭକ୍ତଚୂଡ଼ାମଣି ଶ୍ରୀ ଶ୍ରୀବାସ ପଣ୍ଡିତ ଅବସ୍ଥାନ କରୁଥିଲେ ।

## "ଶ୍ରୀ ଚୈତନ୍ୟ ଡୋବା" ସୃଷ୍ଟିର କାହାଣୀ–

ରାଧାକୁଣ୍ଡ ଶ୍ୟାମକୁଣ୍ଡ ଦୋହେଁ ରାଧାକୃଷ୍ଣରୂପ ।
ଶ୍ରୀଚୈତନ୍ୟ ଡୋବାସ୍ଥିତ ଗୌଡ଼େ ଶ୍ରୀ ଗୌରସ୍ୱରୂପ ।।
ଦୁହିଁ ତନୁ ମିଳି ରସରାଜ ଶ୍ରୀ ଗୌରାଙ୍ଗ ରୂପ ।
ମହାଭାବମୟ ମୂର୍ତ୍ତି ଏଇ ଡୋବାର ସ୍ୱରୂପ ।।
ପ୍ରେମଦାନକାରୀ ଗୌର ପ୍ରେମମୟ ରୂପ ।
ତାହାଁର ପ୍ରତୀକ ଡୋବା ପ୍ରେମେର ସ୍ୱରୂପ ।।
ପ୍ରେମେତେ ଗଠିତ ଦୋବା ପ୍ରେମାଧାର ରୂପ ।
କଳି-ଜୀବ ତ୍ରାଣ ଲାଗି ଅକ୍ଷୟ ସ୍ୱରୂପ ।।

ଶ୍ରୀପାଦଙ୍କର ପୁଣ୍ୟ ସ୍ମୃତି ବିଜଡ଼ିତ ଜନ୍ମଭୂମି ଦର୍ଶନଲାଗି ଦ୍ରୁତପାଦରେ ବିପୁଳ ବ୍ୟାକୁଳତା ସହ, ସୁତୀବ୍ର ଉତ୍କଣ୍ଠାରେ ପ୍ରେମଭକ୍ତି ମୂର୍ତ୍ତିମନ୍ତ ପାର୍ଷଦମଣ୍ଡଳୀ ପରିବୃତ ହୋଇ ନୃତ୍ୟ-ଗୀତ-ସଂକୀର୍ତ୍ତନ କରୁ କରୁ ପ୍ରାତଃକାଳରେ କୁମାରହଟ୍ଟ ଗ୍ରାମରେ ବିରାଜିତ ସ୍ୱୀୟ ଦୀକ୍ଷା-ଗୁରୁଦେବ ଶ୍ରୀଳ ଈଶ୍ୱରପୁରୀ ପାଦଙ୍କର ପୁଣ୍ୟମୟ ଜନ୍ମଭୂମିରେ ପଦାର୍ପଣ କଲେ ।

ଏକଦିନ ପ୍ରଭୁ ତଥା କରିୟା ନିବାସ ।
ପ୍ରାତେ କୁମାରହଟ୍ଟେ ଆଇଲା ଯାହା ଶ୍ରୀନିବାସ ।।
(ଶ୍ରୀ ଚୈ. ଚ. ମଧ୍ୟ–୧୬ଶ ପରି.)

ଶ୍ରୀମନ୍ମହାପ୍ରଭୁ କୁମାରହଟ୍ଟରେ ପଦାର୍ପଣ କରି ଦୂରରୁ ଶ୍ରୀପାଦଙ୍କର ପୁଣ୍ୟମୟ ଜନ୍ମଭିଟା ଦର୍ଶନକରି ସାଷ୍ଟାଙ୍ଗ ପ୍ରଣିପାତ କଲେ । ଶ୍ରୀପାଦଙ୍କର ଜନ୍ମଭୂମିରେ ଉପନୀତ ହୋଇ ସ୍ୱୀୟ ଅଭୀଷ୍ଟଦେବଙ୍କର ବିୟୋଗ ତଥା ବୀରହଜନିତ ବିଚ୍ଛେଦରେ ପ୍ରେମାପ୍ଳୁତ ଓ ମୂର୍ଚ୍ଛିତ ହୋଇପଡ଼ିଲେ । ପରେ ସଂଜ୍ଞାଲାଭ କରି ସାଧାରଣ ଅବୋଧ ବାଳକ ପରି ଅଝଝରରେ ଅବିଶ୍ରାନ୍ତ କ୍ରନ୍ଦନ କରିବାକୁ ଲାଗିଲେ । ସେତେବେଳେ ତାଙ୍କ ନିକଟରେ

ଜଗତ୍ ଯେପରି ଶୂନ୍ୟମୟରୂପେ ପ୍ରତିଭାତ ହେବାକୁ ଲାଗିଲା । ପ୍ରେମାବେଶରେ ପ୍ରଚଣ୍ଡ ହୁଙ୍କାର-ଗର୍ଜନାଦି ଫଳରେ ବିଶ୍ୱ ସ୍ତମ୍ଭିତ ହୋଇଗଲା । ତ୍ରିଭୁବନ ତ୍ରାସରେ କମ୍ପିତ ହେବାକୁ ଲାଗିଲା । କ୍ରମେ ପ୍ରଭୁଙ୍କର ଶରୀରରେ ପୁଲକ-ବୈବର୍ଣ୍ଣାଦି ଅଷ୍ଟସାତ୍ତ୍ୱିକବିକାର ସହ ମହାଭାବର ବିକାଶ ଘଟିବାକୁ ଲାଗିଲା ।

ଶ୍ରୀଳ ଈଶ୍ୱରପୁରୀଙ୍କ ନ୍ୟାୟ ଅପୂର୍ବ ମହାମହିମାନ୍ୱିତ ପ୍ରେମିକ ପୁରୁଷଙ୍କୁ ଏହି "କୁମାରହଟ୍ଟ" ଗ୍ରାମ ବକ୍ଷରେ ଧାରଣ କରି ଧନ୍ୟ ହୋଇଥିଲା । ତେଣୁ ଶ୍ରୀପାଦଙ୍କର ଅବର୍ଣ୍ଣନୀୟ ମହିମାରେ ମହିମାନ୍ୱିତ କୁମାରହଟ୍ଟ ଗ୍ରାମର ମହତ୍ତ୍ୱ କୀର୍ତ୍ତନ କରୁ କରୁ ସର୍ବାଗ୍ରେ ଏହି ପୁଣ୍ୟମୟ ପବିତ୍ର ଜନ୍ମଭୂମିଟିକୁ ପରମାଗ୍ରହ ସହିତ ସ୍ତୁତି-ନତି କରିବାକୁ ଲାଗିଲେ ।

ଆପନେ ଈଶ୍ୱର ଶ୍ରୀଚୈତନ୍ୟ ଭଗବାନ ।
ଦେଖିଲେନ ଈଶ୍ୱରପୁରୀର ଜନ୍ମସ୍ଥାନ ।
ପ୍ରଭୁ ବଲେନ ଏଇ କୁମାର ହଟ୍ଟେରେ ନମସ୍କାର ।
ଈଶ୍ୱରପୁରୀର ଯେଇ ଗ୍ରାମେ ଅବତାର ।।
କାନ୍ଦିଲେନ ବିସ୍ତର ଚୈତନ୍ୟ ସେଇ ସ୍ଥାନେ ।
ଆର କିଛୁ ଶବ୍ଦ ନାଇ ଈଶ୍ୱର ପୁରୀ ବିନେ ।।
(ଶ୍ରୀ ଚୈ. ଭ. ଆଦି-୧୫ଶ ଅଧ୍ୟାୟ)

ଧନ୍ୟ ଏହି କୁମାରହଟ୍ଟ ଗ୍ରାମ ! ଯେଉଁ ଗ୍ରାମରେ ଜଙ୍ଗମପ୍ରେମକଳ୍ପତରୁସମ ଅପାର ମହିମାନ୍ୱିତ ଶ୍ରୀପାଦ ଈଶ୍ୱରପୁରୀଙ୍କର ଶୁଭ-ଆବିର୍ଭାବ ସୂଚିତ ହୋଇଥିଲା । ଏହି ସ୍ଥାନରେ ଆବିର୍ଭୂତ ହୋଇ ଏହି ଗ୍ରାମର ଜଳବାୟୁର ଅଣୁପରମାଣୁରେ ବର୍ଦ୍ଧିତ ହୋଇ ବାଲ୍ୟଲୀଳା ଖେଳା ରସରେ ଏହି ଭୂମିରେ ଗଡ଼ାଗଡ଼ି ଦେଇଥିଲେ । ତାଙ୍କ ଶ୍ରୀଅଙ୍ଗସ୍ପୃଷ୍ଟ ସୁପବିତ୍ର ମୃତ୍ତିକାରେ ତାଙ୍କର ଶ୍ରୀଚରଣରେଣୁ ଆଜି ମଧ୍ୟ ବର୍ତ୍ତମାନ ରହିଛି ଏବଂ ତାଙ୍କର ଅବିନଶ୍ୱର ମହିମାରାଶିର ସାକ୍ଷ୍ୟ ବହନ କରୁଛି । ଯେଉଁ ଦିଗକୁ ଦୃଷ୍ଟିଦାନ କରନ୍ତି, ସେହି ଦିଗରେ କେବଳ ମାତ୍ର ଶ୍ରୀପାଦଙ୍କର ମହିମାର ଗୁଣକୀର୍ତ୍ତନ କର୍ଣ୍ଣକୁହରରେ ପ୍ରବେଶ କରିଥାଏ । ଏପରି କି ବୃକ୍ଷ ଗୁଳ୍ମଲତାଦି ପର୍ଯ୍ୟନ୍ତ ସମସ୍ତେ ଏକାନ୍ତ ଭାବେ ସ୍ୱତଃସ୍ଫୂର୍ତ୍ତ ମହାନନ୍ଦରେ ଶ୍ରୀପାଦଙ୍କର ମହିମାରାଶି ବର୍ଣ୍ଣନରେ ମୁଖର ଏବଂ ସେମାନେ ଆଜି ଶ୍ରୀମନ୍ମହାପ୍ରଭୁଙ୍କର ଇଷ୍ଟବିରହ ସଙ୍ଗେ ସଙ୍ଗେ ବିରହବିଧୁର । ସପାର୍ଷଦ ଶ୍ରୀମନ୍ମହାପ୍ରଭୁଙ୍କର ଇଷ୍ଟବିଚ୍ଛେଦଜନିତ କ୍ରନ୍ଦନ ସଙ୍ଗେ ସଙ୍ଗେ ଆବ୍ରହ୍ମସ୍ତମ୍ଭ ପର୍ଯ୍ୟନ୍ତ ସମସ୍ତେ ଶ୍ରୀପାଦଙ୍କର ବିଚ୍ଛେଦ ବିରହରେ ବିରହାନ୍ୱିତ ଓ କ୍ରନ୍ଦନରତ । ଏ ପ୍ରକାର ଶୋକାକୁଳ ପରିବେଶ ମଧ୍ୟରେ ବିରାଜମାନ ଶ୍ରୀମନ୍ମହାପ୍ରଭୁ ଶ୍ରୀଗୁରୁଙ୍କ ବିରହରେ ଆଉ ସ୍ଥିର ରହିପାରିଲେ ନାହିଁ । ଅସହାୟ ଶିଶୁସୁଲଭ ଭାବେ "ହା ଗୁରୁଦେବ !"

"ହା ଗୁରୁଦେବ !" କହି ଉଚ୍ଚୈଃସ୍ୱରରେ କ୍ରନ୍ଦନରତାବସ୍ଥାରେ ବିପ୍ରଲମ୍ଭା ବେଶରେ ଉନ୍ମତ୍ତପ୍ରାୟ ସେହି ପରମ ପବିତ୍ର ଜନ୍ମଭୂମିର ପୁଣ୍ୟପୀଠରେ ପ୍ରପତିତ ହୋଇ ଗଡ଼ାଗଡ଼ି ହେବାକୁ ଲାଗିଲେ । ସଙ୍ଗରେ ଥିବା ପ୍ରେମଭକ୍ତି ମୂର୍ତ୍ତିମନ୍ତ ବୈଷ୍ଣବଗଣ ପ୍ରଭୁଙ୍କର ବିରହଭାବର ସମଭାଗୀ ହୋଇ ପ୍ରେମାବେଶରେ ଉଚ୍ଚୈଃସ୍ୱରରେ ସୁମଧୁର ଶ୍ରୀକୃଷ୍ଣସଂକୀର୍ତ୍ତନ କରିବାକୁ ଲାଗିଲେ । ସେମାନଙ୍କ ମଧ୍ୟରେ ଧୂଳିରେ ଧୂସରିତ ମହାପ୍ରଭୁ ପ୍ରମତ୍ତ ମୂର୍ତ୍ତିରେ କୀର୍ତ୍ତନ-ନର୍ତ୍ତନ କରିବାକୁ ଲାଗଲେ । ଏହି ଅପୂର୍ବ ବିରହ ବିଳାସ ବ୍ରହ୍ମାଦି ଦେବଗଣ ଅନ୍ତରୀକ୍ଷରେ ଅବସ୍ଥାନ କରି ନିରୀକ୍ଷଣ କରିବାକୁ ଲାଗିଲେ ଏବଂ ନିଜକୁ ଚିର କୃତାର୍ଥ ଓ ପୂର୍ଣ୍ଣମନସ୍କାମ ମନେ କରିବାକୁ ଲାଗିଲେ । ସ୍ୱର୍ଗରୁ ମହାନନ୍ଦରେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । କୁମାରହଟ୍ଟବାସୀଗଣ ମଧ୍ୟ ଏହି ଇଷ୍ଟ-ବିରହ-ବିଳାସ ସନ୍ଦର୍ଶନ କରି ଜୀବନ ଧନ୍ୟ ଓ ନୟନ ସାର୍ଥକ କଲେ । ସେତେବେଳେ ମହାପ୍ରଭୁ ଶ୍ରୀପାଦଙ୍କର ଅଭୟାଚରଣ ସ୍ପୃଷ୍ଟ ମୃତ୍ତିକାର ସ୍ତୁତି କରି କହିଲେ—

ପ୍ରଭୁ ବଲେ ଈଶ୍ୱରପୁରୀର ଜନ୍ମସ୍ଥାନ ।
ଏ ମୃତ୍ତିକା ଆମାର ଜୀବନ ଧନ ପ୍ରାଣ ॥
(ଶ୍ରୀ ଚୈ, ଭ. ଆଦି-୧୫ଶ ଅ)

ଏ ପ୍ରକାରେ ଶ୍ରୀପାଦଙ୍କର ଜନ୍ମଭିଟାସ୍ଥିତ ତଦୀୟ ଶ୍ରୀଚରଣ ସ୍ପୃଷ୍ଟ ମୃତ୍ତିକାର ସ୍ତୁତିନତି କରି ଉକ୍ତ ସ୍ଥାନରୁ କିଞ୍ଚିତ ମୃତ୍ତିକା ଗ୍ରହଣ କରି ସର୍ବାଙ୍ଗରେ ତିଳକ ଧାରଣ କରିଲେ ଓ କିଞ୍ଚିତ ଭକ୍ଷଣ ମଧ୍ୟ କଲେ । ପରିଶେଷରେ ନିଜ ପରିଧେୟ ବହିର୍ବାସରେ ଝୁଲାଏ ଧୂଳି ବା ମୃତ୍ତିକା ସେହି ସ୍ଥାନରୁ ଗ୍ରହଣପୂର୍ବକ ବାନ୍ଧିରଖିଲେ ଏବଂ ନିତ୍ୟ ନୈମିତ୍ତିକ ଗ୍ରହଣ ଲାଗି ଅତ୍ୟନ୍ତ ଯତ୍ନ ସହକାରେ ସ୍ୱସମୀପରେ ସଞ୍ଚିତ କରି ରଖିଲେ ।

ସେ ସ୍ଥାନେର ମୃତ୍ତିକା ଆପନେ ପ୍ରଭୁ ତୁଲି ।
ଲଇଲେନ ବହିର୍ବାସେ ବାନ୍ଧି ଏକ ଝୁଲି ॥
(ଶ୍ରୀ ଚୈ, ଭ. ଆଦି-୧୫ ଶ ଅଧ୍ୟାୟ)

ଶ୍ରୀଗୁରୁପ୍ରିୟ ଗୌରଙ୍କର ଏ ପ୍ରକାର ଅଦ୍ଭୁତପୂର୍ବ ପ୍ରେମ ବିଳାସ ଓ ବିରହ ବିଳାସଲୀଳାର ପ୍ରକାଶ ଦେଖି ତଦୀୟ ଅନୁଗାମୀ ଅନ୍ତରଙ୍ଗ ପାର୍ଷଦବୃନ୍ଦ ଅନ୍ତରରେ ଉପଲବ୍ଧି କଲେ ଯେ, "ଜୀବର ଏକମାତ୍ର ଆରାଧ୍ୟ ଦେବତା ସର୍ବେଶ୍ୱର ପ୍ରଭୁ ଶ୍ରୀକୃଷ୍ଣ ଶ୍ରୀଧାମ ବୃନ୍ଦାବନ ମର୍ତ୍ତ୍ୟରେ ଆବିର୍ଭୂତ ହୋଇ ଗୋପ-ଗୋପୀଗଣଙ୍କ ସହିତ ଚିର ଶାଶ୍ୱତ ବିଶୁଦ୍ଧ ମାଧୁର୍ଯ୍ୟପୂର୍ଣ୍ଣ ପ୍ରେମବିଳାସ କରୁଛନ୍ତି; ସେହି ମହାମହିମାନ୍ୱିତ

ଶ୍ରୀ ବୃନ୍ଦାବନର ପବିତ୍ର ରଜଃରାଶିରେ ଗଡ଼ାଗଡ଼ି ଦେଇଛନ୍ତି ଓ ଭକ୍ଷଣ କରିଛନ୍ତି ସତ; କିନ୍ତୁ ଏ ପ୍ରକାର 'ମମ ଜୀବନ ଧନ ପ୍ରାଣ' ବୋଲି ସ୍ତୁତି କରି ମୃତ୍ତିକା ଗ୍ରହଣ କରିନାହାନ୍ତି । ଏପରି କି, ଶ୍ରୀକୃଷ୍ଣଙ୍କର ଯେତେ ଲୀଳାଭୂମି ମହୀତଳରେ ବିରାଜମାନ ରହିଛି, ସେଗୁଡ଼ିକ ମଧ୍ୟରେ ଅଧିକ ଗୁରୁତ୍ୱପୂର୍ଣ୍ଣ ରୂପେ ଶ୍ରୀଳ ଈଶ୍ୱରପୁରୀପାଦଙ୍କର ପାଦସ୍ପୃଷ୍ଟ ପୂତ ଜନ୍ମଭୂମି କୁମାରହଟ୍ଟ ଗ୍ରାମର ରଜଃରାଶିର ପବିତ୍ରତା ପ୍ରକାଶ କରିଛନ୍ତି । ଏ ପ୍ରକାର ଅପାର ମହିମାମଣ୍ଡିତ ରଜଃରାଶି ତ୍ରିଭୁବନରେ ସୁଦୁର୍ଲ୍ଲଭ । ଯେଉଁ ରଜକୁ ମହାପ୍ରଭୁ "ମମ ଜୀବନଧନ ପ୍ରାଣ" ଅର୍ଥାତ ମୋର ଜୀବନର ଏକମାତ୍ର ସମ୍ବଳ ଓ ଅବଲମ୍ବନ, ଯାହା ବ୍ୟତୀତ ମୋର ଅନ୍ୟଗତି ନାହିଁ–ଏହା କହି ପ୍ରଗାଢ଼ ଅନୁରାଗର ସହିତ ଗ୍ରହଣ କରିଅଛନ୍ତି । ଏ ପ୍ରକାର ସୁଦୁର୍ଲଭ ରଜରାଶି ଶ୍ରୀମନ୍ମହାପ୍ରଭୁଙ୍କୁ ଗ୍ରହଣ କରିବାକୁ ଦେଖି ତାଙ୍କର ଅନୁଗାମୀ ପାର୍ଷଦବୃନ୍ଦ ପ୍ରେମାନନ୍ଦରେ ପରମାଗ୍ରହ ସହିତ ଜଗନ୍ମଙ୍ଗଳ ଶ୍ରୀହରିନାମ ସଂକୀର୍ତ୍ତନ କରୁ କରୁ ଗୋଟିଏ ଗୋଟିଏ ଝୁଲି ମୃତ୍ତିକା ଗ୍ରହଣ କରିବାକୁ ଲାଗିଲେ । ଶ୍ରୀମନ୍ମହାପ୍ରଭୁଙ୍କର ଏହି ଅତ୍ୟାଶ୍ଚର୍ଯ୍ୟ ପ୍ରେମଭକ୍ତି ବିଳାସର ଆଦର୍ଶ ସ୍ଥାପନ ସନ୍ଦର୍ଶନ କରି କୃତାର୍ଥତା ଉପଲବ୍ଧି ପ୍ରତ୍ୟାଶାରେ ସମାଗତ ଲକ୍ଷ ଲକ୍ଷ ଭକ୍ତ ଓ ଅନୁରକ୍ତ ବିପୁଳ ପୁଲକରେ ଉକ୍ତ ସ୍ଥାନର ମୃତ୍ତିକା ଆହରଣ କରିବାକୁ ଲାଗିଲେ । ଏପ୍ରକାରେ ମହାପ୍ରଭୁଙ୍କର ଅନୁସରଣରେ ତଦୀୟ କୃପାଭିଳାଷୀ ଭକ୍ତବୃନ୍ଦ ପ୍ରତ୍ୟେକ ହିଁ ଏହିଁ ଅପାର ମହିମାମଣ୍ଡିତ ବ୍ରହ୍ମାଦିଦେବତାକାଂକ୍ଷିତ ଶ୍ରୀପାଦଙ୍କର ଶୁଭ ଜନ୍ମଭୂମିର ପଦରଜସ୍ୱରୂପ ସୁପବିତ୍ର ମୃତ୍ତିକା ଗ୍ରହଣ ଫଳରେ ଉକ୍ତ ସ୍ଥାନଟି ଗୋଟିଏ ଗର୍ତ୍ତାକାର ଧାରଣ କଲା । ସେହି ଗର୍ତ୍ତ ବା ଡ଼ୋବା ଅଦ୍ୟାପି 'ଶ୍ରୀଚୈତନ୍ୟ ଡ଼ୋବା' ନାମରେ ସୁପ୍ରସିଦ୍ଧ ହୋଇ ସର୍ବଜୟୀ କାଳର ଅପରିମେୟ ପରିବର୍ତ୍ତନର ମଧ୍ୟରେ ବି ଏ ଯାବତ୍‌କାଳ ଅବିସ୍ମରଣୀୟ ନାମ ଧାରଣ କରି ସ୍ୱମହିମାରେ ସୁବିରାଜମାନ ଅବସ୍ଥାରେ ପ୍ରଭୁଙ୍କର ଅସମୋର୍ଦ୍ଧ୍ୱ ପ୍ରେମଭକ୍ତି ବିଳାସର ବାର୍ତ୍ତା ଓ ଶ୍ରୀପାଦଙ୍କର ଅତ୍ୟୁଜ୍ଜ୍ୱଳ ମହିମା ଚିରଭାସ୍ୱର ସ୍ୱରୂପରେ ଉଦାତ୍ତ ଘୋଷଣା କରୁଛି । ଏହି ଭାବରେ ଇଷ୍ଟବିରହ ବିଧୁର ଶ୍ରୀମନ୍ମହାପ୍ରଭୁଙ୍କର ପ୍ରେମବିଳାସ ସହିତ ଭାବାବେଶରେ ଏକୁ ଚିରସ୍ମରଣୀୟ ଅକ୍ଷୟ ସ୍ୱାକ୍ଷର ସ୍ୱରୂପ 'ଶ୍ରୀକୁଣ୍ଡ' ସୃଷ୍ଟି ଫଳରେ ମହାପ୍ରଭୁ ଏପ୍ରକାର ବିରହପୂର୍ଣ୍ଣ ପରିସ୍ଥିତି ମଧ୍ୟରେ କିଞ୍ଚିତ ଚିତ୍ତପ୍ରଶାନ୍ତିପ୍ରଦ ଆନନ୍ଦର ଭାବପ୍ରକାଶ କଲେ । କାରଣ ମୋର ହିଁ ଅଭୀଷ୍ଟ ଅର୍ଥାତ୍ ଯାହାଙ୍କର ଅପରିମେୟ ମହିମାରେ ପ୍ରଲୁବ୍ଧ ହୋଇ ମୁଁ ଯାହାଙ୍କୁ ଶ୍ରୀଗୁରୁରୂପେ ବରଣ କରି ଓ ଯାହାଙ୍କର ବିୟୋଗ ବ୍ୟଥାରେ ଆଜି ସୁଦୁସ୍ତର ବିରହ-ସାଗରରେ ପତିତ ହୋଇଛି; ସେହି ମହାପ୍ରେମିକ ଭକ୍ତଶିରୋମଣି ଶ୍ରୀପାଦଙ୍କର ଅଚିନ୍ତ୍ୟ ଗୁଣରାଜି ଶାଶ୍ୱତ ବସ୍ତୁରୂପେ ତ୍ରିଭୁବନରେ ଆବହମାନକାଳ ଧରି ବିଘୋଷିତ ହେବାର ଚିରନ୍ତନ ପ୍ରତୀକ ଗୋଟିଏ 'ଡ଼ୋବା' ସୃଷ୍ଟ ହେଲା ।

ପରେ ଶ୍ରୀ ମନ୍ମହାପ୍ରଭୁ ପାର୍ଷଦ-ମଣ୍ଡଳୀ ସହିତ ଉଚ୍ଚୈଃସ୍ୱରରେ ସୁମଧୁର କୃଷ୍ଣନାମ ସଂକୀର୍ତ୍ତନ କରୁ କରୁ ଶ୍ରୀକୁଣ୍ଡ ପରିକ୍ରମା କଲେ। ପ୍ରେମାବିଷ୍ଟ ଚିତ୍ତରେ ପ୍ରଭୁଙ୍କର ନୟନଯୁଗଳରୁ ଅବିଶ୍ରାନ୍ତ ଅଶ୍ରୁଧାର ଗଙ୍ଗାଧାରନ୍ୟାୟ ପୂତ-ପ୍ରେମବାରିରେ ରୂପାନ୍ତରିତ ହେଲା । ଶ୍ରୀପାଦଙ୍କର ଅତ୍ୟୁଜ୍ଜ୍ୱଳ ମହିମାର ସ୍ୱାକ୍ଷରବହନକାରୀ ସପାର୍ଷଦ ମହାପ୍ରଭୁଙ୍କର ପ୍ରେମବାରି ପରମୋଜ୍ଜ୍ୱଳ ପ୍ରତୀକ ଶ୍ରୀକୁଣ୍ଡର ଐତିହ୍ୟର ପ୍ରଗାଢ଼ତାର କାରଣରେ ମହାପ୍ରଭୁଙ୍କର ଇଚ୍ଛାଶକ୍ତି ପ୍ରଭବରେ କୁମାରହଟ୍ଟବାସୀ ଜନଗଣଙ୍କର ପ୍ରେମାଶ୍ରୁବାରି ଏକତ୍ର ସମ୍ମିଶ୍ରିତ ହୋଇ ଅତୀବ ଦ୍ରୁତଗତିରେ ତରଙ୍ଗଭଙ୍ଗରେ ଶ୍ରୀକୁଣ୍ଡରେ ଆସି ବିଲୀନ ହେଲା । ପ୍ରେମମୟଙ୍କର ପ୍ରେମବାରି ଶ୍ରୀକୁଣ୍ଡରେ ପତିତହୋଇ ପ୍ରେମଜଳରେ ପରିପୂର୍ଣ୍ଣ ହେଲା । କଳିଜୀବର ଏକମାତ୍ର ପରମକଲ୍ୟାଣକାମୀ ଶ୍ରୀମନ୍ମହାପ୍ରଭୁ ଶ୍ରୀପାଦଙ୍କର ମହିମାରାଶି ବିଶ୍ୱବନ୍ଦିତ ବସ୍ତୁରୂପେ ବିଘୋଷିତ କରିବା ଅଭିପ୍ରାୟରେ ତଥା ତ୍ରିତାପ ଜ୍ୱାଳାରେ ଜର୍ଜରିତ ଜୀବନିବହର ପରିତ୍ରାଣାର୍ଥେ ଏହି ପ୍ରେମବିଳାସର ଅପୂର୍ବ ବୈଭବ ସ୍ୱରୂପ ପ୍ରେମଭକ୍ତିପ୍ରଦାନ ସାମର୍ଥ୍ୟାଧିକାରୀ "ଶ୍ରୀଚୈତନ୍ୟ ଡୋବା"ର ନାମ ତ୍ରିଭୁବନରେ ତ୍ରିକାଳସତ୍ୟ କୀର୍ତ୍ତିସରସୀ ସ୍ୱରୂପ କୀର୍ତ୍ତିତ ହେଉଥିବ ।

ଶ୍ରୀଗୁରୁଦେବଙ୍କୁ କି ପ୍ରକାରେ ଆନ୍ତରିକତାର ସହିତ ଶ୍ରଦ୍ଧା ଓ ଭଲ ପାଇବାକୁ ହୁଏ, ଶ୍ରୀଗୁରୁ ମହିମା କେତେଟା ଶୀର୍ଷସ୍ଥାନୀୟ ଓ ଶ୍ରୀଗୁରୁବିରହ କେତେଟା ମର୍ମାନ୍ତିକ ଓ ନିଦାରୁଣ, ତାହା ନିଜ ଆଚରଣ ମାଧ୍ୟମରେ ଜଗଜ୍ଜୀବଙ୍କୁ ସେ ଶିକ୍ଷାଦେଇ ଯାଇଛନ୍ତି । ଅପ୍ରକଟଲୀଳାରେ ଆଜି ମଧ୍ୟ ଶ୍ରୀଗୌରହରିଙ୍କର ଶ୍ରୀଗୁରୁସେବାର ଓ ଶ୍ରୀଗୁରୁଙ୍କ ପ୍ରତି ଆନୁଗତ୍ୟ ଓ ଅନୁରକ୍ତି ବୃକ୍ଷ-ଗୁଳ୍ମ-ଲତାଦି ମଧ୍ୟରେ ସୁଦୂର ଅତୀତ ଦିନର ସାକ୍ଷ୍ୟବହନ କରୁଛି ।

ଭକ୍ତଙ୍କର ମହିମା କୀର୍ତ୍ତନ ହିଁ ଭଗବାନଙ୍କର ଭଗବତ୍ତ୍ୱ । ଶ୍ରୀବିଷ୍ଣୁ ପୁରାଣରେ ଦେବୀଙ୍କ ପ୍ରତି ଶିବବାକ୍ୟ—

ଆରାଧନାନାଂ ସର୍ବେଷାଂ
ବିଷ୍ଣୋରାରାଧନଂ ପରମ ।
ତସ୍ମାତ୍ ପରତରଂ ଦେବି
ତଦୀୟାନାଂ ସମର୍ଚ୍ଚନମ୍ ॥

ଶ୍ରୀ ଚୈତନ୍ୟ ଭାଗବତରେ ସ୍ୱୟଂ ଶ୍ରୀମନ୍ମହାପ୍ରଭୁଙ୍କର ଶ୍ରୀମୁଖୋକ୍ତି—

ଆମାର ଭକ୍ତେର ପୂଜା ଆମା ହୈତେ ବଡ଼ ।
ସେଇ ପ୍ରଭୁ ବେଦେ ଭାଗବତେ କୈଲ ଦୃଢ଼ ॥

ଶ୍ରୀମଦ୍ ଭାଗବତରେ ପରୀକ୍ଷିତ ମହାରାଜାଙ୍କ ପ୍ରତି ଶ୍ରୀସୌନକଙ୍କର ଉକ୍ତି—

ତତ୍କଥ୍ୟତାଂ ମହାଭାଗ, ଯଦି କୃଷ୍ଣକଥାଶ୍ରୟମ ।
ଅଥବାସ୍ୟ ପଦାମ୍ଭୋଜମକରନ୍ଦଲିହାଂ ସତୀମ୍ ।।
କିମନ୍ୟୈ ରସଦାଲାପୈରାୟୁଷୋ ଯଦ ସଦ୍‌ବ୍ୟୟଃ ।
କ୍ଷୁଦ୍ରାୟୁଷାଂ ନୃଣାମଂଗ ମର୍ତ୍ତ୍ୟାନାମୃତମିଚ୍ଛତାମ୍ ।।

(ଭା. ୧·୧୬, ୬·୭)

ଅର୍ଥାତ ହେ ମହାଭାଗ ! ବର୍ତ୍ତମାନ କଳିର ପାପାଗ୍ରରର କଥା ଆଉ ଶୁଣିବାର ପ୍ରୟୋଜନ ନାହିଁ । ସେହି କଳିନିଗ୍ରହ କଥା ବର୍ଣ୍ଣନା କରନ୍ତୁ, ଯଦି ତାହା କୃଷ୍ଣକଥାଶ୍ରିତ ହୁଏ । ଅଥବା ଶ୍ରୀକୃଷ୍ଣଙ୍କ ଉ ଶ୍ରୀଚରଣ ଯୁଗଳର ମକରନ୍ଦ ପାନମତ୍ତ ସାଧୁ ମହଦଗଣଙ୍କ କଥାଶ୍ରିତ ହୁଏ । ଅନ୍ୟଥା, ହେ ଅଂଗ ! ଅଳ୍ପାୟୁ ମରଣଶୀଳ ଅଥଚ ସତ୍ୟ—ମୋକ୍ଷ ବା ପରମ ସତ୍ୟ—ଅମୃତ ଶ୍ରୀଭଗବଚ୍ଚରଣାଭିଳାଷୀ ମନୁଷ୍ୟଗଣଙ୍କ ପକ୍ଷରେ ଅନ୍ୟ ଅସଦବାର୍ତ୍ତାର କି ପ୍ରୟୋଜନ ? ଯଦ୍ଦ୍ୱାର ପରମାୟୁର ବୃଥା ଅପବ୍ୟୟ ହୁଏ ।

ଶ୍ରୀହରି ଭକ୍ତିବିଳାସ—୧୦।୪୨୫—୨୬—

ଶ୍ରୋତବ୍ୟଂ ସାଧୁଚରିତଂ ଯଶୋଧର୍ମଜୟାର୍ଥିଭିଃ ।
ପାପକ୍ଷୟାର୍ଥଂ ଦେବର୍ଷେ ! ସ୍ୱର୍ଗାର୍ଥଂ ଧର୍ମବୁଦ୍ଧିଭିଃ ।।
ଆୟୁଷ୍ୟମାରୋଗ୍ୟ କରଂ ଯଶସ୍ୟଂ ପୁଣ୍ୟ ବର୍ଦ୍ଧନମ୍ ।
ଚରିତଂ ବୈଷ୍ଣବଂ ନିତ୍ୟଂ ଶ୍ରୋତବ୍ୟଂ ସାଧୁବୁଦ୍ଧିନା ।।

ଇହଲୋକର ଯେତେ କିଛି ମଂଗଳ, ଯଶ, ଧର୍ମ, ଜୟ, ପାପକ୍ଷୟ. ଦୀର୍ଘାୟୁ, ଆରୋଗ୍ୟ, ପରଲୋକ ପାଇଁ ପୁଣ୍ୟ ଓ ସ୍ୱର୍ଗାଭିଳାଷୀ ବ୍ୟକ୍ତିଗଣଙ୍କ ପକ୍ଷରେ ମଧ୍ୟ ସାଧୁ·ବୈଷ୍ଣବଗଣଙ୍କର ଚରିତ୍ର ଶ୍ରବଣ ଏକାନ୍ତ କର୍ତ୍ତବ୍ୟ ।

ତସ୍ମାତ୍ ମଯ୍ୟର୍ପିତା ଶେଷକ୍ରିୟାର୍ଥାତ୍ମା ନିରନ୍ତରଃ ।
ମଯ୍ୟର୍ପିତାତ୍ମାନଃ ପଂସୋ ମୟି ସଂନ୍ୟସ୍ତ କର୍ମଣଃ ।।
ନ ପଶ୍ୟାମି ପରଂ ଭୂତମକର୍ତ୍ତୁଃ ସମଦର୍ଶନାତ ।।

(ଭା. ୨୯ଶ)

ଶ୍ରୀଲ କବିରଜ ଗୋସ୍ୱାମୀ ଏହାର ହିଁ ପ୍ରତିଧ୍ୱନି କରି କହିଛନ୍ତି–

ଏଇମତ ବ୍ରହ୍ମାଣ୍ଡଭରି ଅନନ୍ତ ଜୀବଗଣ ।
ଚୌରଶୀଲକ୍ଷ ଯୋନିତେ କରୟେ ଭ୍ରମଣ ।।
ତାର ମଧ୍ୟେ 'ସ୍ଥାବର' 'ଜଂଗମ' ଦୁଇ ଭେଦ ।
ଜଂଗମେ ତିର୍ଯ୍ୟକ୍ ଜଲ-ସ୍ଥଲଚର ବିଭେଦ ।।
ତାର ମଧ୍ୟେ ମନୁଷ୍ୟଜାତି ଅତି ଅଳ୍ପତର ।
ତାର ମଧ୍ୟେ ମ୍ଲେଚ୍ଛ ପୁଲିନ୍ଦ, ବୌଦ୍ଧ, ଶବର ।।
ବେଦନିଷ୍ଠ ମଧ୍ୟେ ଅର୍ଦ୍ଧେକ ବେଦ ମୁଖେ ମାନେ ।
ବେଦନିଷିଦ୍ଧ ପାପ କରେ ଧର୍ମ ନାହି ଗଣେ ।।
ଧର୍ମାଚାରୀ ମଧ୍ୟେ ବହୁତ କର୍ମନିଷ୍ଠ ।
କୋଟି କର୍ମନିଷ୍ଠ ମଧ୍ୟେ ଏକ ଜ୍ଞାନୀ ଶ୍ରେଷ୍ଠ ।।
କୋଟିଜ୍ଞାନୀ ମଧ୍ୟେ ହୟ ଏକଜନ ମୁକ୍ତ ।
କୋଟିମୁକ୍ତ ମଧ୍ୟେ ଦୁର୍ଲଭ ଏକ କୃଷ୍ଣଭକ୍ତ ।।
କୃଷ୍ଣଭକ୍ତ ନିଷ୍କାମ, ଅତଏବ ଶାନ୍ତ ।
ଭୁକ୍ତିମୁକ୍ତି ସିଦ୍ଧିକାମୀ ସକଲି ଅଶାନ୍ତ ।।

(ଶ୍ରୀଚୈତନ୍ୟ ଚରିତାମୃତ)

ଚୈତନ୍ୟଚନ୍ଦ୍ର ଚରିତାମୃତ ସୁଦ୍ଧସିନ୍ଧୁ ବନ୍ଦାବନୀୟସୁର ସୋର୍ମି ସମୁନିମଗ୍ନାଃ ।
ଯେ ବୈ ଜଗନ୍ନିଜଗୁଣୈଃ ସ୍ୱୟମାପୁନାନ୍ତି ତାନ୍ ବୈଷ୍ଣବାଞ୍ଚ ହରିନାମପରନ୍ ନମାମି ।
ତେଭ୍ୟୋ ନମୋଽସ୍ତୁ ଭବବାରିଧି ଜୀର୍ଣ୍ଣପଙ୍କ ସଂମଗ୍ନ ମୋକ୍ଷଣବିଚକ୍ଷଣ ପାଦୁକେଭ୍ୟଃ ।
କୃଷ୍ଣେତି ବର୍ଣ୍ଣଯୁଗଳ ଶ୍ରବଣେନ ଯେଷାଂ ଆନନ୍ଦଥୁର୍ଭବାତି ନାର୍ତିର୍ତରୋମବୃନ୍ଦଃ ।।

ଗୁରବେ ଗୌରଚନ୍ଦ୍ରାୟ ରାଧିକାୟେ ତଦାଳୟେ ।
କୃଷ୍ଣାୟ କୃଷ୍ଣଭକ୍ତାୟ ତଦ୍‌ଭକ୍ତାୟ ନମୋନମଃ ।।

।। ଇତି ଦଶମ ବୈଭବ ।।

# ଏକାଦଶ ବୈଭବ

ମହାତୀର୍ଥ ଶ୍ରୀରେମୁଣାର ମହାସଙ୍ଗମରେ ସମାଗତ ତୀର୍ଥଯାତ୍ରୀଗଣଙ୍କ ମଧ୍ୟରେ ପ୍ରଥମ ପ୍ରେମଭକ୍ତି କଳ୍ପତରୁର ପ୍ରଥମ ଅଙ୍କୁର ପରମ ବିରକ୍ତ ସନ୍ନ୍ୟାସୀ ଜଗଦାଦି ଗୁରୁଙ୍କର ଗୁରୁ ଆଚାର୍ଯ୍ୟବର୍ଯ୍ୟ ଶ୍ରୀଳ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀପାଦ, ଯାହାଙ୍କର ଶ୍ରୀରେମୁଣା ଆଗମନରେ ଓ ଶ୍ରୀଗୋପୀନାଥ ବିଗ୍ରହ ଦର୍ଶନରେ ଦର୍ଶକ ଓ ଦର୍ଶନୀୟ ଉଭୟଙ୍କର ଅର୍ଥାତ୍ ଭକ୍ତ ଭଗବାନଙ୍କର ମହାତ୍ମ୍ୟ ବର୍ଦ୍ଧନ ମାଧ୍ୟମରେ ଶ୍ରୀଧାମ ରେମୁଣାର ରମଣୀୟତ୍ୱ ଓ ମହତ୍ତ୍ୱ ନିଖିଳ ବିଶ୍ୱରେ ବିସ୍ତୃତି ଲାଭ କଲା ।

ଦ୍ୱିତୀୟତଃ ଶ୍ରୀପାଦ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀଙ୍କର ଏକାନ୍ତ ଅନୁଗତ ନିତ୍ୟସେବକ ଶିଷ୍ୟ ଶ୍ରୀପାଦ ଈଶ୍ୱରପୁରୀ, ଯେ କି ଜଗଦଗୁରୁ ଶ୍ରୀମନ୍ମହାପ୍ରଭୁଙ୍କର ଦୀକ୍ଷାଗୁରୁ । —

"ଶ୍ରୀଈଶ୍ୱର ପୁରୀ ରୂପେ ଅଙ୍କୁର ପୁଷ୍ଟ ହୈଲ ।"

ତୃତୀୟତଃ ଜଗତର ପରମ ପରତତ୍ତ୍ୱ ଷଡ଼ୈଶ୍ୱର୍ଯ୍ୟଶାଳୀ ପୂର୍ଣ୍ଣତମ ଭଗବାନ୍ ଶ୍ରୀମନ୍ମହାପ୍ରଭୁ ଗୌରସୁନ୍ଦର, ଯେ ଭକ୍ତ ଭଗବାନ ଓ ତୀର୍ଥ ସମୂହର ମହତ୍ତ୍ୱଜ୍ଞାପନ ପାଇଁ ପୂର୍ବ, ଦକ୍ଷିଣ, ପଶ୍ଚିମ ଓ ଉତ୍ତର ଅର୍ଥାତ୍ ଭାରତତୀର୍ଥ ଭ୍ରମଣ କରିଥିଲେ, ତାହାର କାରଣ ଶାସ୍ତ୍ରରେ ଉକ୍ତ ହୋଇଅଛି—

ମଦ୍‌ଭକ୍ତା ଯତ୍ର ଗଚ୍ଛନ୍ତି ତତ୍ର ଗଚ୍ଛାମି ପାର୍ଥିବ ।
ଭକ୍ତାନାମନୁଗଚ୍ଛନ୍ତି ମୁକ୍ତୟଃ ଶ୍ରୁତିଭିଃ ସହ ॥
ବତ୍ସେର ପଶ୍ଚାତେ ଯଥା ଧାୟ ଧେନୁଗଣ ।
ତେମତି ଭକ୍ତେର ପାଛେ ଧାୟ ଜନାର୍ଦ୍ଦନ ॥
ଭକ୍ତେର ପଶ୍ଚାତେ ମୁକ୍ତି ଧାୟ ସ୍ତୁତିକରି ।
ସତ୍ୟ ସତ୍ୟ ବଲେ ଶାସ୍ତ୍ର ଦେଖହ ବିଚାରି ॥
ଅସ୍ମାକଂ ବାନ୍ଧବା ଭକ୍ତା ଭକ୍ତନାଂ ବାନ୍ଧବା ବୟମ୍ ।
ଅସ୍ମାକଂ ଗୁରବୋ ଭକ୍ତା ଭକ୍ତାନଂ ଗୁରବୋ ବୟମ୍ ॥
ଆମାର ବାନ୍ଧବ ଭକ୍ତ ଶୁନ ଶୁନ ଧନଞ୍ଜୟ ।
ଭକ୍ତେର ବାନ୍ଧବ ଆମି କହିନୁ ନିଶ୍ଚୟ ।
ଆମାର ହୟେନ ଗୁରୁ ଭକ୍ତ ମହାଶୟ ।
ଆମିଓ ଭକ୍ତେର ଗୁରୁ ଜାନିହ ନିଶ୍ଚୟ ।

ଭକ୍ତଚରିତ୍ର ଚିତ୍ରକର ଶ୍ରୀଗୌରସୁନ୍ଦର ମହାତୀର୍ଥ ରେମୁଣାର ଶ୍ରୀ ଶ୍ରୀକ୍ଷୀରଚୋରା ଗୋପୀନାଥଙ୍କର ଦର୍ଶନାର୍ଥୀ ତୃତୀୟ ତୀର୍ଥଯାତ୍ରୀ ।

ଏଇମତ ମହାପ୍ରଭୁ ଚଲିଲା ନୀଳାଚଳେ ।
ଚାରିଭକ୍ତ ସଙ୍ଗେ କୃଷ୍ଣକୀର୍ତ୍ତନ କୁତୂହଳେ ।।
ପଥେ ବଡ଼ ବଡ଼ ଦାନୀ ବିଘ୍ନ ନାହିଁ କରେ ।
ତା ସବାରେ କୃପାକରି ଆଇଲା ରେମୁଣାରେ ।।
ରେମୁଣାତେ ଗୋପୀନାଥ ପରମ ମୋହନ ।
ଭକ୍ତି କରି କୈଲ ପ୍ରଭୁ ତାର ଦରଶନ ।।
ତାର ପାଦପଦ୍ମ ନିକଟେ ପ୍ରଣାମ କରିତେ ।
ତାର ପୁଷ୍ପଚୂଡ଼ା ପଡ଼ିଲ ପ୍ରଭୁର ମାଥାତେ ।।
ଚୂଡ଼ା ପାଯା ମହାପ୍ରଭୁ ଆନନ୍ଦିତ ମନ ।
ବହୁ ନୃତ୍ୟ-ଗୀତ କୈଲ ଲୟା ଭକ୍ତଗଣ ।
ପ୍ରଭୁର ପ୍ରଭାବେ ଦେଖି ପ୍ରେମରୂପ ଗୁଣ ।
ବିସ୍ମିତ ହେଲା ଗୋପୀନାଥେର ଦାସଗଣ ।।
ନାନା ରୂପେ ପ୍ରୀତେ କୈଲ ପ୍ରଭୁର ସେବନ ।
ସେଇ ରାତ୍ର ତାହା ପ୍ରଭୁ କରିଲ ବଞ୍ଚନ ।
ମହାପ୍ରସାଦ କ୍ଷୀରଲୋଭେ ରହିଲା ପ୍ରଭୁ ତଥା ।
ପୂର୍ବେ ଈଶ୍ୱରପୁରୀ ତାରେ କହିଯାଛେନ କଥା ।।
କ୍ଷୀରଚୋରା ଗୋପୀନାଥ ପ୍ରସିଦ୍ଧ ତାର ନାମ ।
ଭକ୍ତଗଣେ କହେ ପ୍ରଭୁ ସେଇ ତ ଆଖ୍ୟାନ ।।
ପୂର୍ବେ ମାଧବପୁରୀ ଲାଗି କ୍ଷୀର କୈଲ ଚୁରି ।
ଅତଏବ ନାମ ହୈଲ କ୍ଷୀରଚୋରା ହରି ।।

ପଞ୍ଚତତ୍ତ୍ୱ ସହିତ ଶ୍ରୀନୀଳାଚଳାଭିମୁଖେ ଶୁଭଯାତ୍ରା କଲେ ଶ୍ରୀମନ୍ମହାପ୍ରଭୁ । ଶ୍ରୀଚୈତନ୍ୟ

**ଶ୍ରୀ ନିତ୍ୟାନନ୍ଦ ପ୍ରଭୁ** ଶ୍ରୀକୃଷ୍ଣଙ୍କର ଦ୍ୱିତୀୟ ଦେହସ୍ୱରୂପ ମହାସଙ୍କର୍ଷଣ ଏବଂ ମହାବିଷ୍ଣୁ, ସହସ୍ର ଶୀର୍ଷାପୁରୁଷ ଓ ବିଷ୍ଣୁ ଏହି ତିନି ପୁରୁଷାବତାର ଏବଂ ଏହି ତିନି ଅବତାରଙ୍କର ଯେ ମତ୍ସ୍ୟାଦି ଲୀଳାବତାର ବ୍ରହ୍ମାଦି ଗୁଣାବତାର ଶୁକ୍ଳ ଇତ୍ୟାଦି ଯୁଗାବତାର, ଯଜ୍ଞ ଆଦି ମନ୍ୱନ୍ତରାବତାର ଓ ଅନନ୍ତ ଆଦି ଆବେଶାବତାର ଏମାନଙ୍କର ସମସ୍ତଙ୍କର ଯେ କାରଣ ଅର୍ଥାତ୍ ପରମ୍ପରା ସମ୍ବନ୍ଧରେ ଏମାନେ ଯାହାଙ୍କର ଅବତାର ସେହି ଶ୍ରୀ ବଳରାମ ହିଁ ଶ୍ରୀଗୌରାଙ୍ଗଙ୍କ ସଙ୍ଗରେ ଶ୍ରୀନବଦ୍ୱୀପରେ ଶ୍ରୀ ନିତ୍ୟାନନ୍ଦ ରୂପେ ଅବତୀର୍ଣ୍ଣ ହୋଇଥିଲେ ।

ଶ୍ରୀଗୌରାଙ୍ଗଙ୍କର ଜ୍ୟେଷ୍ଠଭ୍ରାତା ଶ୍ରୀ ବିଶ୍ୱରୂପ ଆକୁମାର ବୈରାଗ୍ୟ ଅବଲମ୍ବନ କରି ଶ୍ରୀନିତ୍ୟାନନ୍ଦଙ୍କଠାରେ ଲୀନ ହୁଅନ୍ତି । ଏଥିଲାଗି ଶ୍ରୀନିତ୍ୟାନନ୍ଦ ଶ୍ରୀଗୌରାଙ୍ଗଙ୍କର ଜ୍ୟେଷ୍ଠଭ୍ରାତା ରୂପେ ପରିଚିତ ହୁଅନ୍ତି ।

**ଶ୍ରୀ ଅଦ୍ୱୈତ ପ୍ରଭୁ** ଜଗତକର୍ତ୍ତା ଯେଉଁ ମହାବିଷ୍ଣୁ ମାୟାଦ୍ୱାରା ଏହି ବ୍ରହ୍ମାଣ୍ଡ ସୃଷ୍ଟି କରନ୍ତି, ତାଙ୍କର ହିଁ ଅବତାର ଈଶ୍ୱର ଅଦ୍ୱୈତାଚାର୍ଯ୍ୟ । ପ୍ରଥମ ପୁରୁଷାବତାର ମହାବିଷ୍ଣୁଙ୍କର ତିନୋଟି ମୂର୍ତ୍ତି । ପ୍ରଥମ ନିମିତ୍ତ ମାୟାର ଅଧିଷ୍ଠାନ ସ୍ୱୟଂ ମହାବିଷ୍ଣୁ । ଦ୍ୱିତୀୟ, ଉପାଦାନ ମାୟାର ଅଧିଷ୍ଠାନ ଅଦ୍ୱୈତ; ତୃତୀୟ, ଗୋଟିଏ ଗୋଟିଏ ବ୍ରହ୍ମାଣ୍ଡର ଅନ୍ତର୍ଯ୍ୟାମୀ, ମାୟା ଦୁଇ ପ୍ରକାର—ଯଥା : ମାୟା ବା ଜୀବମାୟା ; ଉପାଦାନ ମାୟା ବା ଗୁଣମାୟା । ଜୀବମାୟା ପ୍ରତି ଯେ କେବଳ ଦୃଷ୍ଟି ପ୍ରଦାନ କରନ୍ତି, ସେ ସ୍ୱୟଂ ମହାବିଷ୍ଣୁ, ଆଉ ସେ ଯେ ପ୍ରକାରେ ଗୁଣମାୟାର ଅଧିଷ୍ଠାନ ହୋଇ ଜଗତ୍ ରୂପ ଅଣ୍ଡ ନିର୍ମାଣ କରନ୍ତି, ସେହି ରୂପଟି ଅଦ୍ୱୈତ । ମୂଳ ସଙ୍କର୍ଷଣ ନିତ୍ୟାନନ୍ଦ ବଳରାମଙ୍କର ଅଂଶ ମହା ସଙ୍କର୍ଷଣ । ଏହାଙ୍କର ଅଂଶ ମହାବିଷ୍ଣୁ । ଏହାଙ୍କର ଗୋଟିଏ ରୂପ ଅଦ୍ୱୈତ । ମହାବିଷ୍ଣୁଙ୍କର ମୁଖ୍ୟାଂଶ-ପ୍ରଯୁକ୍ତ, ତାହାଙ୍କ ସହିତ ଅଭିନ୍ନ ହେତୁ ଏହି ଅଂଶର ନାମ ଅଦ୍ୱୈତ । ସେ ଜଗତରେ ଅବତୀର୍ଣ୍ଣହୋଇ ଲୋକସକଳଙ୍କୁ, କୃଷ୍ଣଭକ୍ତି ଉପଦେଶ ଦେଇଛନ୍ତି ବୋଲି ତାଙ୍କର ନାମ ଆଚାର୍ଯ୍ୟ ହୋଇଛି । ଏ ଈଶ୍ୱର ହୋଇ ମଧ୍ୟ ଭକ୍ତରୂପେ ଅବତୀର୍ଣ୍ଣ ହୋଇଛନ୍ତି ; ଏଥିଲାଗି ଭକ୍ତାବତାର । ପୂର୍ବେ ଅଦ୍ୱୈତ ରୂପେ ବ୍ରହ୍ମାଣ୍ଡ ସୃଷ୍ଟି କରିଛନ୍ତି । ବର୍ତ୍ତମାନ କାଳରେ ଆଚାର୍ଯ୍ୟରୂପେ ଭକ୍ତି ପ୍ରବର୍ତ୍ତନ କରିଛନ୍ତି । ପୂର୍ବ ନାମ ଅଦ୍ୱୈତ ; ବର୍ତ୍ତମାନର ନାମ ଆଚାର୍ଯ୍ୟ, ଏହି ଦୁଇ ନାମ ମିଳି ଅଦ୍ୱୈତାଚାର୍ଯ୍ୟ । ଏ ପୂର୍ବେ ବ୍ରଜର ଆବରଣ ରୂପେ ସଦାଶିବ ଥିଲେ ଏବଂ ଗୋଟିଏ ଗୋପାଳ ରୂପେ ବି ଥିଲେ । ମହାବିଷ୍ଣୁଙ୍କର ମହାଅଂଶ ଅତଏବ ସମସ୍ତ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ଯେ ଅଦ୍ୱୈତ, ଜଗତରେ କୃଷ୍ଣଭକ୍ତି ପ୍ରଦାନ କରିବାଲାଗି ଭକ୍ତାବତାର ଓ ଆଚାର୍ଯ୍ୟ ରୂପେ ଶ୍ରୀଗୌର-ନିତ୍ୟାନନ୍ଦଙ୍କ ସହିତ ଅବତୀର୍ଣ୍ଣ ହୋଇଛନ୍ତି ।

## ଶ୍ରୀ ଗଦାଧର ପଣ୍ଡିତ ଗୋସ୍ୱାମୀ ତତ୍ତ୍ୱ

ଏହାଙ୍କର ତତ୍ତ୍ୱ ସମ୍ବନ୍ଧରେ ମତଭେଦ ରହିଛି । କେହି କହନ୍ତି ଶ୍ରୀ ବୃନ୍ଦାବନେଶ୍ୱରୀ ; ପୁଣି କେହି କହନ୍ତି, ଶ୍ରୀବୃନ୍ଦାବନ ଲକ୍ଷ୍ମୀ । କିନ୍ତୁ ଶ୍ରୀସ୍ୱରୂପ ଗୋସ୍ୱାମୀ କହିଛନ୍ତି— ଶ୍ରୀରାଧା ହିଁ ଶ୍ରୀ ଗଦାଧର ପଣ୍ଡିତ ଗୋସ୍ୱାମୀ ।

## ଶ୍ରୀବାସ ପଣ୍ଡିତ ତତ୍ତ୍ୱ

ଶ୍ରୀବାସ ପଣ୍ଡିତ ସାକ୍ଷାତ୍ ଦେବର୍ଷି ନାରଦ । ଏ ଭକ୍ତଗଣଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ।

# ଶ୍ରୀକୃଷ୍ଣ ଚୈତନ୍ୟ ତତ୍ତ୍ୱ

ଶ୍ରୀ ଚୈତନ୍ୟବତାର ଜଗତରେ ସର୍ବାବତାର ଅପେକ୍ଷା ଉପାଦେୟ ; ଅତଏବ ଗୂଢ଼ । ସେ ଏକମାତ୍ର ଭକ୍ତିଗମ୍ୟ । ତାଙ୍କର ଏହି ଉପାଦେୟ ତତ୍ତ୍ୱ ଗୋପନ ରଖିବା ଲାଗି ସେ ଅନେକ ଯତ୍ନ କରିବେ। କିନ୍ତୁ ପରମ ଭକ୍ତଗଣଙ୍କ ନିକଟରେ ସେ ପ୍ରକାଶିତ ହୋଇ ପଡ଼ନ୍ତି । ବେଦପୁରାଣାଦି ଶାସ୍ତ୍ରରେ ତାହାଙ୍କୁ ଗୋପନ ରଖିବାଲାଗି କେବଳ ଇଙ୍ଗିତ ବାକ୍ୟଦ୍ୱାରା ତାଙ୍କର ଭାବୀ ଉଦୟର ଉଲ୍ଲେଖ ଅଛି । ତହିଁରେ ତାହାଙ୍କର ଛନ୍ନାବତାରର ଗୂଢ଼ତା ଓ ବିଶେଷ ଉପାଦେୟତା ହିଁ ସୁସ୍ପଷ୍ଟ ପ୍ରମାଣିତ ହୋଇଛି ।

ଏକଦା ଶ୍ରୀବୃନ୍ଦାବନସ୍ଥ ଶ୍ରୀନିକୁଞ୍ଜ ମନ୍ଦିରରେ ଶ୍ରୀଶ୍ରୀରାଧାକୃଷ୍ଣ ରସବିଳାସ କେଳି ଅନ୍ତେ ଶ୍ରୀକୃଷ୍ଣ ଶ୍ରୀରାଧାରାଣୀଙ୍କୁ କହିଲେ "ରାଧେ ! ମୁଁ ତୁମର ନାମଗୁଣ ପ୍ରକାଶ କରିବା ଲାଗି ତୁମର ଭାବ-କାନ୍ତି ଅଙ୍ଗୀକାର କରି ଭାବୀ କଳିରେ ଅଭିନ୍ନ ବୃନ୍ଦାବନ ନବଦ୍ୱୀପ ଧାମରେ ଶ୍ରୀଗୌର ରୂପେ ଅବତୀର୍ଣ୍ଣ ହେବି ।" ଏହା କହି ଉଭୟେ ଶୟନ କଲେ । ନିଦ୍ରାବସ୍ଥାରେ ଶ୍ରୀରାଧାରାଣୀ ନିଜ ପ୍ରାଣବଲ୍ଲଭଙ୍କଠାରୁ ପ୍ରକଟିତ କୋଟି କନ୍ଦର୍ପ ବିନିନ୍ଦିତ କଷିତ କାଞ୍ଚନ କଳେବର ଏକ କୈଶୋର ମୂର୍ତ୍ତି ଦର୍ଶନକରି ଅତୀବ ଚମତ୍କୃତା ହୋଇ ରୋଦନ କରିବାକୁ ଲାଗିଲେ । ରୋଦନ ଶ୍ରବଣରେ ଶ୍ରୀକୃଷ୍ଣଙ୍କର ନିଦ୍ରାଭଙ୍ଗ ହେଲା । ସେ ଜାଗରିତ ହୋଇ ସ୍ୱପ୍ନର ପୂର୍ଣ୍ଣ ବୃତ୍ତାନ୍ତ ଅବଗତ ହୋଇ କହିଲେ—"ଏଥିରେ କ୍ରନ୍ଦନ କରିବାର କଣ ଅଛି ? ତୁମେ ଓ ମୁଁ ଏକ ଦେହ ଧାରଣ କରି କଳିଯୁଗର ପ୍ରଥମ ସନ୍ଧ୍ୟାରେ ଶ୍ରୀଶଚୀଗର୍ଭସିନ୍ଧୁରେ ଶ୍ରୀଜଗନ୍ନାଥ ମିଶ୍ରଙ୍କ ଆଳୟରେ ସମୁତ୍ତୀର୍ଣ୍ଣ ହେବି ।"

ଶ୍ରୀରାଧାଙ୍କର ପ୍ରଣୟ ବିକୃତି ରୂପେ ହ୍ଲାଦିନୀଶକ୍ତିକ୍ରମେ ଶ୍ରୀରାଧାକୃଷ୍ଣ ସ୍ୱରୂପ ଏକାତ୍ମା ହୋଇ ମଧ୍ୟ ବିଳାସତତ୍ତ୍ୱର ନିତ୍ୟତ୍ୱ ପ୍ରଯୁକ୍ତ ଶ୍ରୀରାଧାକୃଷ୍ଣ ନିତ୍ୟରୂପେ ସ୍ୱରୂପ ଦ୍ୱୟରେ ବିରାଜମାନ । ସେହି ଦୁଇତତ୍ତ୍ୱ ସମ୍ପ୍ରତି ଏକ ସ୍ୱରୂପରେ ଶ୍ରୀଗୌରତତ୍ତ୍ୱ ରୂପେ ପ୍ରକଟିତ ।

ସେଇ ଗୋଲୋକର ଗୋପନଧନ ସର୍ବାରାଧ୍ୟ ପୂର୍ଣ୍ଣବ୍ରହ୍ମ ଭଗବାନ ଶ୍ରୀଗୌର-ସୁନ୍ଦର ଅପାର କରୁଣା ପରବଶ ହୋଇ ଦୁର୍ଦ୍ଦଶାଗ୍ରସ୍ତ କଳିଜୀବର ସୌଭାଗ୍ୟାକାଶରେ ସପାର୍ଷଦ ସମୁଦିତ ହୋଇ ପ୍ରତ୍ୟେକ ତୀର୍ଥେ ତୀର୍ଥେ ସାଗର-ଭୂଧରରେ ଅରଣ୍ୟରେ ଗିରି ପ୍ରାନ୍ତରରେ, ପଲ୍ଲୀ ଜନପଦରେ ଜଳ ସ୍ଥଳ ଆକାଶରେ ପାଣି ପବନରେ, ଅଣୁ ପରମାଣୁରେ, ବିରାଜମାନ ସ୍ଥୂଳ ସୂକ୍ଷ୍ମ ସ୍ଥାବର ଜଙ୍ଗମ ଜୀବନିଚୟଙ୍କୁ ପବିତ୍ର ଓ ଧନ୍ୟ କରିଛନ୍ତି ତ୍ରିଭୁବନ ମଙ୍ଗଳ ଶ୍ରୀହରିନାମ ପ୍ରଦାନ ଦ୍ୱାରା । ସେଥି ସଙ୍ଗରେ ପବିତ୍ର ମହାତୀର୍ଥ ଶ୍ରୀରେମୁଣାର ପ୍ରତି ଧୂଳିକଣାକୁ ପୁଣ୍ୟର ଆବାସସ୍ଥଳ କରିଯାଇଛନ୍ତି ସ୍ୱୟଂ

ପୂର୍ଣ୍ଣତମ ଭଗବାନ ଶ୍ରୀଗୌରଚନ୍ଦ୍ର ଶ୍ରୀକ୍ଷୀରଚୋରା ଗୋପୀନାଥଙ୍କୁ । ଏହାର ଗୋଟିଏ ଗୂଢ଼ତର ତାତ୍ପର୍ଯ୍ୟାର୍ଥ ଟିକିଏ ପରିଷ୍କାର କରି କୁହାଯାଉଛି । ତ୍ରେତାଯୁଗରେ ଯୁଗାବତାର ଶ୍ରୀରାମଚନ୍ଦ୍ର ଭବୀ ଦ୍ୱାପରଲୀଳାର ଯେଉଁ ଶୁଭସୂଚନା ବା ପାଷାଣ ମଧ୍ୟରେ ଯେଉଁ ମହାଜୀବନର ଆଲେଖ୍ୟ ଅଙ୍କିତ କରିଥିଲେ, ତାର ପ୍ରଥମ ପ୍ରତିଫଳନ ଚିତ୍ରକୂଟଠାରେ ହିଁ ଅବିଚ୍ଛିନ୍ନ ଓ ଅଭିନ୍ନ ଲୀଳାବିଗ୍ରହ ମହାତୀର୍ଥ ଶ୍ରୀରେମୁଣାର ଶ୍ରୀଗୋପୀନାଥ ବିଗ୍ରହ । ତାହାହେଲେ ଭାରତର ପ୍ରତ୍ୟେକ ପୁଣ୍ୟାଭିଳାଷୀ ତୀର୍ଥଯାତ୍ରୀ ଗଣଙ୍କର ଅବଶ୍ୟ ଆଚରଣୀୟ ସର୍ବପ୍ରଥମ ମହାତୀର୍ଥ ଶ୍ରୀରେମୁଣାସ୍ଥଳାଧିଷ୍ଠିତ ଶ୍ରୀଗୋପୀନାଥ ବିଗ୍ରହ ଦର୍ଶନ । କାରଣ ରେମୁଣାର ଯେଉଁ ବ୍ରଜଲୀଳା ବିମ୍ବସ୍ଥାନୀୟ ଆଉ ଶ୍ରୀବୃନ୍ଦାବନର ବ୍ରଜଲୀଳା ପ୍ରତିବିମ୍ବସ୍ଥାନୀୟ ଧରିଲେ ଅତ୍ୟୁକ୍ତି ଦୋଷ ହୁଏ ନାହିଁ ବୋଲି ମନେହୁଏ ।

ଶ୍ରୀମନ୍ମହାପ୍ରଭୁଙ୍କ ପୂର୍ବେ ଶ୍ରୀ ମାଧବେନ୍ଦ୍ରପୁରୀ ଶ୍ରୀଳ ଈଶ୍ୱରପୁରୀ, ଶ୍ରୀରାମଚନ୍ଦ୍ର ପୁରୀ, ଶ୍ରୀରାୟ ରାମାନନ୍ଦଙ୍କ ଗୁରୁ ଶ୍ରୀପରମାନନ୍ଦ ପୁରୀ ଏତଦଭିନ୍ନ ଶ୍ରୀମାଧବେନ୍ଦ୍ର ପୁରୀଙ୍କର ପବିତ୍ର ମହାପ୍ରୟାଣତୀର୍ଥ ଶ୍ରୀରେମୁଣାକୁ ଆସିଥିଲେ– ଶ୍ରୀକୃଷ୍ଣାନନ୍ଦ, ଶ୍ରୀବ୍ରହ୍ମାନନ୍ଦ, ଶ୍ରୀନୃସିଂହ, ଶ୍ରୀକେଶବ, ଶ୍ରୀସୁଖାନନ୍ଦ, ଶ୍ରୀରଘୁନାଥ, ଶ୍ରୀ ଶ୍ରୀ ରଙ୍ଗନାଥ, ଶ୍ରୀ ଅନନ୍ତ, ଶ୍ରୀଗୋବିନ୍ଦ, ଶ୍ରୀଦାମୋଦର, ଶ୍ରୀରାଘବାନନ୍ଦ, ଶ୍ରୀପୁଣ୍ଡରୀକ ପ୍ରେମନିଧି ।

ତତ୍ପରେ ଶ୍ରୀମନ୍ମହାପ୍ରଭୁ ଶ୍ରୀନୀଳାଚଳ ଧାମରେ ଏକାଦିକ୍ରମେ ତିନିବର୍ଷକାଳ ଅବସ୍ଥାନ କାଳରେ ପ୍ରତିବର୍ଷ ଶ୍ରୀରଥଯାତ୍ରା ଉପଲକ୍ଷେ ଶ୍ରୀଗୌରନୁରକ୍ତ ନିତ୍ୟସିଦ୍ଧ ଓ ସାଧନସିଦ୍ଧ ପାର୍ଷଦଗଣ ଶ୍ରୀରଥଯାତ୍ରାଠାରୁ କାର୍ତ୍ତିକମାସର ନିୟମସେବା ଶେଷପର୍ଯ୍ୟନ୍ତ ଚାତୁର୍ମାସ୍ୟ ବ୍ରତୋଦ୍ୟାପନ ପୂର୍ବକ ଶ୍ରୀକ୍ଷେତ୍ରଧାମରେ ବାସ କରୁଥିଲେ । ସେମାନେ ଶ୍ରୀକ୍ଷେତ୍ର ଗମନ ସମୟରେ ଓ ଆଗମନ ସମୟରେ ବା ଗମନାଗମନ ସମୟରେ ନିତ୍ୟ ଓ ଗୁପ୍ତ ବୃନ୍ଦାବନ ମହାତୀର୍ଥ ଶ୍ରୀରେମୁଣାର ମହାସଙ୍ଗମରେ ସମବେତ ହେଉଥିଲେ । ସେମାନଙ୍କର ନାମ ଯଥାପ୍ରାପ୍ତ ନିମ୍ନରେ ଉଲ୍ଲେଖ କରଗଲା–

ଶ୍ରୀବ୍ରଜଲୀଳା ଓ ଶ୍ରୀନବଦ୍ୱୀପ ଲୀଳାରେ ଯେଉଁ ନାମ **ଅଷ୍ଟସଖୀ–ଅଷ୍ଟପ୍ରଧାନ ମହାନ୍ତ**: ଲଳିତା–ସ୍ୱରୂପଦାମୋଦର, ବିଶାଖା-ରାୟ ରାମାନନ୍ଦ, ଚମ୍ପକଲତା-ଶିବାନନ୍ଦ-ସେନ, ସୁଚିତ୍ରା-ଗୋବିନ୍ଦାନନ୍ଦ ଠାକୁର, ତୁଙ୍ଗବିଦ୍ୟା-ମାଧବ ଘୋଷ, ଇନ୍ଦୁରେଖା-ଗୋବିନ୍ଦ ଠାକୁର, ରଙ୍ଗଦେବୀ-ଗୋବିନ୍ଦ ଘୋଷ, ସୁଦେବୀ-ବାସୁଦେବ ଘୋଷ ।

# ଛଅ ମଞ୍ଜରୀ-ଛଅ ଗୋସ୍ୱାମୀ

ଲବଙ୍ଗମଞ୍ଜରୀ-ସନାତନ ଗୋସ୍ୱାମୀ, ଶ୍ରୀରୂପମଞ୍ଜରୀ-ରୂପଗୋସ୍ୱାମୀ, ରସମଞ୍ଜରୀ ରଘୁନାଥ ଭଟ୍ଟଗୋସ୍ୱାମୀ, ବିଳାସମଞ୍ଜରୀ-ଶ୍ରୀଜୀବ ଗୋସ୍ୱାମୀ, ଗୁଣମଞ୍ଜରୀ-ଗୋପାଳଭଟ ଗୋସ୍ୱାମୀ, ରତିମଞ୍ଜରୀ-ରଘୁନାଥ ଦାସଗୋସ୍ୱାମୀ ।

# ଦ୍ୱାଦଶ ଗୋପାଳ-ଦ୍ୱାଦଶ ସଖା

ଶ୍ରୀଦାମ–ଅଭିରାମଠାକୁର, ସୁଦାମ–ସୁନ୍ଦରାନନ୍ଦଠାକୁର, ବସୁଦାମ–ଧନଞ୍ଜୟ ପଣ୍ଡିତ, ସୁବଳ–ଗୌରୀଦାସ ପଣ୍ଡିତ, ମହାବଳ–କମଳାକର ପିପ୍‌ପଲାଇ, ସୁବାହୁ–ଉଦ୍ଧାରଣଦତ୍ତ ଠାକୁର, ମହାବାହୁ–ମହେଶ ପଣ୍ଡିତ, ଦାମ–ନାଗର ପୁରୁଷୋତ୍ତମ, ସ୍ତୋକକୃଷ୍ଣ–ପୁରୁଷୋତ୍ତମ ଠାକୁର, ଅର୍ଜୁନ–ପରମେଶ୍ୱର ଠାକୁର, ଲବଙ୍ଗ–କାନାଇ ଠାକୁର, ମଧୁମଙ୍ଗଳ–ଶ୍ରୀଧର ପଣ୍ଡିତ ।

# ଦ୍ୱାଦଶ ଉପଗୋପାଳ–ଦ୍ୱାଦଶ ଉପସଖା

ବଳବାନ–ହଳାୟୁଧ ପଣ୍ଡିତ, ବରୁଥପ–ରୁଦ୍ର ପଣ୍ଡିତ, ଗନ୍ଧର୍ବ–ମୁକୁନ୍ଦାନନ୍ଦ ପଣ୍ଡିତ, କାଳିନ୍ଦୀ–କାଶୀଶ୍ୱର ପଣ୍ଡିତ, ଅଂଶୁମାନ–ବନମାଳୀ ଓଝା, ଭଦ୍ରସେନ–ସନ୍ତଠାକୁର, ବସନ୍ତ–ମୁରାରି ମାଇତି, ଉଜ୍ଜ୍ୱଳ–ଗଙ୍ଗାଦାସ, କୋକିଳ–ଗୋପାଳଠାକୁର, ବିଳାସୀ–ଶିବାଇ, ପୁଣ୍ଡରୀକ–ନନ୍ଦାଇ, କଳବିଙ୍କ–ବିଙ୍କାଇ ।

# ଚୌଷଠୀ ମହାନ୍ତ ଓ ଭକ୍ତଗଣ

ନାରଦ–ଶ୍ରୀବାସ ପଣ୍ଡିତ, ହନୁମାନ–ମୁରାରି ଗୁପ୍ତ, ଅଙ୍ଗଦ ସୁମତି–ପୁରନ୍ଦର ପଣ୍ଡିତ, ସୁଗ୍ରୀବ–ଗୋବିନ୍ଦାନନ୍ଦ, ବଶିଷ୍ଠ–ଗଙ୍ଗାଦାସ ପଣ୍ଡିତ, ବିଭୀଷଣ–ରାମଚନ୍ଦ୍ରପୁରୀ, ରୁଚିକମୁନିଙ୍କ ପୁତ୍ର–ବ୍ରହ୍ମା ଓ ପ୍ରହ୍ଲାଦ ଏକତ୍ର ମିଳି–ବ୍ରହ୍ମ ହରିଦାସ, ବେଦବ୍ୟାସ–ବୃନ୍ଦାବନ ଦାସ, ସଙ୍କର୍ଷଣ ବ୍ୟୂହ–ମୀନକେତନ ରାମଦାସ, ପ୍ରଦ୍ୟୁମ୍ନ–ରଘୁନନ୍ଦନ, ଶଶିରେଖା–ବକ୍ରେଶ୍ୱର ପଣ୍ଡିତ, ଅନିରୁଦ୍ଧ–ରସିକ ମୁରାରି, ବ୍ରହ୍ମା–ଗୋପୀନାଥାଚାର୍ଯ୍ୟ, ଶୁକଦେବ–ବଲ୍ଲଭ ଭଟ୍ଟ, ଗରୁଡ଼–ଗରୁଡ ପଣ୍ଡିତ, ଅଷ୍ଟନିଧି ମଧ୍ୟରୁ ଶଙ୍ଖନିଧିଆର୍ଯ୍ୟରତ୍ନ, ଦୁର୍ବାସା–ଜଗନ୍ନାଥ ଆଚାର୍ଯ୍ୟ. ଇନ୍ଦ୍ରଦ୍ୟୁମ୍ନ ବା ଇନ୍ଦ୍ର–ପ୍ରତାପରୁଦ୍ର, ଗନ୍ଧର୍ବ ଚନ୍ଦ୍ରକାନ୍ତି–ଗଦାଧର ଦାସ, ବିଶ୍ୱାମିତ୍ର ମୁନି–ବନମାଳି ଆଚାର୍ଯ୍ୟ, ପାଣ୍ଡବ ଅର୍ଜୁନ, ଅର୍ଜୁନୀ–ରମାନନ୍ଦ, ନନ୍ଦସଭସଦ୍–ଭଣ୍ଡାରି ପଣ୍ଡିତ ବା ଦେବାନନ୍ଦ ପଣ୍ଡିତ, କୃଷ୍ଣପ୍ରିୟା ଚନ୍ଦ୍ରାବଳୀ–ସଦାଶିବ ପଣ୍ଡିତ, ଭଦ୍ରାସଖୀ–ଶଙ୍କର ପଣ୍ଡିତ, ସବ୍ୟା–ଦାମୋଦର ପଣ୍ଡିତ ।

## ମତାନ୍ତରେ

ଲଳିତା—ଧ୍ରୁବାନନ୍ଦ ବ୍ରହ୍ମଚାରୀ, ବିଶାଖା—ସ୍ୱରୂପ ଦାମୋଦର, ବା ପୁରୁଷୋତ୍ତମ ଚିତ୍ରା—ବନମାଳୀ କବିରାଜ, ଚମ୍ପକଲତା—ରାଘବ ଗୋସ୍ୱାମୀ, ତୁଙ୍ଗବିଦ୍ୟା—ପ୍ରବୋଧାନନ୍ଦ ସରସ୍ୱତୀ, ଇନ୍ଦୁରେଖା—କୃଷ୍ଣଦାସ ବ୍ରହ୍ମଚାରୀ, ରଙ୍ଗଦେବୀ—ଗଙ୍ଗାଧର ଭଟ୍ଟ, ସୁଦେବିକା—ଅନନ୍ତ ଆଚାର୍ଯ୍ୟ, ରତ୍ନଲେଖା—କୃଷ୍ଣଦାସ, ଧନିଷ୍ଠା ସଖୀ—ରାଘବ ପଣ୍ଡିତ, ମାଧବୀ—ମାଧବ ଆଚାର୍ଯ୍ୟ, ସୁକେଶୀ—ମକରଧ୍ୱଜ, ମଧୁରା—ବିଦ୍ୟା ବାଚସ୍ପତି, ମଧୁରେକ୍ଷଣା—ବଳଭଦ୍ର ଭଟ୍ଟାଚାର୍ଯ୍ୟ, କଳକଣ୍ଠୀ—ରାମାନନ୍ଦ ବସୁ, ନାନ୍ଦୀମୁଖୀ—ସାରଙ୍ଗ ଠାକୁର, ସୁକଣ୍ଠୀ—ସତ୍ୟରାଜ ଖାନ, ମଧୁମତୀ—ନରହରି ଚକ୍ରବର୍ତ୍ତୀ (ସରକାର), ବୃନ୍ଦାଦେବୀ—ମୁକୁନ୍ଦ ଦାସ, ବୀରଦୂତୀ-ଶିବାନନ୍ଦ ସେନ, କଳାବତୀ—ଗୋବିନ୍ଦ ଘୋଷ, ପ୍ରେମମଞ୍ଜରୀ—ଭୂଗର୍ଭ ଠାକୁର, ଲୀଳାମଞ୍ଜରୀ—ଲୋକନାଥ ଗୋସ୍ୱାମୀ, ରସୋଲ୍ଲାସ—ମାଧବ ଘୋଷ, ଗୁଣତୁଙ୍ଗୀ—ବାସୁଦେବ ଘୋଷ, ରଙ୍ଗରେଖା—ଶିଖି ମାଇତି, ମଧୁବନର ଯଜ୍ଞପତ୍ନୀ—ଶୁକ୍ଳାମ୍ବର ଚକ୍ରବର୍ତ୍ତୀ, ଚନ୍ଦ୍ରଲତିକା—ଜଗଦୀଶ ପଣ୍ଡିତ, ରତ୍ନାବଳୀ—ଭଗବାନ ଆଚାର୍ଯ୍ୟ, ଗୁଣଚୂଡ଼ା—କବି କର୍ଣ୍ଣପୁର, କର୍ପୂରମଞ୍ଜରୀ—ରମାଇ ଠାକୁର, ଶ୍ୟାମମଞ୍ଜରୀ—ଦ୍ୱିଜ ହରିଦାସ, କାମଲେଖା—ଛୋଟ ହରିଦାସ, କାମମଞ୍ଜରୀ—ନନ୍ଦନ ବ୍ରହ୍ମଚାରୀ, କଳଭଷିଣୀ—ବାଣୀନାଥ ପଣ୍ଡିତ, କଳକଣ୍ଠୀ—ଚିରଞ୍ଜୀବ ଦାସ, ଖଞ୍ଜିନୀ—ସୁନ୍ଦରାନନ୍ଦ ଠାକୁର, ନୀଳକାନ୍ତି—ନବାଇ ହୋଡ, କଳାପିନୀ—ଜଗଦାନନ୍ଦ ପଣ୍ଡିତ, ସୁକେଶୀ—କଂସାରି ସେନ ।

## ଉପମହାନ୍ତ ବଂଶ

କଳାବତୀ ସଖୀ—ସୁଲୋଚନ ଠାକୁର, ଶୌରସେନୀ—ଭଗବତାଚାର୍ଯ୍ୟ, ଇନ୍ଦିରା—ଜୀବ ପଣ୍ଡିତ; ମନୋହରା—କବିଚନ୍ଦ୍ର, କାତ୍ୟାୟନୀ—ଶ୍ରୀକାନ୍ତ ସେନ, କୃଷ୍ଣପ୍ରିୟା ବଂଶୀ—ବଂଶୀଦାସ ଠାକୁର, ମଥୁରାର କୁବ୍‌ଜା—କାଶୀ ମିଶ୍ର, ମାଳତୀ—ଯଦୁନାଥ ଆଚାର୍ଯ୍ୟ, କମଳା—ମୁକୁନ୍ଦ ଠାକୁର, ଚନ୍ଦ୍ରିକା—ପରମାନନ୍ଦ ଗୁପ୍ତ, ସୁଧୀରା—ମାଧବାଚାର୍ଯ୍ୟ, କସ୍ତୁରୀ-ମଞ୍ଜରୀ—କୃଷ୍ଣଦାସ କବିରାଜ ଗୋସ୍ୱାମୀ, ନାଗରୀ—ଦ୍ୱିଜ ଶୁଭାନନ୍ଦ, ସୁରଙ୍ଗିଣୀ—ଶ୍ରୀଧର ବ୍ରହ୍ମଚାରୀ, କଳହଂସୀ—ଦ୍ୱିଜ ରଘୁନାଥ, ସୁମୁଖୀ ଜଗନ୍ନାଥ, ଶଶିମୁଖୀ—ସୁବୁଦ୍ଧି ମିଶ୍ର, ସୁରଙ୍ଗିଣୀ—ଶ୍ରୀହର୍ଷ, ସମ୍ମୋହିନୀ—ସରଖେଳ କୃଷ୍ଣଦାସ, ବିଳାସିନୀ—ପୁର ପଣ୍ଡିତ, ଗୋପାଳିକା—ଗୋପାଳ ଆଚାର୍ଯ୍ୟ, ଗୌରଶାନ୍ତି—ଯଦୁନନ୍ଦନ, ବିମଳା—ଶ୍ରୀରାମ ଠାକୁର, ସୁଶୀଳା—ଗୋବିନ୍ଦ ଦତ୍ତ, ବିଦ୍ୟୁଲ୍ଲତା—ବିହାରୀ କୃଷ୍ଣ ଦାସ, ରତ୍ନାବଳୀ—ହୋଡ ହରିଦାସ ଚିତ୍ରାଙ୍ଗୀ—ଶ୍ରୀନାଥ ପଣ୍ଡିତ, ସୁକପାଳୀ—ଗାଲିମ ଜଗନ୍ନାଥ, ଆହ୍ଲାଦିନୀ—ପୁରୁଷୋତ୍ତମ ବ୍ରହ୍ମଚାରୀ, ସୁଖମୟୀ—ମଧୁ ପଣ୍ଡିତ । ରସଲତୀ—କାଶୀଶ୍ୱର ଠାକୁର, ପ୍ରେମବତୀ—ଶଙ୍କରାରଣ୍ୟ ।

## ବ୍ରଜର ଅଷ୍ଟମହାଶକ୍ତି-

ଶ୍ରୀଶକ୍ତି–ଜଗନ୍ନାଥ ତୀର୍ଥ, ଭୂଶକ୍ତି–ପୁରୁଷୋତ୍ତମ ତୀର୍ଥ, କାମଶକ୍ତି–ରାମତୀର୍ଥ, ଲଜ୍ଜାଶକ୍ତି–ରଘୁନାଥପୁରୀ, ଚିତ୍‌ଶକ୍ତି–ବାସୁଦେବ ତୀର୍ଥ, ସତ୍‌ଶକ୍ତି–ଉପେନ୍ଦ୍ର ଆଶ୍ରମ, ଜୀବଶକ୍ତି–ଆନନ୍ଦପୁରୀ, ମାୟାଶକ୍ତି–ହରିହରାନନ୍ଦ ।

## ବ୍ରହ୍ମାଙ୍କର ପୁତ୍ରଚତୁଷ୍ଟୟ-

ସନକ–ଲୋକନାଥ, ସନନ୍ଦ–କବିଚନ୍ଦ୍ର, ସନାତନ–ଶ୍ରୀନାଥ, ସନତ୍‌କୁମାର–ରାମଦାସ । କୃଷ୍ଣବ୍ୟୂହ ଅନିରୁଦ୍ଧ–ବକ୍ରେଶ୍ୱର ପଣ୍ଡିତ । ନିତ୍ୟାନନ୍ଦ ବ୍ୟୂହ–ବୀର ଚୂଡ଼ାମଣି ।

## ନିଧି ଓ ମହାନିଧି ଏକତ୍ର ହୋଇଛନ୍ତି, ଯଥା-

କବି ମହାପଦ୍ମ–ପରମାନନ୍ଦ ପୁରୀ, ଅକ୍ରୁର–କେଶବ ଭାରତୀ, ସାନ୍ଦିପନୀ–ଈଶ୍ୱରପୁରୀ । ଅନ୍ତରୀକ୍ଷ ଶଂଙ୍ଖ–ବ୍ରହ୍ମାନନ୍ଦ ପୁରୀ, କଚ୍ଛପ ପିପ୍‌ଲାୟନ–ବିଷ୍ଣୁପୁରୀ, ମୁକୁନ୍ଦ ଆବିର୍ହୋତ୍ର–କେଶବପୁରୀ, ଦ୍ରାବିଡ଼ମୁକୁନ୍ଦନିଧି–କୃଷ୍ଣାନନ୍ଦ ପୁରୀ, ନୀଳାନିଧିଚମସ–ନରସିଂହ ତୀର୍ଥ, କରଭଜନ–ସୁଖାନନ୍ଦ ପୁରୀ, ମକର ପ୍ରବନ୍ଧ–ବ୍ରହ୍ମାନନ୍ଦ ଭାରତୀ, ବ୍ରଜର ବଡ଼ାଇ ବୁଢ଼ୀ–ଗୋବିନ୍ଦ ଆଚାର୍ଯ୍ୟ, ଉଦ୍ଧବ–ପରମାନନ୍ଦ ଅବଧୂତ, ଦୀପଧର ସୁଶୋଭନ–ଶ୍ରୀମାନ ଠାକୁର, ଚନ୍ଦ୍ରହାସ–ଜଗଦୀଶ ପଣ୍ଡିତ, କଳାବନ୍ତ–ଶଙ୍କର ଘୋଷ ଭସ୍ୱରବିଦ୍ୟା ବିଶାରଦ, ଗରୁଡ଼–ଗରୁଡ଼ ପଣ୍ଡିତ, ବିଦୁର–ଧନଞ୍ଜୟ ପଣ୍ଡିତ, ବିଶ୍ୱକର୍ମା–ଭସ୍ୱର ଠାକୁର, ସୁଦାମା ବିପ୍ର–ଭିକ୍ଷୁକ ବନମାଳୀ, କୃଷ୍ଣଙ୍କର ବେଶକାରୀ ପ୍ରେମକନ୍ଦ–କାଶୀଶ୍ୱର ଗୋସ୍ୱାମୀ, କୃଷ୍ଣଙ୍କର ଗୃହିଜଣ ଗୃହିଟି–ରକ୍ତକ, ପତ୍ରକ, ସାର୍ଙ୍ଗିକ ଓ ଗୃହିଣୀ ଏବେ ଶିଖିଭଟ୍ଟ, ମାଲଭଟ୍ଟ, ରମାଇ, ନନ୍ଦାଇ । କୁନ୍ଦଲତା–ବିଦ୍ୟାନିଧି ବ୍ରହ୍ମଚାରୀ ପଦ୍ମା–ଉଦ୍ଧବ ଦାସ, ବଲ୍ଲଭ–ବୁଦ୍ଧିମନ୍ତ ଖାନ୍ । ଜୟ, ବିଜୟ–ଜଗାଇ, ମାଧାଇ, ପଦ୍ମନାଭ କୁଟପୌତ୍ର–ଶ୍ରୀନାଥ ପଣ୍ଡିତ, ମହାକବି ଶାଣ୍ଡିଲ୍ୟ–ଈଶାନ ଦାସ, ତମ୍ବୁର–ରମାନନ୍ଦ ଦତ୍ତ, ସତ୍ୟବତୀ–ନାରାୟଣୀ, ବ୍ରଜର ଚେହିଣୀ ଓ ବସୁଦେବ–ପଦ୍ମାବତୀ ଓ ମୁକୁନ୍ଦ ପଣ୍ଡିତ ବା ହାଡ଼ାଇ ଓଝା ପଣ୍ଡିତ । ଏମାନେ ଶ୍ରୀ ନିତ୍ୟାନନ୍ଦ ପ୍ରଭୁଙ୍କର ମାତା ପିତା । ପୂର୍ବର ଧନପତି କୁବେର–ମହାଦେବଙ୍କୁ ପୁତ୍ର ରୂପେ ପ୍ରାପ୍ତି ଆଶାରେ ବହୁଦନ ତପସ୍ୟାଲବ୍ଧ ପୁତ୍ର–ଶ୍ରୀ ଅଦ୍ୱୈତ ପ୍ରଭୁ । ଶ୍ରୀନନ୍ଦ ଓ ଯଶୋଦା–ଶ୍ରୀଜଗନ୍ନାଥ ମିଶ୍ର ଓ ଶଚୀଦେବୀ । ପୂର୍ବେ ମିଥିଳାର ମହାରାଜା ଜନକ–ବଲ୍ଲଭାଚାର୍ଯ୍ୟ । ଭୀଷ୍ମକ ନୃପତିଙ୍କର କନ୍ୟା ରୁକ୍ମିଣୀ–ଶ୍ରୀ ଲକ୍ଷ୍ମୀପ୍ରିୟା ଦେବୀ । ଶତ୍ରାଦିତ୍ୟଙ୍କ କନ୍ୟା–ସତ୍ୟଭାମା – ଶ୍ରୀ ବିଷ୍ଣୁପ୍ରିୟା ଦେବୀ, କକୁଦ୍ମି ମହାରାଜ– ସୂର୍ଯ୍ୟଦାସ

ମଣ୍ଡିତ । ପୂର୍ବେ ଶ୍ରୀ ବଳଦେବଙ୍କର ଦୁଇପତ୍ନୀ ରେବତୀ ଓ ବାରୁଣୀ—ଜାହ୍ନବୀ ଓ ବସୁଧା (ବର୍ତ୍ତମାନର ଶ୍ରୀ ନିତ୍ୟାନନ୍ଦଙ୍କ ପତ୍ନୀଦ୍ୱୟ) । କ୍ଷୀରବ୍ଧ ଓ ହିମାଳୟ—ଶ୍ରୀନୃସିଂହ ଭଦୁଡ଼ୀଙ୍କର ଦୁଇକନ୍ୟା—ଶ୍ରୀ ଓ ସୀତାଦେବୀ । (ଶ୍ରୀ ଅଦ୍ୱୈତ ପ୍ରଭୁଙ୍କର ପତ୍ନୀଦ୍ୱୟ) ।

ଏମାନଙ୍କ ମଧ୍ୟରୁ ଶେଷୋକ୍ତ ଦୁଇ ଗୁରି ମୂର୍ତ୍ତିଙ୍କ ବ୍ୟତୀତ ପ୍ରାୟ ସମସ୍ତେ ମହାତୀର୍ଥ ଶ୍ରୀରେମୁଣାର ମହାସଙ୍ଗମରେ ସମ୍ମିଳିତ ହୋଇଥିଲେ ଏବଂ ଅଦ୍ୟାବଧି ଅଗଣିତ ଗୁଣୀ, ଜ୍ଞାନୀ, ଯୋଗୀ, ଭକ୍ତ, ତପସ୍ୱୀ, ସିଦ୍ଧ ସାଧକ, ଋଷି-ମହର୍ଷିଗଣଙ୍କ ପବିତ୍ର ପଦସ୍ପର୍ଶରେ ଏହି ଶ୍ରୀ ରେମୁଣା ପୁଣ୍ୟସ୍ଥଳୀ ମଧ୍ୟ ମହାମହିମମଣ୍ଡିତ । ସର୍ବୋ-ପରି—ବୈକୁଣ୍ଠାଦପି ଗରୀୟସୀ । ଆଉ ପାପୀ, ତାପୀ ଓ ଅପରାଧୀଗଣଙ୍କର ଆଗମନରେ ଓ ଶ୍ରୀ ବିଗ୍ରହ ଦର୍ଶନରେ ସେମାନେ ଧନ୍ୟ, ପୁତାତ୍ମା ହୁଅନ୍ତି; ନୟନ, ମନ ଓ ଜୀବନ ସାର୍ଥକ ଓ ସଫଳ ହୁଏ ।

॥ ଇତି ଏକାଦଶ ବୈଭବ ॥

---

## 'ଶ୍ରୀ ଗୌରାଙ୍ଗ ଲୀଳା ସ୍ମରଣ ମଙ୍ଗଳ ସ୍ତୋତ୍ରମ୍'ରେ କ୍ଷୀରଚୋରା ଗୋପୀନାଥ ଦର୍ଶନ:-

''ତତ୍ତ୍ୱା ଗଙ୍ଗାତଟ ଜନପଦାଂସ୍ତାମ୍ରଲିଙ୍ଗଂ ମହେଶଂ
ଓଡ୍ରେଦେଶେ ରମଣ ବିପିନେ କ୍ଷୀରଚୌରଂ ଚବୀକ୍ଷ୍ୟ
ଶ୍ରୀଗୋପାଳଂ କଟକ ନଗରେ ଯୋଦଦର୍ଶାତ୍ମ ରୂପଂ
ତଂ ଗୌରାଙ୍ଗଂ ସ୍ୱଭଜନପରଂଭକ୍ତମୂର୍ତ୍ତିଂ ସ୍ମରାମି ॥''

---

# ସଞ୍ଚୟନ

ଏହି ଗ୍ରନ୍ଥ ଲିଖନରେ ଯେଉଁ ଯେଉଁ ଗ୍ରନ୍ଥରୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ସାହାଯ୍ୟ ପାଇଛି, ତା'ର ଏକ ତାଲିକା ନିମ୍ନରେ ସନ୍ନିବେଶିତ ହେଲା ।

(କ) ଶ୍ରୀ ଚୈତନ୍ୟ ଚରିତାମୃତର ଭୂମିକା, (ଖ) ଶ୍ରୀରାଧାଙ୍କ କ୍ରମବିକାଶ ଦର୍ଶନ ଓ ସାହିତ୍ୟ (ଗ) ଶ୍ରୀରାଧାଙ୍କର କ୍ରମବିକାଶ (ଘ) ଗୌରତତ୍ତ୍ୱ ସୁଧାନିଧି (ଙ) ଗୁପ୍ତବତୀ ଟୀକା ।

୧ । ଶ୍ରୁତିସାର, ୨ । ଶ୍ରୀଗୋପୀନାଥ ଚରିତାମୃତ, ୩ । ଶ୍ରୀପୁରୀ ଗୋସ୍ୱାମୀ ଗୁଣାମୃତ ବା ରେମୁଣା ମାହାତ୍ମ୍ୟ, ୪ । ଶ୍ରୀ ରସିକ ମଙ୍ଗଳ, ୫ । ଶ୍ରୀ ଶ୍ୟାମାନନ୍ଦ ପ୍ରକାଶ, ୬ । ଗୌଡ଼ୀୟ ବୈଷ୍ଣବ ଇତିହାସ ବା ବୈଷ୍ଣବ ବିବୃତି ୭ । ଗୌଡ଼ୀୟାର ତିନିଠାକୁର, ୮ । ଅଚିନ୍ତ୍ୟ ଭେଦାଭେଦବାଦ, ୯ । ଶ୍ରୀମଦ୍ ଭାଗବତ, ୧୦ । ଭାବାର୍ଥ ଦୀପିକା, ୧୧ । ଶ୍ରୀମଦ୍ ଭଗବଦ୍ ଗୀତା, ୧୨ । ସୁବୋଧିନୀ ଟୀକା, ୧୩ । ଶ୍ରୀଚୈତନ୍ୟ ଚରିତାମୃତ, ୧୪ । ଶ୍ରୀଚୈତନ୍ୟ ଭାଗବତ, ୧୫ । ଶ୍ରୀଚୈତନ୍ୟ ମଙ୍ଗଳ, ୧୬ । ଶ୍ରୀବିଷ୍ଣୁ ପୁରାଣ, ୧୭ । ଆତ୍ମପ୍ରକାଶ ଟୀକା, ୧୮ । ବୃହତ ଆରଣ୍ୟକ ଉପନିଷଦ, ୧୯ । ଶ୍ୱେତାଶ୍ୱେତର ଉପନିଷଦ, ୨୦ । ଶ୍ରୀଚୈତନ୍ୟ ଚନ୍ଦ୍ରୋଦୟ ନାଟକ, ୨୧ । ପ୍ରେମ ବିଳାସ, ୨୨ । ଶ୍ରୀଚୈତନ୍ୟ ଚରିତେର ଉପାଦାନ, ୨୩ । ବାଂଲା ସାହିତ୍ୟେର ଇତିହାସ, ୨୪ । ଶ୍ରୀ ଗୌଡ଼ୀୟ ବୈଷ୍ଣବ ଦର୍ଶନେର ଇତିହାସ, ୨୫ । ଶ୍ରୀ ଗୌଡ଼ୀୟ ବୈଷ୍ଣବ ସାହିତ୍ୟେର ଇତିହାସ, ୨୬ । ବେଦାନ୍ତ ସ୍ୟମନ୍ତକ, ୨୭ । ପ୍ରମେୟ ରତ୍ନାବଳୀ ୨୮ । ସିଦ୍ଧାନ୍ତ ଦର୍ପଣ, ୨୯ । ସିଦ୍ଧାନ୍ତ ରତ୍ନ ବା ଭାଷ୍ୟପୀଠକ, ୩୦ । ଶ୍ରୀଗୌରପାର୍ଷଦ ଚରିତାବଳୀ, ୩୧ । ଭାରତେର ସାଧକ, ୩୨ । ଗୌଡ଼ୀୟ ବୈଷ୍ଣବ ସାଧନା, ୩୩ । ପଦ୍ୟାବଳୀ, ୩୪ । ସ୍ତବମାଳା, ୩୫ । ବିଶ୍ୱପ୍ରକାଶ, ୩୬ । ବିଶ୍ୱକୋଷ, ୩୭ । ଗୌଡ଼ୀୟ ବୈଷ୍ଣବ ଜୀବନ, ୩୮ । ଶ୍ରୀଭାଗବତ୍ ସନ୍ଦର୍ଭ, ୩୯ । ତତ୍ତ୍ୱସନ୍ଦର୍ଭ, ୪୦ । ପରମାତ୍ମ ସନ୍ଦର୍ଭ, ୪୧ । ଶ୍ରୀକୃଷ୍ଣ ସନ୍ଦର୍ଭ, ୪୨ । ଶ୍ରୀପ୍ରୀତି ସନ୍ଦର୍ଭ, ୪୩ । ସର୍ବ ସମ୍ବାଦିନୀ ୪୪ । ଶ୍ରୀ ନୃସିଂହ ତାପନୀ ଉପନିଷଦ୍, ୪୫ । ହିନ୍ଦୀ ଭକ୍ତମାଳ, ୪୬ । ବାଂଲା ଭକ୍ତମାଳା, ୪୭ । ଅଦ୍ୱୈତ ସିଦ୍ଧିର ଭୂମିକା, ୪୮ । ଶ୍ରୀ ଭକ୍ତିରତ୍ନାବଳୀ, ୪୯ । ଶ୍ରୀ ଭକ୍ତି ରତ୍ନାକର, ୫୦ । ବିନ୍ଦୁ ପ୍ରକାଶ, ୫୧ । ବୃହଦ୍ ବୈଷ୍ଣବ ତୋଷଣୀ, ୫୨ । ସଂକ୍ଷେପ ବୈଷ୍ଣବ ତୋଷଣୀ, ୫୩ । ମାଧୁର୍ଯ୍ୟ କାଦମ୍ବିନୀ, ୫୪ । ଗୌର ଗଣୋଦ୍ଦେଶ ଦୀପିକା, ୫୫ । ଶ୍ରୀମଦ୍ ଭାଗବତ ତାତ୍ପର୍ଯ୍ୟମ୍, ୫୬ । ସାରାର୍ଥଦର୍ଶିନୀ

ଟୀକା, ୫୭ । ଶ୍ରୀ ମହିମ୍ନ ସ୍ତବ, ୫୮ । ଶ୍ରୀ ଗୀତାର ମଧୁଭାଷ୍ୟ, ୫୯ । ବୈଷ୍ଣବାଗ୍ଣର ଦର୍ପଣ, ୬୦ । ବୈଷ୍ଣବମଞ୍ଜୁଷା ସମାହୃତି, ୬୧ । ଶ୍ରୀ ଶ୍ୟାମାନନ୍ଦ ଚରିତାମୃତ ଓ ଭଜନ ପଦ୍ଧତି, ୬୨ । ଅନନ୍ତ ସଂହିତା, ୬୩ । ମୁରାରି ଗୁପ୍ତେର କଡ଼ଚା, ୬୪ । ଗୀତ ରତ୍ନାବଳୀ, ୬୫ । ବୈଦଗ୍ଧ୍ୟ ବିଳାସ, ୬୬ । ଶ୍ରୀକୃଷ୍ଣ ଗଣୋଦ୍ଦେଶ ଦୀପିକା, ୬୭ । ପଦ୍ଧତି ପ୍ରକାଶ, ୬୮ । ଭୋଗ ନିର୍ଣ୍ଣୟ ପଦ୍ଧତି, ୬୯ । ବୃହତ୍ ଶଙ୍କର ବିଜୟ, ୭୦ । ବଲ୍ଲଭ ଦିଗ୍‌ବିଜୟ, ୭୧ । ଶ୍ରୀ ଗୌରାଙ୍ଗ ବିଜୟମ୍, ୭୨ । ଶ୍ରୀ ଗୌରାଙ୍ଗ ଚମ୍ପୂ, ୭୩ । ଶ୍ରୀ ହରିଭକ୍ତି ବିଳାସ, ୭୪ । ଶ୍ରୀ ମଧ୍ୱକୃତ ଆରଣ୍ୟୋକପନିଷଦ୍ ଭାଷ୍ୟ, ୭୫ । ବ୍ରହ୍ମସୂତ୍ରର ଶ୍ରୀ ମଧ୍ୱ ଭାଷ୍ୟର ତତ୍ତ୍ୱ ପ୍ରକାଶିକା ଟୀକା, ୭୬ । ଶ୍ରୀ ଗୀତାଭୂଷଣ ଭାଷ୍ୟ, ୭୭ । ଶ୍ରୀ ବୃହଦ୍ ଭାଗବତାମୃତ, ୭୮ । ଲଘୁ ଭାଗବତାମୃତ, ୭୯ । ଲଘୁ ଭାଗବତାମୃତର ଟୀକା, ୮୦ । ସାରଙ୍ଗ ରଙ୍ଗଦା, ୮୧ । ବେଦାନ୍ତେ ବାଙ୍ଗାଲୀର ପ୍ରଭାବ, ୮୨ । ଶ୍ରୀ ଚୈତନ୍ୟ ଧର୍ମ, ୮୩ । ଶ୍ରୀ ଗୋବିନ୍ଦ ଭାଷ୍ୟ, ୮୪ । ଯୁକ୍ତି ମଲ୍ଲିକା, ୮୫ । ସିଦ୍ଧାନ୍ତ ରତ୍ନେର ସୂକ୍ଷ୍ମ ଟୀକା, ୮୬ । ବେଦାନ୍ତ ଦର୍ଶନେର ମଧୁଭାଷ୍ୟ ପୂର୍ଣ୍ଣପ୍ରଜ୍ଞ ଦର୍ଶନମ୍, ୮୭ । ଶ୍ରୀ ବଳଦେବକୃତ ଭାଗବତର ଟୀକା, ୮୮ । ସଜ୍ଜନତୋଷଣୀ ପତ୍ରିକା, ୮୯ । ଗୌଡ଼ୀୟ ପତ୍ରିକା, ୯୦ । ବୀରଭୂମି ପତ୍ରିକା, ୯୧ । ଦୈନିକ ଓଡ଼ିଆ ପତ୍ରିକା 'ସମାଜ', ୯୨ । ବିଭିନ୍ନ ପ୍ରବନ୍ଧ (ଇଂରାଜୀ, ବଙ୍ଗଳା ଓ ଓଡ଼ିଆ) । ୯୩ । ଶ୍ରୀ ଗୌରାଙ୍ଗଲୀଳା ସ୍ମରଣ ମଙ୍ଗଳ ସ୍ତୋତ୍ରମ୍ ।

---

## ମଦୀୟ ପରମାରାଧ୍ୟ ଶ୍ରୀ ଗୁରୁଦେବ ବିନୋଦ ଚୈତନ୍ୟ ତତ୍ତ୍ୱ ବିଶାରଦେନ କୃତମ୍

## ଶ୍ରୀ ଗୋପୀନାଥ ସ୍ତୋତ୍ରମ୍

ରେମୁଣା ଗ୍ରାମ ମଧ୍ୟସ୍ଥଂ ମାଧବେନ୍ଦ୍ରପୁରୀଶ୍ୱରମ୍ ।
କ୍ଷୀରଚୋରାଭିଧଂ ବନ୍ଦେ ଗୋପୀନାଥଂ ଜଗଦ୍ ପ୍ରଭୁମ୍ ॥
ସ୍ୱୟଂ ଶ୍ରୀରାମଚନ୍ଦ୍ରେଣ ନିର୍ମିତଂ ଯସ୍ୟ ବିଗ୍ରହମ୍ ।
ରାମଚନ୍ଦ୍ରାଦଭିନ୍ନତ୍ୱଂ ଗୋପୀନାଥଂ ନମାମ୍ୟହମ୍ ॥
ତ୍ରେତାଯୁଗେ ଚିତ୍ରକୂଟେ ରାମଚନ୍ଦ୍ରେଣ ନିର୍ମିତମ୍ ।
ଜାନକ୍ୟା ପୂଜିତଂ ଦେବଂ ଗୋପୀନାଥଂ ନମାମ୍ୟହମ୍ ॥
ତତୋ ବ୍ରହ୍ମା ସ୍ୱୟଂ ତତ୍ର ଆଗ୍ୟ ଦୀର୍ଘ ବତ୍ସରମ୍ ।
ପୂଜୟାମାସ ଯଂ ଦେବଂ ଗୋପୀନାଥଂ ନମାମ୍ୟହମ୍ ॥

ଗତେ ଯୁଗଦ୍ୱୟେ ତତ୍ର ନୃସିହଂାଖ୍ୟ ନରେଶ୍ୱରଃ ।
ମଦନଗୋପାଳଂ ଦୃଷ୍ଟ୍ୱା ପ୍ରାପ୍ନୋତିସ୍ମ ପରଂ ମୁଦମ୍ ।।
ପତ୍ନ୍ୟା ସହ ମହାରଜଃ ପୂଜୟିତ୍ୱା ତତଃ ପ୍ରଭୁମ୍ ।
ତଦାଦେଶଂ ଶିରୋଧାର୍ଯ୍ୟଂ ରେମୁଣାମାୟଯୌ ନୃପଃ ।।
ନଦୀ ସପ୍ତଶର ଯତ୍ର ଯତ୍ର ପୁଷ୍କରିଣୀଦ୍ୱୟମ୍ ।
'ରେମୁଣା' ରମଣଂ ସ୍ଥାନଂ ତତ୍ର ରାଜ୍ଞା ପ୍ରତିଷ୍ଠିତଃ ।
ଶ୍ରୀମଦନଗୋପାଳୋ ଜୟ ଗୋପାଳସଂଜ୍ଞକଃ ।
ଗୋପୀନାଥାଭିଧସ୍ତସ୍ୟ ପ୍ରର୍ଭୋର୍ନାମତ୍ରୟଂ କଳୌ ।।
ସ୍ୱଭକ୍ତାୟାନୁରକ୍ତାୟ ମାଧବେନ୍ଦ୍ରାୟ ଯୋ ଦଦୌ ।
ଗ୍ଲେରୟିତ୍ୱା କ୍ଷୀରଭଣ୍ଡଂ କ୍ଷୀରଚୋରାଭିଧସ୍ତ ତଃ ।।
ଭକ୍ତପ୍ରିୟଂ ଭକ୍ତନାଥଂ ଭକ୍ତୈଂଷ୍ଟ ଭକ୍ତବତ୍ସଳମ୍ ।
ଭକ୍ତଦୁଃଖହରଂ ଦେବଂ ଭଗବନ୍ତଂ ନମାମ୍ୟହମ ।।
ଇଦାନୀଂ କଥ୍ୟତେ ସର୍ବୈଃ କ୍ଷୀରଚୋରାଭିଧଃ ପ୍ରଭୁଃ ।
ପୀତାମ୍ବରେ ଘନଶ୍ୟାମୋ ଦ୍ୱିଭୁଜୋ ମୁରଲୀଧରଃ ।।

ଗୋପୀନାଥଂ କ୍ଷୀରଚୌରାଭିଧାନଂ-
ମେଘଶ୍ୟାମଂ ସ୍ୱର୍ଣ୍ଣବର୍ଣ୍ଣାମ୍ବରାଢ୍ୟମ୍ ।
ଶ୍ରୀବତ୍ସାଙ୍କ କୌସ୍ତୁଭୋଦ୍ଭାସିତାଙ୍ଗଂ-
ବନ୍ଦେ ଭକ୍ତ୍ୟା ଗୋପଗୋପୀଶ୍ୱରଂ ତମ୍ ।।

ବିନୋଦେନ କୃତଂ ସ୍ତୋତ୍ରଂ ଗୋପୀନାଥ ପଦାମ୍ବୁଜେ ।
ସମର୍ପିତମିଦଂ ଦେବ ! କୃପୟା ପରିଗୃହ୍ୟତାମ୍ ।।

---

ବ୍ରଜେ ପ୍ରସିଦ୍ଧଂ ନବନୀତ ଚୌରଂ
ଗୋପାଙ୍ଗନାଞ୍ଚ ଦୁକୂଳ ଚୌରମ୍ ।।
ଅନେକ ଜନ୍ମାର୍ଜିତ ପାପଚୌରଂ-
ଚୌରାଗ୍ରଗଣ୍ୟଂ ପୁରୁଷଂ ନମାମି ।।

ଶ୍ରୀ ରାଧିକାୟା ହୃଦୟସ୍ୟ ଚୌରଂ
ନବାମ୍ବୁଦ ଶ୍ୟାମଳକାନ୍ତି ଚୌରମ୍ ।।
ପଦାଶ୍ରିତାନାଂ ସମସ୍ତ ଚୌରଂ
ଚୌରାଗ୍ରଗଣ୍ୟଂ ପୁରୁଷଂ ନମାମି ।।

## ଅନ୍ୱୟାର୍ଥ

ଯେଉଁ ଭଗବାନ ଶ୍ରୀକୃଷ୍ଣ ବ୍ରଜଧାମରେ ନବନୀତ ଚୋର ଓ ଗୋପାଙ୍ଗନା-ଗଣଙ୍କର ବସନ ଚୋରବୋଲି ପ୍ରସିଦ୍ଧ, ଯେ ଅନୁଗତ ପାପୀଗଣଙ୍କର ଅନେକ ଜନ୍ମାର୍ଜିତ ପାପସମୂହକୁ ଚୋରି କରନ୍ତି ବୋଲି ପାପହାରୀ ନାମ ଧାରଣ କରିଛନ୍ତି, ସେହିସବୁ ଚୋରଙ୍କର ଅଗ୍ରଗଣ୍ୟ ପରମପୁରୁଷଙ୍କୁ ମୁଁ ପ୍ରଣାମ କରେ । ଯେ ଶ୍ରୀ ରାଧିକାଙ୍କର ହୃଦୟ ଚୋର, ଯେ ନବଜଳଧରର ଶ୍ୟାମଳକାନ୍ତି ଚୋର, ଯେ ପଦାଶ୍ରିତ ପ୍ରପନ୍ନ ଜନର ଇହକାଳ ଓ ପରକାଳର ସକଳ ଅବସ୍ଥାର ଦୁଃଖ ଚୋର, ସେହି ଚୌରାଗ୍ରଗଣ୍ୟ ପୁରୁଷଙ୍କୁ ମୁଁ ପ୍ରଣାମ କରେ ।

---

## ଶ୍ରୀ କ୍ଷୀରଚୋରା ଗୋପୀନାଥ ବର୍ଣ୍ଣନ

(ଆହେ ନୀଳଶୈଳ ବୃତ୍ତେ)

ଗୋପୀନାଥଠାକୁର ଶ୍ରୀକ୍ଷୀରଚୋର ଖିଆତି
ମାଧବେନ୍ଦ୍ର ପ୍ରେମରେ ଚୋରଅ କ୍ଷୀର ସେ ରାତି । ୧ ।
ବାମଦିଗେ ଗୋବିନ୍ଦ ରୂପରେ ନାମେ ଢ଼ଳିଛ
ଦକ୍ଷିଣରେ ମଦନମୋହନ ହୋଇ ରହିଛ । ୨ ।
ରାମଚନ୍ଦ୍ର ଶରରେ ପ୍ରକଟ କଲେ ମୂରତି
ସୀତାଦେବୀ ଆର୍ତ୍ତିରେ ଦ୍ୱାପର ରୂପ ସ୍ଫୁରତି । ୩ ।
ସେ ସୁନ୍ଦର ଶ୍ରୀଅଙ୍ଗ ଚନ୍ଦନବେଶେ ଚର୍ଚ୍ଚିତ
ଗୋପୀନାଥ କପାଳେ ତିଳକାଳକା ରଞ୍ଜିତ । ୪ ।
ଦୁଇହସ୍ତେ ଖଡ୍ଗ ତ ଦିଶଇ କେଡ଼େ ସୁନ୍ଦର
ବେଶ ବନବିହାରୀ କରନ୍ତି କେତେ ସୁନ୍ଦର । ୫ ।
ଦିବ୍ୟ କଟିତଟରେ କମରପେଟା ନାଇଛ
ଦିନରାତି ଆନନ୍ଦେ କେତେ ଯେ ଭୋଗ ଖାଉଛ । ୬ ।
ନିତି ତୈଳ ମର୍ଦ୍ଦନ ଶୃଙ୍ଗାର ବେଶ ବଦଳି
ନବନୀତ ମିଶିରୀ ଭୋଗାନ୍ତେ ଚୁଡ଼ା କଦଳୀ । ୭ ।
ପୀତଭୋଗ ଖେଚୁଡ଼ି କାନିକା ଡ଼ାଲି ବେଶର
କ୍ଷୀରଭଣ୍ଡ ଅନେକ ଫଳ ଯେ କେତେ ଦେଶର । ୮ ।

ବଜାଉଛ ମୁରଲୀ କି ଭବେ କେତେ ଠାଣିରେ
ନଟବର ବେଶରେ ଗୋପିକା ମନ ଜାଣିରେ । ୯ ।
ଗଜବେଶ ମୁକୁଟ ଚରଣଛନ୍ଦା ସୁନ୍ଦର
ସେଇ ରୂପଦର୍ଶନେ ଭଙ୍ଗଇ ଦର୍ପ-ମନ୍ଦର । ୧୦ ।
ଶ୍ୱେତବସ୍ତ୍ର ସୁପୀନ ତୁଳସୀମାଳେ ଶୋଭଇ
ଭକ୍ତଜନ ମାନସ ଦର୍ଶନ ଆଶେ ଲୋଭଇ । ୧୧ ।
ବୈଜୟନ୍ତୀ ମାଳରେ ଭୂଷିତ ସର୍ବ ଶ୍ରୀଅଙ୍ଗ
ଉଛୁଳାଏ ଭକତ ଅନ୍ତରେ ସୁଖ ତରଙ୍ଗ । ୧୨ ।
ଆହା କିବା ଅପୂର୍ବ ଆରତି ସନ୍ଧ୍ୟା ସକାଳେ
ଦରଶନକାରୀଏ ଲୋତକେ ଆଖି ପଖାଳେ । ୧୩ ।
ଗୋପୀନାଥ କି ଅବା ବର୍ଣ୍ଣିବି ତବ କୀରତି
ନାହିଁ ମୋର ଭକତି ଶ୍ରୀପଦେ ନାହିଁ ପୀରତି । ୧୪ ।
ତବଧାମ ରେମୁଣା ରମଣକୁଞ୍ଜ ବିପିନ ।
ହେବ କି ମୋ ଆଶ୍ରୟ ହେବ କି ମୋ ସୁଦିନ । ୧୫ ।
ଦୀନ ଭକ୍ତିକୁମୁଦ ଘୋଷଇ ତବ ଜଣାଣ ।
ଗୋପୀନାଥ ହୁଅନ୍ତୁ ସତତ ଆମ ଶରଣ । ୧୬ ।

———